Vol. XLIV No. 2 UTKAL PRASANGA Regd. No. O-05/87
Licence No. C. R. N. P. 5—Licensed to post without Pre-Payment



ରାଷ୍ଟ୍ରପତିଙ୍କ ଦ୍ୱାରା ସ୍ୱାଧୀନତା ବୃକ୍ଷ ରୋପଣ

# ଉତ୍କଳ ପ୍ରସଙ୍ଗ

କାର୍ତ୍ତିକ ୧୯୦୮ ଶକାବ୍ଦ | ୪୩ ଭାଗ | ୪ର୍ଥ ସଂଖ୍ୟା | ନଭେମ୍ବର ୧୯୮୭



ପ୍ରକାଶନ: ସୂଚନା ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର,
ଭୁବନେଶ୍ୱର

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ବାର୍ଷିକ ଦେୟ : ୨୦.୦୦

ପ୍ରତି ଖଣ୍ଡ : ୨.୦୦



## ସୂଚୀପତ୍ର

# ମୋ ଦୃଷ୍ଟିରେ ....

ଏହି ଶତାବ୍ଦୀର ଉତ୍କଟତମ ମରୁଡ଼ି ଏହି ବର୍ଷ ସମଗ୍ର ଭାରତ ବର୍ଷକୁ ଆକ୍ରମଣ କରିଛି ।

ଏ ମରୁଡ଼ିର କାରଣ ବୈଜ୍ଞାନିକଙ୍କ ମତରେ ଅନେକ ହୋଇପାରେ । ପରିବେଶନୀର ପ୍ରଦୂଷଣ, ଜଙ୍ଗଲର କ୍ରମ ବିଲୋପ, ମୌସୁମୀ ବାୟୁର ଅସମୟରେ ହ୍ରାସ ବୃଦ୍ଧି ଇତ୍ୟାଦି ନାନା କାରଣରୁ ଏ ଭଳି ମରୁଡ଼ି ଆସି ଥାଇପାରେ, କିନ୍ତୁ ଏ ସମସ୍ୟାର ସମାଧାନ ଆମକୁହିଁ କରିବାକୁ ପଡ଼ିବ ।

ସୌଭାଗ୍ୟବଶତଃ ଏହି କରାଳ ମରୁଡ଼ିର ବିକଟ ତାଡ଼ନାରୁ ରକ୍ଷା ପାଇବା ନିମନ୍ତେ, ଆମ ଦେଶରେ ଯଥେଷ୍ଟ ଖାଦ୍ୟ ପଦାର୍ଥ ମହଜୁଦ୍ ଅଛି । ଏହି ମରୁଡ଼ି ନଅଙ୍କ ଦୁର୍ଭିକ୍ଷ ଆଉ ଆଉ ସୃଷ୍ଟି କରି ପାରିବ ନାହିଁ । କାରଣ ଆମ ଦେଶରେ ଏହାର ପ୍ରତିକାର ନିମନ୍ତେ ଯଥେଷ୍ଟ ସୁଯୋଗ ରହିଛି । ସେହି ପ୍ରତିକାର ବିଷୟରେ ଏହି ମାସର ଉତ୍କଳ ପ୍ରସଙ୍ଗ ନିର୍ଦ୍ଦିଷ୍ଟ ଭାବରେ ଆଲୋକପାତ କରୁଛି ।

ଏହି ମରୁଡ଼ିର ପ୍ରତିକାର ନିମନ୍ତେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ଉଦ୍‌ବିଗ୍ନ ଏବଂ ତାର ପ୍ରତିଫଳନ ରହିଛି ତାଙ୍କର "ମରୁଡ଼ିର ପ୍ରତିକାର" ପ୍ରବନ୍ଧରେ । ଲାଲ କିଲ୍ଲାରେ ସ୍ୱାଧୀନତାର ବାର୍ଷିକୀ ଉପଲକ୍ଷେ ପତାକା ଉତ୍ତୋଳନ କଲାବେଳେ ସେ ଯେଉଁ ଭାଷଣ ଦେଇଥିଲେ, ସେହି ଭାଷଣର ନିର୍ଯାସଂଶକୁ ନେଇ ଏହି ପ୍ରବନ୍ଧ ।

ଓଡ଼ିଶାରେ ମଧ୍ୟ ଏହି ମରୁଡ଼ିର ଛାୟା ପ୍ରତିଫଳିତ ହୋଇଛି । ଆମର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଜିଲ୍ଲାପାଳମାନଙ୍କ ସମ୍ମିଳନୀରେ ମରୁଡ଼ିର ମୁକାବିଲା କରିବା ନିମନ୍ତେ ଦେଇଥିବା ଭାଷଣକୁ ଆଧାର କରି "ମରୁଡ଼ିର ମୁକାବିଲା" ପ୍ରବନ୍ଧ ଲିଖିତ ।

ଓଡ଼ିଶାର କୃଷିମନ୍ତ୍ରୀ ଶ୍ରୀ ରାସ ବିହାରୀ ବେହେରାଙ୍କ ଓ ଓଡ଼ିଶା ଯୋଜନା ବୋର୍ଡର ଅଧ୍ୟକ୍ଷ ଶ୍ରୀ ବୈଦ୍ୟନାଥ ମିଶ୍ରଙ୍କର ଉପାଦେୟ ପ୍ରବନ୍ଧ ଦୁଇଟି ଏ ସଂଖ୍ୟାର ମୁଖ୍ୟ ବର୍ଦ୍ଧନ କରୁଛନ୍ତି । ରେଭିନ୍ୟୁ ରିଲିଫ କମିଶନର ଶ୍ରୀ କେ. ଶ୍ରୀନିବାସନ ମରୁଡ଼ିର ପ୍ରତିକାର ସମ୍ବନ୍ଧରେ କେତେକ ଉପାଦେୟ ଓ ଜ୍ଞାତବ୍ୟ ବିଷୟ ତାଙ୍କ ପ୍ରବନ୍ଧରେ ଅବତାରଣା କରିଛନ୍ତି ।

ଏହି ମରୁଡ଼ିରୁ ରକ୍ଷା ପାଇବା ନିମନ୍ତେ ଓଡ଼ିଶାର ଖାଦ୍ୟ ଯୋଗାଣ ନିଗମର ଅଭିମୁଖ୍ୟ ସମ୍ବନ୍ଧରେ ଖାଦ୍ୟ ସଚିବ ଶ୍ରୀ ରବୀନ୍ଦ୍ର ମୋହନ ସେନାପତି, ଉଠା ଜଳସେଚନ ଦ୍ୱାରା ମରୁଡ଼ିର ମୁକାବିଲା କରିବା ନିମନ୍ତେ ଉଠାଜଳସେଚନ ନିଗମର ଅଧ୍ୟକ୍ଷ ଶ୍ରୀ ମଦନ ମୋହନ ମହାନ୍ତିଙ୍କ ପ୍ରବନ୍ଧ ପ୍ରତି ଆମେ ପାଠକଙ୍କର ଦୃଷ୍ଟି ଆକର୍ଷଣ କରୁଛୁ ।

ମରୁଡ଼ି ହେଉଛି ଏକ ପ୍ରାକୃତିକ ବିପର୍ଯ୍ୟୟ ଏବଂ ତା'ର ପ୍ରତିକାର ମାନବିକ ସମାଜର ସାମୂହିକ ଉଦ୍‌ଯୋଗ—ଏହାହିଁ ଏହି ସଂଖ୍ୟାର ବିଷୟବସ୍ତୁ ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ଜନ୍ମ ବାର୍ଷିକୀ ଉପଲକ୍ଷେ ଶ୍ରୀ ଉଦ୍ଧବ ଚରଣ ନାୟକଙ୍କ ପ୍ରବନ୍ଧ ଲିଖିତ ।

''ଉତ୍କଳ ପ୍ରସଙ୍ଗ''ର ଆନ୍ତରିକ ଶୁଭେଚ୍ଛା ସହ ।

# ମରୁଡ଼ିଜନିତ ପରିସ୍ଥିତିର ମୁକାବିଲା

ଶ୍ରୀ ରାଜୀବ ଗାନ୍ଧୀ

ଏ ବର୍ଷ ଆମ ଦେଶ ଉତ୍କଟ ମରୁଡ଼ିର ସମ୍ମୁଖୀନ ହୋଇଛି । ଅନେକ ବର୍ଷ ହେଲା ସମଗ୍ର ଦେଶରେ ଏପରି ମରୁଡ଼ି ପରିସ୍ଥିତି ଉପୁଜି ନଥିଲା । ଆମେ ୧୯୬୫-୬୬ ମସିହାରେ ଏଭଳି ଏକ ମରୁଡ଼ିର ସମ୍ମୁଖୀନ ହୋଇଥିଲୁ । ତାହା ଭୀଷଣ ଆକାର ଧାରଣ କରିଥିଲେ ମଧ୍ୟ ଗୋଟାଏ ଦୁଇଟି ରାଜ୍ୟରେ ସୀମାବଦ୍ଧ ଥିଲା । ଏ ବର୍ଷ ପ୍ରାୟତଃ ସମଗ୍ର ଦେଶକୁ ଏହା ବ୍ୟାପୀ ଯାଇଛି । ତଥାପି ଇନ୍ଦିରାଜୀଙ୍କର ଦୂର ଦୃଷ୍ଟି ହେତୁ କୃଷକମାନଙ୍କର ଉତ୍ପାଦନ ବୃଦ୍ଧି ପାଇଁ ସେମାନଙ୍କର ଆର୍ଥିକ ପରିସ୍ଥିତିକୁ ଦୃଢ଼ ରଖି ପାରିଛି ଏବଂ ଫଳ ସ୍ୱରୂପ ଆମେ ମରୁଡ଼ିର ମୁକାବିଲା କରିବାକୁ ସମର୍ଥ । ଅଭାବ ବୋଲି କିଛି ଗୋଟାଏ ଜିନିଷ ଆମେ ଅନୁଭବ କରିବୁ ନାହିଁ । ଏବର୍ଷର ମରୁଡ଼ିକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ତଥାପି ଇନ୍ଦିରାଜୀଙ୍କ ଦ୍ୱାରା ସୃଷ୍ଟ ସବୁଜ ବିପ୍ଳବ ହେତୁ ଆମେ ଆଜି ଏହାର ମୁକାବିଲା କରି ପାରିବୁ । କେତେକ ରାଜ୍ୟରେ ଏହା ମରୁଡ଼ିର ତୃତୀୟ ବା ଚତୁର୍ଥ ବର୍ଷ । ଏହାଦ୍ୱାରା ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନେ ଭୀଷଣ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି । ସେମାନଙ୍କର ମୌଳିକ ଆବଶ୍ୟକତାର ପୂରଣ, ଭୂମିହୀନ, ନାମମାତ୍ର ଚାଷୀ ଏବଂ ବେକାର ଶ୍ରମିକମାନଙ୍କର ସମସ୍ୟା ଆଜି ଆମର ଚିନ୍ତାର ମୁଖ୍ୟ କାରଣ ହୋଇ ପଡ଼ିଛି । ଅନେକ ରାଜ୍ୟରେ ପାନୀୟ ଜଳର ମଧ୍ୟ ଅଭାବ ଦେଖାଦେଇଛି । ଏସବୁ ରାଜ୍ୟରେ ପଶୁମାନଙ୍କ ପାଇଁ ମଧ୍ୟ ଉତ୍କଟ ଖାଦ୍ୟାଭାବ ଦେଖା ଦେଇଛି ।

ସାହାସର ସହିତ ଆମେ ଏ ପରିସ୍ଥିତିର ସମ୍ମୁଖୀନ ହେବା ଦେଶର ମୁଖ୍ୟଭାବରେ ମୁଁ ଶପଥ କରୁଛି ଯେ ଅଗ୍ରାଧିକାର ଭିତ୍ତିରେ ଆମେ ମରୁଡ଼ିଜନିତ ପରିସ୍ଥିତିର ସମସ୍ୟା ଗୁଡ଼ିକର ସମାଧାନ କରିବୁ । ବିଭିନ୍ନ ଶସ୍ୟ ଭଣ୍ଡାରମାନଙ୍କରେ ସଞ୍ଚିତ ଥିବା ଶସ୍ୟକୁ ଆମେ ଦେଶର ପ୍ରତ୍ୟେକ କୋଣରେ ପହଞ୍ଚାଇବୁ । 'ରିଲିଫ୍ କାର୍ଯ୍ୟ' କରିଆରେ ପ୍ରତ୍ୟେକ ବେକାର ଲୋକଙ୍କୁ କାର୍ଯ୍ୟ ଯୋଗାଇ ଦିଆଯିବ । ଏକଥା ଦେଖିବାକୁ ପଡ଼ିବ ଯେ ପ୍ରକୃତରେ ଯାହାପାଇଁ କାମଯୋଗାଣର ଆବଶ୍ୟକତା ରହିଛି, ସେମାନେ ତାହା ଯେପରି ପାଇ ପାରିବେ । ଅନାହାରଜନିତ ମୃତ୍ୟୁକୁ ରୋକିବା ନିମିତ୍ତ ଅପ୍ରାଣ ଚେଷ୍ଟା କରାଯିବ । କାହାରିକୁ ଉପବାସ ରହିବାକୁ ଦିଆଯିବ ନାହିଁ । ଲୋକମାନଙ୍କର ଘର ନିକଟରେ ଶସ୍ୟକୁ ପହଞ୍ଚାଇ ଦେବାର ବ୍ୟବସ୍ଥା କରାଯିବ । ଏଥିପାଇଁ ଗ୍ରାମାଞ୍ଚଳଗୁଡ଼ିକୁ ଅଗ୍ରାଧିକାର ଦିଆଯିବ । ପାନୀୟ ଜଳ ଯୋଗାଣ ନିମିତ୍ତ ସର୍ବମତେ ଚେଷ୍ଟା କରାଯିବ । ଆମର ପଶୁ ସଂପଦକୁ ଏପ୍ରକାରର ଅସୁବିଧାରୁ ରକ୍ଷା କରିବାକୁ ପଶୁଖାଦ୍ୟ ଯୋଗାଇ ଦେବାର ବ୍ୟବସ୍ଥା କରାଯିବା ସଙ୍ଗେ ସଙ୍ଗେ ଯେପରି କୌଣସି ଅସୁବିଧାର ସମ୍ମୁଖୀନ ନ ହୁଅନ୍ତି, ସେଥିପ୍ରତି ଦୃଷ୍ଟି ଦିଆଯିବ ।

ମରୁଡ଼ି ପରିସ୍ଥିତିର ମୁକାବିଲା ନିମିତ୍ତ ଆମକୁ ସାମୂହିକ ଭାବରେ ଚେଷ୍ଟା କରିବାକୁ ପଡ଼ିବ । କେନ୍ଦ୍ରରେ ଏବଂ ରାଜ୍ୟଗୁଡ଼ିକରେ ଆବଶ୍ୟକୀୟ ସାହାଯ୍ୟ ପହଞ୍ଚାଇ ଦେବା ନିମିତ୍ତ ସମସ୍ତ ପ୍ରକାର ବନ୍ଦୋବସ୍ତ କରାଯିବ । ଅନ୍ୟ ପକ୍ଷରେ ରାଜ୍ୟ ସରକାରମାନେ ଏ କାର୍ଯ୍ୟ ପୂରା ଦମ୍‌ରେ ଯେପରି କରନ୍ତି ତାହା ଦେଖିବାକୁ ପଡ଼ିବ । କାରଣ ଗ୍ରାମାଞ୍ଚଳର ବେକାରମାନଙ୍କ ନିକଟରେ ସମସ୍ତ ସାହାଯ୍ୟ ପହଞ୍ଚାଇବା କାର୍ଯ୍ୟ ସେମାନଙ୍କର ଅଟେ । ଆମେ ସମସ୍ତ ପ୍ରକାରର ସାହାଯ୍ୟ ଦେବୁ କିନ୍ତୁ ଏହାକୁ ତ୍ୱରାନ୍ୱିତ କରିବା ରାଜ୍ୟ ସରକାରମାନଙ୍କ କାର୍ଯ୍ୟ । ଏ ବିଷୟ ନେଇ ମୁଁ ମରୁଡ଼ିଗ୍ରସ୍ତ ରାଜ୍ୟର ମୁଖ୍ୟମନ୍ତ୍ରୀମାନଙ୍କ ନିକଟକୁ ପତ୍ର ଦେଇଛି । ମୁଁ ଅତି ଶୀଘ୍ର ଏକ ମୁଖ୍ୟମନ୍ତ୍ରୀ ସମ୍ମିଳନୀ ଡକାଇ ସାମୂହିକଭାବରେ କିପରି ଏ ପରିସ୍ଥିତିର ମୁକାବିଲା କରାଯାଇପାରିବ, ସେ ବିଷୟରେ ସେମାନଙ୍କ ସହିତ ଆଲୋଚନା କରିବି । ଦରିଦ୍ର ଲୋକମାନଙ୍କର ସ୍ୱାର୍ଥର ସୁରକ୍ଷାନିମିତ୍ତ କିପରି ଆବଶ୍ୟକୀୟ ପଦକ୍ଷେପ ନିଆଯିବ ସେ ବିଷୟରେ ଆଲୋଚନା କରିବି । ଆମକୁ ଅନେକ କାର୍ଯ୍ୟ କରିବାକୁ ପଡ଼ିବ । ଆମର ଦେଶର ଐକ୍ୟ ସୁଦୃଢ଼ ଥିବା ପର୍ଯ୍ୟନ୍ତ ଆମେ ଏ ପ୍ରକାର କଠିନ ପରିସ୍ଥିତିଜନିତ ଆହ୍ୱାନର ମୁକାବିଲା କରିପାରିବୁ ।

ଏହି ସମସ୍ୟାର ସମାଧାନ ନିମିତ୍ତ ଆମେ ସମସ୍ତ ଶକ୍ତି ବିନିଯୋଗ କରି ଧ୍ୟାନ ଦେବୁ । ଆମର ଶସ୍ୟ ଭଣ୍ଡାର ସବୁ

ପୂର୍ଣ୍ଣ ହୋଇ ରହିଛି । ଏ ବିଷୟରେ ଆମର ଯଥେଷ୍ଟ ଅଭିଜ୍ଞତା ଓ ଦକ୍ଷତା ରହିଛି । ତେଣୁ ଏଥିପାଇଁ ଆମେ କୌଣସି ବୈଦେଶିକ ଶକ୍ତିର ଦ୍ୱାରସ୍ଥ ହେବୁନାହିଁ । ରାଷ୍ଟ୍ରୀୟ ବିକାଶ ବାଧାପ୍ରାପ୍ତ ହେଲେ ଆଗାମୀ ଦିନଗୁଡ଼ିକରେ ଆମେ ଆହୁରି ଅଧିକ ଅସୁବିଧାର ସମ୍ମୁଖୀନ ହେବୁ । ବର୍ତ୍ତମାନ ସମସ୍ୟାର ସମ୍ମୁଖୀନ ହେବା ନିମିତ୍ତ ଆମକୁ ପ୍ରାକୃତିକ ସମ୍ବଳ ତଥା ଅନ୍ୟାନ୍ୟ ସମ୍ବଳ ଦେଖିବାକୁ ପଡ଼ିବ । ତାହେଲେ ଆମେ ରାଷ୍ଟ୍ରୀୟ ପ୍ରଗତିରେ ପ୍ରତିବନ୍ଧକ ସୃଷ୍ଟି ନକରି ମହଙ୍ଗି ପରିସ୍ଥିତିର ମୁକାବିଲା କରିପାରିବା । ଏଥିପାଇଁ ଆର୍ଥିକ ସମ୍ବଳର ଆବଶ୍ୟକତା ରହିଛି । ବିଳାସ ବ୍ୟସନ ପରିତ୍ୟାଗର ଆବଶ୍ୟକତା ରହିଛି । ଏଥିପାଇଁ ଆମକୁ ଅଦରକାରୀ ଖର୍ଚ୍ଚ ରୋକି ମିତବ୍ୟୟୀ ହେବାକୁ ପଡ଼ିବ । ଅଯଥା ଖର୍ଚ୍ଚ ରୋକିବା ଓ ମିତବ୍ୟୟିତା ନିମିତ୍ତ ଆମେ ସମସ୍ତ ମନ୍ତ୍ରଣାଳୟକୁ ଉପଦେଶ ଦେଇଛୁ । ରାଜ୍ୟ ସରକାରମାନେ ମଧ୍ୟ ଏହିପରି ପଦକ୍ଷେପ ନେବା ଉଚିତ । ଆମ ସରକାର ଏଥିପାଇଁ ସାମୁହିକ ଭାବରେ ଯତ୍ନ ନେବେ । ଏହା ଏକୁଟିଆ କରାଯିବା କାର୍ଯ୍ୟ ନୁହେଁ । ଏଭଳି ପରିସ୍ଥିତିରେ ଜନସାଧାରଣ ସରକାରଙ୍କୁ ସାହାଯ୍ୟ କରିବା ଉଚିତ୍ । ଏଥିପାଇଁ ଯୁବସମାଜ ସରକାର ତଥା ଅନ୍ୟମାନଙ୍କ ସହ ହାତ ମିଳାଇ ଆଗେଇ ଆସିବା ଉଚିତ୍ । ଆମେ ଦେଖିବାକୁ ଚାହୁଁ ଯେ—ଏଥିପାଇଁ ଦେଶର ପ୍ରତ୍ୟେକ ନରନାରୀ ବ୍ୟକ୍ତି, ପ୍ରତ୍ୟେକ ସଂପ୍ରଦାୟ ସାମୁହିକଭାବରେ ଏ ପରିସ୍ଥିତିର ସମ୍ମୁଖୀନହେବାକୁ ଆଗେଇ ଆସିବେ । ଆମେ ଏଥିପାଇଁ ଏପରି ଏକ ଆନ୍ଦୋଳନ କରିବା ଯାହାକି ଦେଶର ପ୍ରତ୍ୟେକ ଗଳି କନ୍ଦିରେ ଲୋକଙ୍କ ନିକଟରେ ପହଞ୍ଚି ପାରିବ ।

ଅପେକ୍ଷାକୃତ ବିତ୍ତଶାଳୀ ବ୍ୟକ୍ତିମାନେ ଆର୍ଥିକଦୁର୍ବଳମାନଙ୍କୁ ସାହାଯ୍ୟ କରିବାର ସମୟ ବର୍ତ୍ତମାନ ଆସିଛି । ଅସାମାଜିକ ବ୍ୟକ୍ତିମାନେ ଏହି ପରିସ୍ଥିତିରୁ ଯେପରି ଫାଇଦା ଉଠାଇ ନିଅନ୍ତି, କିମ୍ବା ମହଙ୍ଗି ପ୍ରପୀଡ଼ିତ ବ୍ୟକ୍ତିଙ୍କୁ ଆର୍ଥିକ ଶୋଷଣ ନକରନ୍ତି ସେଥିପ୍ରତି ଆମକୁ ଦୃଷ୍ଟି ଦେବାକୁ ପଡ଼ିବ । ଏଭଳି ବ୍ୟକ୍ତିଙ୍କ ପ୍ରତି ଆମକୁ ସତର୍କ ରହିବାକୁ ପଡ଼ିବ । କୌଣସି ପଦାର୍ଥ ଗୋପନଭାବରେ ସଞ୍ଚିତ ରଖିବା କାର୍ଯ୍ୟକୁ ବନ୍ଦ କରି ସୁଷମ ବଣ୍ଟନ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ଆମେ ଯଦି ଅସାମାଜିକ ଲୋକଙ୍କ ପ୍ରତି ସଚେତନ ରହିପାରିବା ତେବେ ଏହି ପରିସ୍ଥିତିକୁ ଅନାୟାସରେ ନିୟନ୍ତ୍ରଣ କରିପାରିବା । ଏଥିପାଇଁ କୌଣସି ପ୍ରକାରରେ ଅସାମାଜିକତାକୁ ପ୍ରଶ୍ରୟ ଦିଆଯିବ ନାହିଁ । ସରକାର ନିଜର ସମସ୍ତ ଶକ୍ତି ବିନିମୟରେ ଅସାମାଜିକ ମାନଙ୍କୁ ଆୟତ୍ତ କରି ରଖିବେ । ଏଥିପାଇଁ କାର୍ଯ୍ୟ କରୁଥିବା କର୍ମଚାରୀମାନେ ଯଦି କର୍ତ୍ତବ୍ୟରେ ଅବହେଳା କରନ୍ତି ତେବେ ସେମାନଙ୍କୁ ହଟାଇ ଦିଆଯାଇ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ନିମିତ୍ତ ସରକାର ଦୃଷ୍ଟି ଦେବେ । କିନ୍ତୁ ମୁଁ ସମଗ୍ର ଦେଶବାସୀଙ୍କୁ ବିନମ୍ର ଅନୁରୋଧ କରୁଛି ଯେ, ସେମାନେ ଏ ଜାତୀୟ ସମସ୍ୟାର ମୁକାବିଲା ନିମିତ୍ତ ଐକ୍ୟବଦ୍ଧ ହୋଇ ଆଗେଇ ଆସିବା ଉଚିତ୍ । ଏଥିପାଇଁ ଦେଶର ପ୍ରତ୍ୟେକ ଅଞ୍ଚଳରୁ ଗଠନମୂଳକ ସାହାଯ୍ୟ ଆମେ ଚାହୁଁ । ପ୍ରତ୍ୟେକ ବିଧାୟକ, ପାର୍ଲାମେଣ୍ଟ ସଦସ୍ୟ, ବିରୋଧୀ ଦଳ ସଦସ୍ୟ, ବୁଦ୍ଧିଜୀବୀ ତଥା ସାମ୍ବାଦିକଙ୍କର ସାହାଯ୍ୟ ମଧ୍ୟ ଆମେ ଚାହୁଁ । ଏହି ପରିପ୍ରେକ୍ଷୀରେ ଜାତୀୟ ସମସ୍ୟାର ସମାଧାନ ନିମିତ୍ତ ଜାତୀୟ ଐକ୍ୟ ଆମେ କାମନା କରୁ ।

(ପ୍ରଧାନମନ୍ତ୍ରୀଙ୍କ ନୂଆଦିଲ୍ଲୀ ଭାଷଣରୁ)

ଶାନ୍ତି ଓ ଅହିଂସା କିମ୍ବା ଯେ କୌଣସି ପନ୍ଥା ଅବଲମ୍ବନ କରି ଆମ ଦେଶର ବୀର ଓ ସ୍ୱାଧୀନତା ସଂଗ୍ରାମୀମାନେ ସେମାନଙ୍କର ଭବିଷ୍ୟତ ବଂଶଧରଙ୍କ ପାଇଁ ଯେଉଁ ସ୍ୱାଧୀନତା ଆଣିଥିଲେ, ତାହା ହେଉଛି ପ୍ରକୃତ ଭିତ୍ତିଭୂମି ଯେଉଁଠାରୁ କି ନୂତନ ଭାରତ ଜନ୍ମଲାଭ କରୁଛି । ଏହି ଭୂମିର ବର୍ତ୍ତମାନ ସୁଦ୍ଧା ପୂର୍ଣ୍ଣ ବିକାଶ ଘଟି ନାହିଁ । ଏହାର ବୃଦ୍ଧି ନିମନ୍ତେ ସ୍ୱେଦ ଓ ରକ୍ତ ପ୍ରଦାନ କରି ଜଳସେଚିତ କରିବାକୁ ପଡ଼ିବ । ଏହାଦ୍ୱାରା ଭାରତ ରୂପକ ଭୂମି ସର୍ବତ୍ର ସବୁଜବର୍ଣ୍ଣ ହୋଇ ଉଠିବ ।

—ଶ୍ରୀମତୀ ଗାନ୍ଧୀ

# ମରୁଡ଼ିର ମୁକାବିଲା

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ସଂପ୍ରତି ଆମ ରାଜ୍ୟରେ ଅସ୍ୱାଭାବିକ ମରୁଡ଼ି ପରିସ୍ଥିତି ଉପୁଜିଛି । ବର୍ଷା ଅଭାବରୁ ଗଭୀର ମରୁଡ଼ି ହୋଇଛି । ଅନେକ ବର୍ଷ ପରେ ଏଭଳି ଏକ ମରୁଡ଼ି ପରିସ୍ଥିତି ଦେଖାଦେଇଛି ।

ଆମ ରାଜ୍ୟର ବ୍ୟାପକ ଅଞ୍ଚଳରେ ବର୍ଷା ହେଲା ନାହିଁ । ହାରାହାରି ବର୍ଷା ରିପୋର୍ଟରୁ ଜଣାପାଉଛି ଯେ ଯେତିକି ବର୍ଷା ହେବା କଥା, ଅନେକ ଯାଗାରେ ତାହାର ଏକ ତୃତୀୟାଂଶ କିମ୍ବା ଅର୍ଦ୍ଧାଂଶ ବର୍ଷା ହୋଇଛି । ଏଠାରେ ହାରାହାରିର ଅର୍ଥ କିଛି ନୁହେଁ । ଯଦି ଗୋଟିଏ ଯାଗାରେ ୫୦୦ ମି.ମି. ବର୍ଷା ହୋଇଛି, ଅନ୍ୟ ଯାଗାମାନଙ୍କରେ ୧୦୦ କିମ୍ବା ୧୫୦ ମି.ମି. ବର୍ଷା ହୋଇଛି । ତେଣୁ ବର୍ଷା ସଂପର୍କରେ ଜିଲ୍ଲାର ପର୍ଯ୍ୟାଲୋଚନା କରିବା ସମୟରେ ପ୍ରତ୍ୟେକ ବ୍ଲକ୍‌ରେ ବର୍ଷାର ପରିମାଣକୁ ଆଖି ଆଗରେ ରଖିବାକୁ ପଡ଼ିବ । ଏସବୁ ହିସାବକୁ ନେଇ କେଉଁ କେଉଁ ଅଞ୍ଚଳରେ ମରୁଡ଼ି ତାହା ସ୍ଥିର କରିବାକୁ ହେବ ।

## ଜଳ ବିନ୍ଦୁଟିଏ...

ଏବର୍ଷ ଅତି କମ୍ ବର୍ଷା ହେବା ଫଳରେ ଆମର ପ୍ରଭୂତ ଶସ୍ୟହାନି ଘଟିଛି । ବିଶେଷ କରି ଢିପ ଜମିରେ ହେଉଥିବା ଆଶୁଧାନ, ମାଣ୍ଡିଆ ତଥା ଅନ୍ୟାନ୍ୟ ଫସଲ ନଷ୍ଟ ହୋଇ ଯାଇଛି । ବର୍ତ୍ତମାନ ପ୍ରଶ୍ନ ହେଉଛି—ଆମେ କିପରି ଭାବରେ ଏହି ମରୁଡ଼ି ପରିସ୍ଥିତିର ମୁକାବିଲା କରିବା । ଏବେ ଅଳ୍ପ ଅଳ୍ପ ବର୍ଷା ହେଉଛି । ଯଦି ବର୍ଷା ବନ୍ଦ ହୋଇଯାଏ, ତେବେ ପରିସ୍ଥିତି ଆହୁରି ଭୟାବହ ହେବ । କାରଣ ବର୍ତ୍ତମାନ ଶ୍ରାବଣ ମାସ ଶେଷ ହୋଇ ଭାଦ୍ରବ ମାସ ଆସିଲା । ବର୍ଷା ହେବାର ସମୟ ଗ୍ରୁଡ଼ିଗଲା । ଜ୍ୟେଷ୍ଠ ମାସରେ ବର୍ଷା ଆରମ୍ଭ ହୁଏ କିନ୍ତୁ ବର୍ଷା ହେଲା ନାହିଁ । ଯାହା ହେଲା ଅତି ଅଳ୍ପ । ତା'ପରେ ଆସିଲା ଆଷାଢ଼—ବର୍ଷା ଋତୁର ମାସ । ବର୍ଷା ହେଲା ଅତି କମ୍ । ତା'ପରେ ଶ୍ରାବଣ ମାସ— ଧାରା ଶ୍ରାବଣ ଖରା ଶ୍ରାବଣରେ ପରିଣତ ହେଲା । ବର୍ତ୍ତମାନ ଭାଦ୍ରବ ମାସ । ଭାଦ୍ରଅ ଖରା ଆହୁରି ପ୍ରବଳ ହେବ । ଏଭିକି ଯେତେ ବର୍ଷା ହେଲେ ସୁଦ୍ଧା, ମଧ୍ୟମ ଧରଣର ଓ ଖାଲ ଜମିରେ ଥିବା ଫସଲକୁ ଆମେ କିପରି ରକ୍ଷା କରିବା ତାହା ସମସ୍ତେ ବିଚାର କରିବା କଥା ।

## ଅଧିକ କାମଧନ୍ଦା

ମରୁଡ଼ି ପରିସ୍ଥିତି ଯୋଗୁଁ ଗାଁଗହଳରେ ମଧ୍ୟମ ଚାଷୀ, ଛୋଟ ଚାଷୀ ଓ ସାଧାରଣ ମୂଲିଆ ଶ୍ରେଣୀର ଲୋକମାନେ ବିଶେଷ ଭାବରେ କ୍ଷତିଗ୍ରସ୍ତ ହେବେ । ସେଥିପାଇଁ ଆମକୁ ଯଥେଷ୍ଟ ପରିମାଣରେ କାମଧନ୍ଦା ସୃଷ୍ଟି କରିବାକୁ ହେବ । ଏ ଦିଗରେ ଜିଲ୍ଲାପାଳମାନଙ୍କର ବିଶେଷ ଦାୟିତ୍ୱ ରହିଛି । ଏବେ ମରୁଡ଼ି ଅଞ୍ଚଳରେ କାମଧନ୍ଦା ମିଳୁଛି କି ନାହିଁ ତାହା ଜିଲ୍ଲାପାଳମାନେ ତଦାରଖ କରିବେ । କାମ ଅଭାବରୁ କେହି ଅନାହାରରେ ରୋଗଭୋଗ କରିବାର ପ୍ରଶ୍ନ ଉଠୁନାହିଁ । ରାଜ୍ୟରେ ଅନାହାର ମୃତ୍ୟୁ ହୋଇ ନାହିଁ କି ହେବ ନାହିଁ ବୋଲି ମୋର ବିଶ୍ୱାସ । ସେଥିପାଇଁ ଯଥେଷ୍ଟ ପରିମାଣରେ କାମଧନ୍ଦା ଯୋଗାଇବା' ହେଉଛି ଜିଲ୍ଲାପାଳମାନଙ୍କର ଦାୟିତ୍ୱ । ଏହି କାମଧନ୍ଦା ମଧ୍ୟରେ ଜଳାଶୟ ଖନନ, ଅସଂପୂର୍ଣ୍ଣ କାର୍ଯ୍ୟଗୁଡ଼ିକୁ ସଂପୂର୍ଣ୍ଣ କରିବା, ବଡ଼ ବଡ଼ ପୋଖରୀ ଖୋଳିବା ପ୍ରଭୃତି ଜଳସେଚନ ପରିକଳ୍ପନା ଉପରେ ସବୁଠାରୁ ଜୋର୍ ଦିଆଯିବ । ବର୍ଷା ଦିନରେ ପୋଖରୀ ଖୋଳିବା କାମ ହେବ ନାହିଁ ବୋଲି ନିୟମ ଥିଲେ ସୁଦ୍ଧା, ଏକାମ ହେବ । କାରଣ ବର୍ଷା ଯେତେବେଳେ ନାହିଁ, ଖରାଦିନେ ଯେଉଁସବୁ କାମ ହୁଏ ବର୍ତ୍ତମାନ ସେସବୁ କାମ କରିବାକୁ ହେବ ।

## ଶ୍ରମଭିତ୍ତିକ ଯୋଜନା

ବ୍ଲକ୍‌ଗୁଡ଼ିକର ବାର୍ଷିକ ପରିକଳ୍ପନା ପୁନଃନିର୍ଦ୍ଧାରିତ ହେବା ଦରକାର । ଏହି ପରିକଳ୍ପନାରେ ଅନେକ ବିଷୟ ଅଛି, ଯାହା ଦ୍ୱାରା ବିଶେଷ ଲୋକଙ୍କୁ କାମଧନ୍ଦା ଯୋଗାଇ ହେବ ନାହିଁ । ତେଣୁ, ଶ୍ରମଭିତ୍ତିକ କାର୍ଯ୍ୟ ଉପରେ ଅଧିକ ଗୁରୁତ୍ୱ ଦେବାକୁ ପଡ଼ିବ । ବ୍ଲକ୍ ସ୍ତରରେ ବିଭିନ୍ନ କାର୍ଯ୍ୟ ହେବା ପାଇଁ ଜିଲ୍ଲାପାଳମାନଙ୍କ ହାତରେ ବିଭିନ୍ନ ହେଡ୍‌ରେ ବହୁତ ଟଙ୍କା ରହିଛି । ସେ ସବୁ ଅର୍ଥ ଖର୍ଚ୍ଚ କରାଯାଇ ଶୀଘ୍ର କାମ କରିବା ଜିଲ୍ଲାପାଳମାନଙ୍କର ଦାୟିତ୍ୱ । ସମନ୍ୱିତ ଗ୍ରାମାଞ୍ଚଳ ବିକାଶ କାର୍ଯ୍ୟକ୍ରମ (ଆଇ.ଆର୍.ଡି.ପି.)ରେ ଆମେ ଧାର୍ଯ୍ୟ ଲକ୍ଷ୍ୟ ତୁଳନାରେ ମାତ୍ର ଶତକଡ଼ା ପଚାଶ ଭାଗ ଲକ୍ଷ୍ୟ ପୂରଣ କରିଛୁ । ଗରିବ ଉପକୃତ ବ୍ୟକ୍ତିଙ୍କୁ ଦ୍ୱିତୀୟ ଥର ଋଣ ଦେବାରେ ଆମେ ଶତକଡ଼ା ଅଣା ଭାଗ ସଫଳତା ହାସଲ କରିଛୁ । ଏସବୁ କାର୍ଯ୍ୟ କର୍ମ ନିଯୋଗ ଦୃଷ୍ଟିରୁ ଗୁରୁତ୍ୱ ପୂର୍ଣ୍ଣ । କାରଣ ଗୋଟିଏ ଗୋଟିଏ ଶ୍ରମ ଭିତ୍ତିକ କାର୍ଯ୍ୟକ୍ରମ । କିଛି ନା କିଛି ଧନ୍ଦା ଲୋକଙ୍କୁ ଯୋଗାଇ ଆତ୍ମନିଯୁକ୍ତି ଦେବା ହେଉଛି ଉକ୍ତ କାର୍ଯ୍ୟକ୍ରମର ଉଦ୍ଦେଶ୍ୟ । ଏହା ଦ୍ୱାରା ଗୋଟିଏ କାର୍ଯ୍ୟରେ ଦୁଇ ବା ତିନିଜଣ ଲୋକଙ୍କୁ ଲଗାଯାଇ ପାରିବ । ଏ ଦୃଷ୍ଟିରୁ ଗ୍ରାଇସେମ୍, ଫିସରୀ, ହ୍ୟାଣ୍ଡଲୁମ୍ ପ୍ରଭୃତି କାର୍ଯ୍ୟକ୍ରମରେ ଆମେ ବେଶି ନିଯୁକ୍ତି ଦେଇପାରିବା ।

## ମଧ୍ୟମ ଓ କ୍ଷୁଦ୍ର ଚାଷୀ

ମରୁଡ଼ି ଫଳରେ ବର୍ତ୍ତମାନ ମଧ୍ୟମ ତଥା ଛୋଟ ଚାଷୀମାନେ ସବୁଠାରୁ ବେଶି କ୍ଷତିଗ୍ରସ୍ତ ହେବାକୁ ଯାଉଛନ୍ତି । ସେମାନଙ୍କୁ DRDA ଜରିଆରେ ତଥା ଅନ୍ୟାନ୍ୟ ଯୋଜନାରେ ସାହାଯ୍ୟ କରିବାକୁ ପଡ଼ିବ । NREP ଓ RLEGP ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ ବାବଦରେ ଜିଲ୍ଲାପାଳମାନଙ୍କ ହାତରେ ବହୁତ ଟଙ୍କା ଅଛି । ବ୍ୟାପକ କାର୍ଯ୍ୟକ୍ରମ ଜରିଆରେ ଏ ସମସ୍ତ ଅର୍ଥ ଭଲ ଭାବରେ ଖର୍ଚ୍ଚ କରାଗଲେ, ଏ ମରୁଡ଼ି ପରିସ୍ଥିତିରେ ଆମର ଉଦ୍ଦେଶ୍ୟ ସାଧିତ ହୋଇ ପାରିବ ।

ବର୍ତ୍ତମାନ ଥିବା ଫସଲକୁ, କିପରି ରକ୍ଷା କରାଯାଇ ପାରିବ, ତାହା ହେଲା ବଡ଼ କଥା । ଜଳସେଚନ ଓ ସାର ପ୍ରୟୋଗ ବିଷୟ ଉପରେ ଆମକୁ ବିଶେଷ ଗୁରୁତ୍ୱ ଦେବାକୁ ହେବ । ଉଠା ଜଳସେଚନ ବିଭାଗର ଦାବୀ ଅନୁଯାୟୀ ଅର୍ଥ ଯୋଗାଇ ଦିଆଯାଇଛି । ଜଳସେଚନ ପଏଣ୍ଟଗୁଡ଼ିକୁ ବିଦ୍ୟୁତ୍ ସଂଯୋଗ କରିବା ଏବଂ କ୍ଷେତ ନାଳିଗୁଡ଼ିକ ତିଆରି କରିବା ଉପରେ ବିଶେଷ ଜୋର୍ ଦିଆଯିବା ଦରକାର । କାରଣ ଏଗୁଡ଼ିକ ବହୁଳ ଶ୍ରମ ଭିତ୍ତିକ ଏବଂ ଏହା ଦ୍ୱାରା ଅଧିକା ଜଳସେଚନ ମଧ୍ୟ ହୋଇପାରିବ । ତେଣୁ, ଅଧା ରହିଥିବା ଉଠାଜଳସେଚନ ପଏଣ୍ଟର କାର୍ଯ୍ୟ ସଂପୂର୍ଣ୍ଣ କରିବା, ନୂଆ ଜଳସେଚନ ପଏଣ୍ଟ କରିବା ଏବଂ କ୍ଷେତନାଳି କରିବା ପାଇଁ ଅର୍ଥର ବ୍ୟବସ୍ଥା ହୋଇଛି । ଏସବୁ କାର୍ଯ୍ୟ ଶୀଘ୍ର ଯେପରି ହେବ, ସେଥିପ୍ରତି ଜିଲ୍ଲାପାଳମାନେ ବିଶେଷ ତତ୍ପର ହେବା ଦରକାର । ଜିଲ୍ଲାପାଳମାନେ ବିଧାନ ସଭା ସଦସ୍ୟ ଓ ପାର୍ଲିଆମେଣ୍ଟ ସଦସ୍ୟମାନଙ୍କ ସହ ଆଲୋଚନା କରି ଏହାକୁ ତ୍ୱରାନ୍ୱିତ କରିବେ ।

## ପାନୀୟ ଜଳ ସମସ୍ୟା

ପାନୀୟ ଜଳ ସମସ୍ୟା ଦୂର କରିବାକୁ ହେଲେ ପ୍ରଥମେ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରି ଅଚଳ ନଳକୂପଗୁଡ଼ିକୁ କାର୍ଯ୍ୟକ୍ଷମ କରାଇବାକୁ ହେବ । ଆବଶ୍ୟକ କ୍ଷେତ୍ରରେ ନୂଆ ନଳକୂପ ବସାଇବାକୁ ହେବ ଏବଂ କୂଅ ମଧ୍ୟ ଖୋଳିବାକୁ ହେବ । ଏଥିପାଇଁ ଅର୍ଥର ବ୍ୟବସ୍ଥା ହୋଇଛି ।

'ଭୋଜନ କାର୍ଯ୍ୟକ୍ରମ' ଆମ ପାଇଁ କିଛି ନୂଆ ନୁହେଁ । ୧୯୮୨ ମସିହାଠାରୁ ଏହାକୁ ସଫଳତାର ସହ ଆମେ ରାଜ୍ୟରେ କାର୍ଯ୍ୟକାରୀ କରିଆସୁଛୁ । Nursing expectant mothers ଏବଂ ଛୋଟ ଛୋଟ ପିଲାମାନଙ୍କୁ ଏବଂ ଅତି ଦୁଃସ୍ଥ ବ୍ୟକ୍ତିମାନଙ୍କୁ ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ କରାଯାଇଛି । ବଲାଙ୍ଗିର ଓ କଳାହାଣ୍ଡି ପ୍ରଭୃତି ଜିଲ୍ଲାରେ ତ୍ୱରିତ ଭୋଜନ କାର୍ଯ୍ୟକ୍ରମ ଆରମ୍ଭ କରିବା ପାଇଁ ଜିଲ୍ଲାପାଳମାନଙ୍କୁ କ୍ଷମତା ଦିଆଯାଇଛି । ରାଜ୍ୟରେ ବନ୍ୟା, ମରୁଡ଼ି ବା ବାତ୍ୟା ହୋଇଥିବା ସମୟରେ ଏହି କାର୍ଯ୍ୟକ୍ରମ ଅତ୍ୟନ୍ତ ସଫଳତାର ସହ କାର୍ଯ୍ୟକାରୀ ହୋଇଛି । ବର୍ତ୍ତମାନ ଏହାକୁ ସୁରୁ କରିବାରେ କୌଣସି ଅସୁବିଧା ନାହିଁ ।

ଆଉ ଗୋଟିଏ କଥା ହେଲା, ଏ ପରିସ୍ଥିତିରେ ଢିପ ଜମି ଅଞ୍ଚଳରେ ଆମେ କ'ଣ ବିକଳ୍ପ ବ୍ୟବସ୍ଥା କରି ପାରିବା । ସେଠାରେ ଧାନଗଛ ହେବା ଆଦୌ ସମ୍ଭବ ନୁହେଁ । ଏଣୁ, ତୈଳବୀଜ ଓ ଡାଲି ଜାତୀୟ ଫସଲ ଢିପ ଜମି ଅଞ୍ଚଳରେ କରାଗଲେ ବେଶ୍ ଭଲ ହେବ । ଢିପ ଜମି କଥା ବିଚାର କଲାବେଳେ ଆମକୁ ମଧ୍ୟମ ଧରଣର ଜମି ଓ ଅନ୍ୟ ଜମି କଥା ମଧ୍ୟ ବିଚାର କରିବାକୁ ହେବ ।

## ଦରଦାମ ବୃଦ୍ଧି

ବର୍ତ୍ତମାନ ସମୟରେ ସାଧାରଣ ଭାବରେ ଦରଦାମ ବଢ଼େ । କିନ୍ତୁ ଏବର୍ଷ ଅତ୍ୟଧିକ ଭାବରେ ଦରଦାମ ବଢ଼ିଛି । ବିରୋଟ ଅବସ୍ଥା ଦେଖି ବ୍ୟବସାୟୀମାନେ ଜିନିଷପତ୍ର ବଜାରକୁ ନଛାଡ଼ିବା ଫଳରେ ଏପରି ଦରଦାମ ବଢ଼ିଯାଏ । ତେଣୁ, ଖାଦ୍ୟଶସ୍ୟ ଯୋଗାଣ ଏବଂ ବଣ୍ଟନ ବ୍ୟବସ୍ଥାକୁ ଆମକୁ ସୁଦୃଢ଼ କରିବାକୁ ପଡ଼ିବ । ଏଭଳି ଅବସ୍ଥା ଯେତେବେଳେ ଉପୁଜୁଛି, ସେତେବେଳେ ଆମେ ହାଟରେ ବିକ୍ରି କରିବା ଆରମ୍ଭ କରିଛୁ ଏବଂ ସଙ୍ଗେ ସଙ୍ଗେ ଅବସ୍ଥାରେ ପରିବର୍ତ୍ତନ ଘଟିଛି । ଆମକୁ ଅନ୍ୟ ଜିନିଷପତ୍ର ସହ ଗ୍ରାଉଜ ଦର ଠିକ୍ ରଖିବା ଉପରେ ବିଶେଷ ଗୁରୁତ୍ୱ ଦେବାକୁ ହେବ । କୌଣସି ଅଞ୍ଚଳରେ କିଛି ଅସୁବିଧା ହେଲେ, ଅବିଳମ୍ବେ ହାଟରେ ଜିନିଷପତ୍ର ବିକ୍ରି କରିବାକୁ ହେବ । ବର୍ତ୍ତମାନ ଭାରତବର୍ଷରେ ଯେଉଁ ଅବସ୍ଥା ଦେଖାଦେଇଛି, ଓଡ଼ିଶାରେ ଯଦି ଯଥେଷ୍ଟ ପରିମାଣର ଖାଦ୍ୟଶସ୍ୟ ଆମେ ମହଜୁଦ୍ ନରଖିବା, ତା'ହେଲେ ଆମକୁ ଗୁରୁତର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିବ । ତେଣୁ, ବଣ୍ଟନ ବ୍ୟବସ୍ଥାକୁ ସୁଦୃଢ଼ କରିବାକୁ ହେବ । ସମବାୟ ଦୋକାନଗୁଡ଼ିକ ଜରିଆରେ ଖାଦ୍ୟଶସ୍ୟ, ଖାଇବା ତେଲ ପ୍ରଭୃତି ଯୋଗାଇବାକୁ ହେବ । ଯୋଗାଣ ବିଭାଗ ତରଫରୁ ହାଟରେ ଖାଇବା ତେଲ ବିକ୍ରୟ କରାଯାଇ ପାରିବ କି ନାହିଁ, ସେ ବିଷୟରେ ମଧ୍ୟ ଚିନ୍ତା କରାଯିବା ଦରକାର ।

## କାମ ପାଇଁ ଖାଦ୍ୟ

'କାମ ପାଇଁ ଖାଦ୍ୟ' ଆମର ଗୋଟିଏ କାର୍ଯ୍ୟକ୍ରମ । କିନ୍ତୁ ପ୍ରକୃତରେ ଦେଖାଯାଉଛି, କେହି ଖାଦ୍ୟ ପାଉନାହାନ୍ତି । କଣ୍ଟ୍ରାକ୍ଟରମାନେ ଖାଦ୍ୟଶସ୍ୟ ନେଇ ବିକ୍ରି କରୁଛନ୍ତି ଏବଂ ଲୋକଙ୍କୁ ମଜୁରୀ ଦେଉଛନ୍ତି । ଏହାକୁ ଆମେ ସଫଳତାର ସହ କାର୍ଯ୍ୟକାରୀ କରିବାକୁ ହେଲେ, ଗରିବ ମୂଲିଆ ଶ୍ରେଣୀର ଲୋକମାନେ ଯେପରି ଠିକ୍ ଭାବରେ ଖାଦ୍ୟଶସ୍ୟ ପାଇ ପାରିବେ, ସେଥିପ୍ରତି ଦୃଷ୍ଟି ଦେବାକୁ ପଡ଼ିବ ।

ବର୍ତ୍ତମାନ ମରୁଡ଼ି ହୋଇଛି ଏଉ ସମୟରେ ଯଦି ବନ୍ୟା ହେଲା ତେବେ ଈଶ୍ୱରଙ୍କ ଆଶୀର୍ବାଦ ଭଳିଆ ମନେ କରିବାକୁ ହେବ । ବନ୍ୟା ସର୍ବଥା ଅଭିନନ୍ଦନୀୟ କିନ୍ତୁ ମରୁଡ଼ି ନୁହେଁ । ବନ୍ୟା ହେଲେ ରକ୍ଷା ମିଳି ପାରିବ, ଆଉ ଥରେ ଫସଲ ହୋଇ ପାରିବ; କିନ୍ତୁ ମରୁଡ଼ି ହେଲେ ରକ୍ଷା ନାହିଁ । ଏ ବିଷୟରେ ମଧ୍ୟ ଆମର ପ୍ରସ୍ତୁତି ଆବଶ୍ୟକ । ଏ ରାଜ୍ୟକୁ ଆସନ୍ନ ମରୁଡ଼ିରୁ ରକ୍ଷା କରିବା ପାଇଁ ଦୃଢ଼ ମନୋବଳ ଓ ଦୃଢ଼ ମନୋଭାବ ନେଇ ଆମକୁ ସଂଗ୍ରାମ କରିବାକୁ ପଡ଼ିବ ।

ଜିଲ୍ଲାପାଳ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀଙ୍କ ପ୍ରଦତ୍ତ ଭାଷଣରୁ





କେନ୍ଦୁଝର ଗ୍ରାମାଞ୍ଚଳରେ ଖାଦ୍ୟଯୋଗାଣ ଓ ସ୍ୱାସ୍ଥ୍ୟସେବା





ଅଧିକାରୀଙ୍କ ସହିତ ମଣ୍ଡଳି ପରିସ୍ଥିତି ସମ୍ପର୍କରେ ଆଲୋଚନା।







ନାରୀ ଓ ରାଜନୀତି "ଆଲୋଚନା ଚକ୍ର ଉଦ୍‌ଯାପନ ଉତ୍ସବରେ

ଶ୍ରୀ ଶ୍ରୀକାନ୍ତ ଜେନା

# ମରୁଡ଼ି ମୁକାବିଲା ଦିଗରେ ସମବାୟ

ଶ୍ରୀ ରାସବିହାରୀ ବେହେରା

ସମବାୟର କ୍ରାନ୍ତିକାରୀ ଚିନ୍ତାଧାରା, ଏକ ଯୁଗାନ୍ତକାରୀ ପରିବର୍ତ୍ତନ ସଂଘଟିତ କରିବା ଲାଗି ଉଦ୍ଦିଷ୍ଟ । ଏହି ଚିନ୍ତାଧାରା ଗାନ୍ଧିଜୀଙ୍କ ପରିକଳ୍ପିତ ବିକାଶମୁଖୀ ରାଷ୍ଟ୍ରର ମୂଳଭିତ୍ତି ଥିଲା । ତେଣୁ ଓଡ଼ିଶାରେ ସ୍ୱାଧୀନତାର ପ୍ରାକ୍ କାଳରେ ଜାତୀୟ ସଂଗ୍ରାମର ସେନାପତିମାନେ ଏହି ଗଣ ଆନ୍ଦୋଳନ ସହିତ ନିବିଡ଼ ଭାବେ ସଂଶ୍ଳିଷ୍ଟ ଥିଲେ । ସେମାନଙ୍କ ମଧ୍ୟରେ ଥିଲେ ପୁଣ୍ୟଶ୍ଳୋକ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଦେବୀ ।

ସ୍ୱାଧୀନତାର ପରବର୍ତ୍ତୀ କାଳରେ ସମବାୟକୁ ଗ୍ରାମାଞ୍ଚଳର ଯୋଜନାବଦ୍ଧ ବିକାଶ ଲାଗି ଏକ ମୁଖ୍ୟ ଆୟୁଧ ରୂପେ ଗ୍ରହଣ କରାଯାଇଥିଲା । ଭାରତର ଯୋଜନା କମିଶନ୍ ସମବାୟକୁ "ଗଣତନ୍ତ୍ର ପ୍ରତିଫଳିତ ଅର୍ଥନୈତିକ କାର୍ଯ୍ୟ" ରୂପେ ଅଭିହିତ କରିଥିଲେ ଏବଂ ଯୋଜନାର ବିକେନ୍ଦ୍ରୀକରଣ ଲାଗି ଏହାର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସ୍ୱୀକୃତି ପ୍ରଦାନ କରିଥିଲେ । ଏହି ସମବାୟ ଆନ୍ଦୋଳନର ମୁଖ୍ୟ ପ୍ରବକ୍ତା ଥିଲେ, ନବ ଭାରତର ନିର୍ମାତା ପଣ୍ଡିତ ଜବାହରଲାଲ ନେହେରୁ । ତାଙ୍କର ଉଦାତ୍ତ ଆହ୍ୱାନ ଥିଲା— ସମବାୟର ପ୍ରବହମାନ ଚିନ୍ତାଧାରାରେ ସମଗ୍ର ଭାରତ ପରିପ୍ଳୁତ ଓ ନିମଜ୍ଜମାନ ହେବା ଆବଶ୍ୟକ ଏବଂ ଗ୍ରାମ୍ୟ ଅର୍ଥନୀତିରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ଜନଗଣଙ୍କର ଆଶାଆକାଂକ୍ଷାର, ପ୍ରତୀକ, ସମବାୟ ହିଁ ଏକମାତ୍ର ପ୍ରତିଷ୍ଠାନ । ଏହି ଆହ୍ୱାନ ରୂପରେଖ ନେଲା, ଓଡ଼ିଶାର ଗ୍ରାମାଞ୍ଚଳରେ ସେବାଭିତ୍ତିକ ସମବାୟ ସମିତିମାନ ଗଠନରେ । ପରବର୍ତ୍ତୀ କାଳରେ ୧୯୭୪ ମସିହାରେ ଆଦିବାସୀ ବହୁଳ ଅଞ୍ଚଳରେ ଲ୍ୟାମ୍ପ୍ ସମିତିମାନ ଗଠନ କରାଗଲା ।

ଓଡ଼ିଶାରେ ଉଭୟେ ସେବା ଓ ଲ୍ୟାମ୍ପ୍ ସମିତି କୃଷି ଋଣ ବଣ୍ଟନର ଗୁରୁ ଦାୟିତ୍ୱ ବହନ କରି ଆସୁଛନ୍ତି । ବିଗତ କେତେ ବର୍ଷର ଖିଲାପି ଋଣ ବୃଦ୍ଧି ପାଇଥିଲେ ମଧ୍ୟ କୃଷି ଋଣ ବଣ୍ଟନର ଧାରା ଅବ୍ୟାହତ ରହିଛି ଓ ଚଳିତ ଖରିଫ୍ ଋତୁରେ ପ୍ରାୟ ୩୬କୋଟି ଟଙ୍କାର ଖରିଫ୍ ଋଣ କୃଷିଜୀବୀମାନଙ୍କୁ ସମବାୟ ସମିତିମାନଙ୍କ ଜରିଆରେ ବଣ୍ଟନ କରାଯାଇଅଛି । ମରୁଡ଼ିଜନିତ ଫସଲ ହାନୀର ପରିପ୍ରେକ୍ଷୀରେ ଚଳିତ ବର୍ଷ ଏକ ବୃହତର ରବି ଯୋଜନା କାର୍ଯ୍ୟକାରୀ କରିବାର ସିଦ୍ଧାନ୍ତ ନିଆଯାଇଅଛି । ଫଳରେ ୨୪ କୋଟି ଟଙ୍କାର ଏକ ରବି ଋଣ ଯୋଜନା ସଂଯୋଜିତ ହୋଇଛି ।

ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ଲାଗିଥିବା ସ୍ୱଳ୍ପକାଳୀନ ଋଣକୁ ମଧ୍ୟମକାଳୀନ ଋଣରେ ପରିବର୍ତ୍ତିତ କରାଯାଇଅଛି । ଏ ସମସ୍ତ ଛଡ଼ା ବିଶେଷ ଧାନ ଉତ୍ପାଦନ ଯୋଜନା, ଜାତୀୟ ତୈଳବୀଜ ଉନ୍ନୟନ ଯୋଜନା ଆଦିରେ ମଧ୍ୟ ବିଶେଷ ଋଣର ବ୍ୟବସ୍ଥା କରାଯାଇଅଛି ।

ଦୀର୍ଘକାଳୀନ ଭିତ୍ତିରେ ମରୁଡ଼ିର ମୁକାବିଲା କରିବା ଲାଗି ଜଳ ଅମଳ ପ୍ରକଳ୍ପ, ନିର୍ମାଣ, ସେଚକୂପ ଓ ନଳକୂପ ଖନନ ସହିତ ପମ୍ପ୍ ଯୋଗାଣ ପ୍ରଭୃତି ଲାଗି ଅଗ୍ରାଧିକାର ଭିତ୍ତିରେ ଦୀର୍ଘକାଳୀନ ଋଣ ପ୍ରଦାନ କରାଯାଉଅଛି । ଏହି ଦୀର୍ଘକାଳୀନ ଋଣ ବଣ୍ଟନର ମୁଖ୍ୟ ଦାୟିତ୍ୱ ବହନ କରିଛନ୍ତି, ସବ୍‌ଡିଭିଜନ ସ୍ତରରେ ସ୍ଥାପିତ ହୋଇଥିବା ଭୂ-ଉନ୍ନୟନ ବ୍ୟାଙ୍କ୍‌ମାନ । ଜଳସେଚନ ଛଡ଼ା ପାନବରଜ, ନଡ଼ିଆ ଉଦ୍ୟାନ ଆଦି ବିଭିନ୍ନ ଯୋଜନା ଲାଗି ଦୀର୍ଘକାଳୀନ ଋଣ ପ୍ରଦାନ କରିଥାଆନ୍ତି । ବିଗତ ବର୍ଷ ଏହି ପ୍ରାଥମିକ ଭୂ-ଉନ୍ନୟନ ବ୍ୟାଙ୍କ୍‌ମାନେ ପ୍ରାୟ ଆଠ କୋଟି ଟଙ୍କାର ଋଣ ପ୍ରଦାନ କରିଥିଲେ ।

ବାସଗୃହ ଯୋଗାଣ ଉଭୟ ସହର ଓ ଗ୍ରାମାଞ୍ଚଳରେ ଏକ ସମସ୍ୟା ରୂପେ ଦେଖା ଦେଇଅଛି । ବର୍ତ୍ତମାନ ସମବାୟ ସମିତି ଜରିଆରେ ସହରାଞ୍ଚଳରେ ଗୃହ ନିର୍ମାଣ କରିବା ଲାଗି ଜାତୀୟ ଜୀବନ ବୀମା ନିଗମଠାରୁ ସମବାୟ ଗୃହ ନିର୍ମାଣ ସମିତିମାନଙ୍କ ଜରିଆରେ ପର୍ଯ୍ୟାପ୍ତ ଅର୍ଥ ମିଳୁଅଛି । ଫଳରେ କେତେକ ସହରରେ ଜମି ସଂଗ୍ରହଣ କରାଯାଇ ସମବାୟ ଗୃହ ନିର୍ମାଣ କଲୋନୀମାନ ଗଢ଼ି ଉଠୁଛି । ଏହା ଏକ ଶୁଭ ଲକ୍ଷଣ । ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ହେଲା ଯେ ବିଗତ ବର୍ଷ ଗୃହ ନିର୍ମାଣ ଲାଗି ପ୍ରଦତ୍ତ ଏହି ଋଣ ଦାବୀରୁ ଶତକଡ଼ା ୯୮ ଭାଗ ଋଣ ଆଦାୟ କରାଯାଇଥିଲା ।

ଦାରିଦ୍ର୍ୟ ଦୂରୀକରଣ ହେଉଛି, ଯୋଜନାର ଅନ୍ୟତମ ଲକ୍ଷ୍ୟ । ଦାରିଦ୍ର୍ୟ ସୀମାରେଖା ତଳେ ରହିଥିବା ଅଗଣିତ ଜନସାଧାରଣଙ୍କୁ ଏଥିଲାଗି ରିହାତି ବ୍ୟବସ୍ଥା ସହିତ ଆବଶ୍ୟକୀୟ ଋଣ ପ୍ରଦାନ କରାଯାଉଅଛି । ବିଗତ ବର୍ଷ ସମବାୟ କେନ୍ଦ୍ର ବ୍ୟାଙ୍କ୍‌ମାନେ ପ୍ରାଥମିକ ସମିତିମାନଙ୍କ ଜରିଆରେ ଏଥିଲାଗି ପ୍ରାୟ ୫ କୋଟି ଟଙ୍କାର ଋଣ ପ୍ରଦାନ କରିଥିଲେ ।

ବିଗତ ବର୍ଷ ସାର ଯୋଗାଣ କ୍ଷେତ୍ରରେ ମଧ୍ୟ ଉଲ୍ଲେଖନୀୟ ଅଗ୍ରଗତି ଘଟିଥିଲା । ସମିତି ଓ ଗ୍ରାହକଙ୍କର ଦ୍ୱାର ଦେଶରେ ସାର ଯୋଗାଣର ଦାୟିତ୍ୱ ବହନ କରି, ରାଜ୍ୟ ବାଣିଜ୍ୟ ସମବାୟ ସଂଘ ପ୍ରାୟ ୧୧ ହଜାର ମେଟ୍ରିକ୍‌ଟନ୍ ସାର ବଣ୍ଟନ କରିଥିଲା । ଆଳୁ ପ୍ରଭୃତି କୃଷିଜାତ ପଦାର୍ଥମାନଙ୍କୁ ଦୀର୍ଘକାଳ ସଂରକ୍ଷିତ କରି ଏକ ଲାଭଜନକ ମୂଲ୍ୟରେ ବିକ୍ରୟ କରିବା ଲାଗି ଶୀତଳ ଭଣ୍ଡାରମାନଙ୍କର ଭୂମିକା ଉଲ୍ଲେଖଯୋଗ୍ୟ । ବିଦ୍ୟୁତ୍ ଯୋଗାଣର ଅନିୟମିତତାକୁ ହ୍ରାସ କରିବା ପାଇଁ କେତେକ ସମବାୟ ଶୀତଳ ଭଣ୍ଡାରରେ ଡ଼ିଜେଲ ଚାଳିତ ଇଞ୍ଜିନ ସଂଯୋଗ

କରାଯାଇଥିଲା ଫଳରେ ବିଗତ ବର୍ଷ ସର୍ବୋଚ୍ଚ ୧୫,୭୦୦ ମେଟ୍ରିକ୍ ଟନ୍ କୃଷିଜାତ ଦ୍ରବ୍ୟ ସଂରକ୍ଷିତ କରି ଏକ ନୂତନ ରେକର୍ଡ ସ୍ଥାପନ କରାଯାଇଅଛି ।

ସମବାୟର ମହତ୍ତର ନିୟମାବଳୀକୁ ଲକ୍ଷ୍ୟ କରି ଅନେକ ସମବାୟକୁ "ବ୍ୟବସାୟରେ ନୀତି ବା ଧର୍ମର ପ୍ରତିଷ୍ଠା" ବୋଲି ଉଲ୍ଲେଖ କରିଥାନ୍ତି । ଏହା ଖାଉଟୀ ସମବାୟ କ୍ଷେତ୍ରରେ ପ୍ରଯୁଜ୍ୟ । କ୍ରମାଗତ ମୂଲ୍ୟ ବୃଦ୍ଧିର କୁ-ପ୍ରଭାବକୁ ହ୍ରାସ କରି, ଗ୍ରାମାଞ୍ଚଳରେ ଏକ ବିଧିବଦ୍ଧ ବଣ୍ଟନ ବ୍ୟବସ୍ଥା ପ୍ରଚଳନ ଲାଗି ସମବାୟ ଖାଉଟୀ ଭଣ୍ଡାରମାନଙ୍କର ଏକ ନିର୍ଦ୍ଦିଷ୍ଟ ଭୂମିକା ରହିଅଛି । ଗ୍ରାମ ଓ ସହରାଞ୍ଚଳରେ ନିତ୍ୟବ୍ୟବହାର୍ଯ୍ୟ ଦ୍ରବ୍ୟ ବଣ୍ଟନ ଲାଗି ସମବାୟ ସମିତିମାନେ ଗୁରୁଦାୟିତ୍ବ ବହନ କରିଛନ୍ତି । ଏହାଛଡା ଫୁଲବାଣୀ ଆଦି ଆଦିବାସୀ ବହୁଳ ଜିଲ୍ଲାର ଅଗମ୍ୟ ଅଞ୍ଚଳଗୁଡ଼ିକରେ ଖାଉଟି ଦ୍ରବ୍ୟ ବଣ୍ଟନ ଲାଗି ଲ୍ୟାମ୍ପ ଓ ସେବା ସମବାୟ ସମିତିମାନଙ୍କର ଖାଉଟୀ ଶାଖାମାନ ଖୋଲା ଯାଇଅଛି । ଏହା ଫଳରେ ଅଗମ୍ୟ ଓ ଦୂର ଅଞ୍ଚଳଗୁଡ଼ିକରେ ସୁଲଭ ମୂଲ୍ୟରେ ଖାଉଟୀ ଦ୍ରବ୍ୟ ଯୋଗାଣ ସମ୍ଭବ ହୋଇପାରିଛି । ବିଗତ ବର୍ଷମାନଙ୍କରେ ପ୍ରାୟ ୪୬ କୋଟି ଟଙ୍କାର ଖାଉଟୀ ଦ୍ରବ୍ୟ ସମବାୟ ସମିତିମାନଙ୍କ ଜରିଆରେ ବଣ୍ଟନ କରାଯାଉଥିଲା ।

ସମବାୟ ଆନ୍ଦୋଳନର ଅଗ୍ରଗତି ଅବ୍ୟାହତ ରହିଛି । ଅନେକ ସମୟରେ ସମବାୟ ଆନ୍ଦୋଳନକୁ କିଛି କିଛି କଠିନ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥାଏ । କ୍ରମାଗତ ବୃଦ୍ଧିପ୍ରାପ୍ତ ଖିଲାପି ଋଣ ସହିତ ଏ ବର୍ଷର ଅଭୂତପୂର୍ବ ମରୁଡ଼ି ପରିସ୍ଥିତି ସମବାୟ ଆନ୍ଦୋଳନର ପକ୍ଷରେ ଏକ ପରୀକ୍ଷାର ସମୟ ରୂପେ ବିବେଚିତ ହେଉଥିଲେ ମଧ୍ୟ ସମବାୟ ଏହାକୁ ଅନାୟାସରେ ଅତିକ୍ରମ କରିପାରିବ । ଏହି ପରିପ୍ରେକ୍ଷୀରେ ଗୁଣାତ୍ମକ ଋଣ ଲଗାଣ ଓ ଆଦାୟ ଲାଗି ଯଥେଷ୍ଟ ଗୁରୁତ୍ବ ଆରୋପ କରାଯାଉଛି । ଋଣ ଆଦାୟ ଲାଗି ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରାଯାଇଅଛି । ଆଇନଗତ କୋର୍ତ୍ତ୍ତୁଲମ୍ ପରିବର୍ତ୍ତେ ଋଣୀମାନଙ୍କୁ ପର୍ଯ୍ୟାଲୋଚନା ଓ ପ୍ରବର୍ତ୍ତନା ଜରିଆରେ ଏ ବର୍ଷ ଋଣ ଆଦାୟର ପଦ୍ଧତିକୁ ଏକ ଭିନ୍ନ ମୋଡ ଦିଆଯାଉଅଛି । ଏହା ଫଳରେ ସ୍ବତଃ-ସ୍ଫୂର୍ତ୍ତ ଋଣ ଆଦାୟ ଲାଗି ଏକ ପରିବେଶ ସୃଷ୍ଟି ହୋଇ ପାରିଅଛି ।

ସମବାୟ ପରିସରକୁ ବ୍ୟାପକ କରିବା ପାଇଁ ସତତ ପ୍ରଚେଷ୍ଟା କରାଯାଉଅଛି । ଓଡ଼ିଶାର ୩୭ ଲକ୍ଷ କୃଷି ପରିବାର ମଧ୍ୟରୁ ପ୍ରାୟ ୩୨ ଲକ୍ଷ କୃଷି ପରିବାର, ସମବାୟ ପରିସରଭୁକ୍ତ । ଓଡ଼ିଶାର ସମସ୍ତ ଗ୍ରାମ କୃଷି ସମବାୟ ସମିତିର ପରିସୀମା ମଧ୍ୟରେ ଅନ୍ତର୍ଭୁକ୍ତ । ସବୁ ଗ୍ରାମର ସବୁ ଚାଷୀ ସଭ୍ୟଙ୍କୁ ଋଣଦାନର ବ୍ୟବସ୍ଥା କରାଯାଇଅଛି ।

ଆଦିବାସୀମାନଙ୍କର ସର୍ବାଙ୍ଗୀନ ଉନ୍ନତି ଲାଗି ସ୍ଥାପିତ ଲ୍ୟାମ୍ପ ସମିତିଗୁଡ଼ିକ କାଳକ୍ରମେ କେତେକ ରୁଗ୍ଣ ହୋଇ ପଡ଼ିଛନ୍ତି ଏବଂ ସେମାନଙ୍କୁ ଆର୍ଥିକ ଦୂରାବସ୍ଥାରୁ ମୁକ୍ତ କରିବା ଲାଗି ଅଧିକାଂଶ ଲ୍ୟାମ୍ପ ସମିତିର ମୁଖ୍ୟ ପରିଚାଳକଙ୍କର ବେତନର ଭାର ସରକାର ବହନ କରିବେ ବୋଲି ଧାର୍ଯ୍ୟ କରାଯାଇଅଛି ଏବଂ ଏହି ଲ୍ୟାମ୍ପ ସମିତିଗୁଡ଼ିକୁ ପୁନର୍ଜୀବିତ କରିବା ପାଇଁ କେତେକ ବଳିଷ୍ଠ ପଦକ୍ଷେପ ନିଆଯିବାର ସିଦ୍ଧାନ୍ତ ରହିଛି ।

ସେହିପରି ବିଭିନ୍ନ ଆଞ୍ଚଳିକ ବାଣିଜ୍ୟ ସମିତି ସ୍ତରରେ ସ୍ପିନିଂ ଓ ତେଲକଳ ଟ୍ରକ ଓ ଗୋଦାମ ଆଦି ବହୁ ସଂପଦଗୁଡ଼ିକ ଅନେକ ସମୟରେ ପୂର୍ଣ୍ଣ ଭାବରେ ବିନିଯୋଗ କରାଯାଇ ପାରୁନାହିଁ । କୃଷିଜାତ ଦ୍ରବ୍ୟ ସଂଗ୍ରହ କ୍ଷେତ୍ରରେ ଏମାନଙ୍କର ଏକ ନିର୍ଦ୍ଦିଷ୍ଟ ଭୂମିକା ରହିଛି । ଏସବୁ ଦୃଷ୍ଟିରୁ ଆଞ୍ଚଳିକ ବାଣିଜ୍ୟ ସମିତିମାନଙ୍କୁ ସୁସଂଗଠିତ କରିବା ପାଇଁ ଯୋଜନାମାନ ପ୍ରସ୍ତୁତ କରାଯାଉଅଛି ।

ଆଶା ସମବାୟ ସମିତିମାନଙ୍କର ସମସ୍ୟାବଳୀର ନିରାକରଣ ପାଇଁ ଯେଉଁ ପଦକ୍ଷେପମାନ ନିଆଯାଉଛି, ତାହା ଫଳରେ ସମବାୟ ଆନ୍ଦୋଳନ ପୁଣି ବଳିଷ୍ଠ ହୋଇ ଉଠିବ ଓ ଗ୍ରାମାଞ୍ଚଳରେ ଏକ ଅର୍ଥନୈତିକ ବିପ୍ଳବ ସଂଗଠନ କରିବା ଲାଗି ବଳିଷ୍ଠ ଭିତ୍ତିଭୂମି ପ୍ରସ୍ତୁତ କରିପାରିବ ।

କୃଷି ଓ ସମବାୟ ମନ୍ତ୍ରୀ

ଆମର ସବୁଠାରୁ ବଡ ବଡ଼ ସଂପଦ ହେଲ ଜନଶକ୍ତି । ବ୍ୟକ୍ତି ଓ ପରିବାର ଯେପରି ସେମାନଙ୍କର ଅନ୍ତର୍ନିହିତ ଶକ୍ତିର ପୂର୍ଣ୍ଣ ଉପଲବ୍ଧି କରି ପାରିବେ ସେଥିପାଇଁ ଆମକୁ କାର୍ଯ୍ୟକରିବାକୁ ହେବ । ଏଥିଲାଗି ପରିବାର ନିୟୋଜନ, ପୁଷ୍ଟି କାର୍ଯ୍ୟକ୍ରମ, ମହିଳା ଓ ଶିଶୁ କଲ୍ୟାଣ, ରୋଗ ନିୟନ୍ତ୍ରଣ, ପ୍ରାଥମିକ ଓ ପ୍ରୌଢ଼ ଶିକ୍ଷାର ପ୍ରସାର, କ୍ରୀଡ଼ା ଓ ଉତ୍ତମ ଯୋଗାଯୋଗ କାର୍ଯ୍ୟକ୍ରମ ଉପରେ ଆମେ ଗୁରୁତ୍ବ ଦେବୁ ।

**ଶ୍ରୀ ରାଜୀବ ଗାନ୍ଧୀ**

# ପ୍ରାକୃତିକ ମରୁଡ଼ି ପରିସ୍ଥିତି ଓ ତା'ର ପ୍ରତିକାର

ଶ୍ରୀ କେ. ଶ୍ରୀନିବାସନ୍

ବନ୍ୟା, ବାତ୍ୟା ତଥା ମରୁଡ଼ି ଓଡ଼ିଶାବାସୀଙ୍କର ଚିର ସହଚର । ପ୍ରତିବର୍ଷ କିଛି ନା କିଛି ଦୈବୀଦୁର୍ବିପାକ ଆମ ରାଜ୍ୟରେ ସଙ୍ଘଟିତ ହୋଇ ବହୁଳ ଧନଜୀବନ ତଥା ସାଧାରଣ ସଂପତ୍ତିର ବ୍ୟାପକ କ୍ଷୟ ସାଧନ କରିବା ସଙ୍ଗେ ସଙ୍ଗେ ଖରିଫ୍ ଫସଲର ପ୍ରଭୂତ କ୍ଷତି ସାଧନ କରିଥାଏ । ବନ୍ୟା ଓ ବାତ୍ୟା ପ୍ରକୋପଠାରୁ ମରୁଡ଼ିର ପ୍ରକୋପ ସଂପୂର୍ଣ୍ଣରୂପେ ଭିନ୍ନ । କାରଣ ଏହା ଆକସ୍ମିକରୂପେ ସଙ୍ଘଟିତ ନ ହୋଇ ଦୀର୍ଘଦିନର ବୃଷ୍ଟିହୀନତା ତଥା ବୃଷ୍ଟିପାତର ସ୍ୱଳ୍ପତା ଓ ଅନୀୟମିତତା ହେତୁ ଧୀରେ ଧୀରେ ନିଜର ପ୍ରଭାବକୁ ବିସ୍ତାର କରି ଖରିଫ ଫସଲକୁ ନଷ୍ଟ କରିଥାଏ ଏବଂ ଏହାଦ୍ୱାରା ସ୍ୱଷୀଜୀବନର ମାନଦଣ୍ଡକୁ ଭାଙ୍ଗିଦେବା ସଙ୍ଗେ ସଙ୍ଗେ ରାଜ୍ୟର ଅର୍ଥନୀତି ଉପରେ କୁପ୍ରଭାବ ପକାଇଥାଏ । ଚଳିତ ଜୁନ୍, ଜୁଲାଇ, ଅଗଷ୍ଟ ଓ ସେପ୍ଟେମ୍ବର ମାସରେ ବୃଷ୍ଟିହୀନତା ତଥା ଅନୀୟମିତ ବୃଷ୍ଟିପାତ ହେତୁ ରାଜ୍ୟର ବ୍ୟାପକ ଅଞ୍ଚଳରେ ଫସଲ ହାନୀ ଘଟିଛି । ବିଶେଷକରି କୋରାପୁଟ, କଳାହାଣ୍ଡି, ବଲାଙ୍ଗୀର, ଫୁଲବାଣୀ ଓ ଗଞ୍ଜାମ ଜିଲ୍ଲାରେ ଉକ୍ତ ଅବସ୍ଥା ସୃଷ୍ଟି ହୋଇଛି । ଉକ୍ତ ଚାରିମାସରେ ରାଜ୍ୟରେ ମାସଓ୍ୱାରି ହାରାହାରି ବୃଷ୍ଟିପାତ ତୁଳନାରେ ପ୍ରକୃତ ବୃଷ୍ଟିପାତର ପରିମାଣ ତଳଲିଖିତ ବିବରଣୀରୁ ଜଣାଯିବ—

| ମାସର ନାମ | ମାସିକ ହାରାହାରି ବୃଷ୍ଟିପାତର ପରିମାଣ (ମିଲିମିଟର) | ପ୍ରକୃତ ବୃଷ୍ଟିପାତର ପରିମାଣ (ମିଲିମିଟର) |
|---|---|---|
| ଜୁନ | ୨୧୩'୨ | ୧୦୫'୪ |
| ଜୁଲାଇ | ୩୫୧'୬ | ୩୩୦'୪ |
| ଅଗଷ୍ଟ | ୩୩୫'୬ | ୧୫୧'୬ |
| ସେପ୍ଟେମ୍ବର | ୨୩୬'୫ | ୧୪୩'୫ |

ଆମ ରାଜ୍ୟରେ ମରୁଡ଼ି ପରିସ୍ଥିତିର ଆଶଙ୍କା ଦେଖାଦେବା ସଙ୍ଗେ ସଙ୍ଗେ ରାଜ୍ୟ ସରକାର ଫସଲ କ୍ଷୟକ୍ଷତିର ଦ୍ରୁତ ସମୀକ୍ଷା କରି ଅଗଷ୍ଟମାସ ୩ ତାରିଖରେ କେନ୍ଦ୍ର ସରକାରଙ୍କର ନିକଟରେ ୬୦'୫୩ କୋଟି ଟଙ୍କାର ଏକ ସ୍ମାରକପତ୍ର ଉପସ୍ଥାପନ କରି ତୁରନ୍ତ କେନ୍ଦ୍ରୀୟ ସାହାଯ୍ୟ ଲୋଡ଼ିଲେ ଏବଂ ଏହା ପରେ ପରେ ଅଗଷ୍ଟ ମାସ ୧୧ ଓ ୧୨ ତାରିଖରେ ଜିଲ୍ଲାପାଳମାନଙ୍କ ସମ୍ମିଳନୀ ଡକାଯାଇ ମରୁଡ଼ିର ସମୀକ୍ଷା କରିବା ସଙ୍ଗେ ସଙ୍ଗେ ଫସଲକୁ ସବୁମତେ ରକ୍ଷା କରିବା ପାଇଁ ବିଭିନ୍ନ ଦ୍ରୁତ ପଦକ୍ଷେପମାନ ଗ୍ରହଣ କଲେ ଏବଂ ଜିଲ୍ଲାପାଳମାନଙ୍କର ସର୍ଭିଜନୀର ସମୀକ୍ଷା କୁ ଭିତ୍ତିକରି ୧୫୫'୪୬ କୋଟି ଟଙ୍କାର ଅତିରିକ୍ତ ସ୍ମାରକପତ୍ର କେନ୍ଦ୍ରସରକାରଙ୍କ ନିକଟରେ ଦାଖଲ କଲେ ।

କେନ୍ଦ୍ର ସରକାର ମରୁଡ଼ିର ପ୍ରକୃତ ଚିତ୍ର ପାଇବା ପାଇଁ ଏକ କେନ୍ଦ୍ରୀୟ ଅନୁଧ୍ୟାନକାରୀ ଦଳ ଆମ ରାଜ୍ୟକୁ ପଠାଇଲେ । ସେମାନଙ୍କର ସୁପାରିଶକୁ ଭିତ୍ତିକରି କେନ୍ଦ୍ର ସରକାର ୩୯'୬୫ କୋଟି ଟଙ୍କା ମଞ୍ଜୁର କଲେ । ଏହାପରେ କେନ୍ଦ୍ର କୃଷି ମନ୍ତ୍ରଣାଳୟ ରବି ଋତୁରେ ପନିପରିବା "ମିନିକିଟ୍" ବଣ୍ଟନ ପାଇଁ ୬ ଲକ୍ଷ ଟଙ୍କା ମଞ୍ଜୁର କରିଛନ୍ତି । ଏହାବ୍ୟତୀତ ଯୋଜନା କମିଶନଙ୍କ ସୁପାରିଶ ଅନୁସାରେ କେନ୍ଦ୍ର ସରକାର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ଥିବା ବୃହତ, ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ଯୋଜନାଗୁଡ଼ିକ ମରାମତି ଓ ସଂପ୍ରସାରଣ ପାଇଁ ଆଉ ଅଧିକ ୧୧ କୋଟି ଟଙ୍କା ମଞ୍ଜୁର କରିଛନ୍ତି । ଅର୍ଥାତ୍ ସର୍ବମୋଟ କେନ୍ଦ୍ର ସରକାରଙ୍କଠାରୁ ୫୦'୮୧ କୋଟି ଟଙ୍କା ସାହାଯ୍ୟ ମିଳିଛି । ଏହାବ୍ୟତୀତ ମରୁଡ଼ି ପରିସ୍ଥିତିର ମୁକାବିଲା କରିବାପାଇଁ ରାଜ୍ୟ ସରକାର ପ୍ରତିବର୍ଷ ବଜେଟ୍‌ରେ ୧୩'୧୨୫ କୋଟି ଟଙ୍କାର ବ୍ୟବସ୍ଥା କରିଥାନ୍ତି ଏବଂ ସେହି ପରିମାଣ ଅର୍ଥ ମଧ୍ୟ ବଜେଟରେ ରଖାଯାଇଥାଏ, ଯାହାକୁ କି ଭାରତ ସରକାରଙ୍କ ଅନୁମତି ନେବା ପରେ ଖର୍ଚ୍ଚ କରାଯାଇଥାଏ । ଏହିପରି ୨୬'୨୫ କୋଟି ଟଙ୍କା ପ୍ରତିବର୍ଷ ବଜେଟ୍‌ରେ ଅଣଯୋଜନା ବ୍ୟୟ ବାବଦକୁ ରଖାଯାଇଥାଏ । ଏହାକୁ ସାଧାରଣତଃ

ମାରଜିନ ମନି ବୋଲି କୁହାଯାଇଥାଏ । ଚଳିତ ମରୁଡ଼ି ପରିସ୍ଥିତିର ମୁକାବିଲା କରିବା ପାଇଁ ବିଭିନ୍ନ ଦିଗଗମାନଙ୍କ ଜରିଆରେ ରାଜ୍ୟ ସରକାର ଯୁଦ୍ଧକାଳୀନ ଭିତ୍ତିରେ ନିମ୍ନଲିଖିତ ପଦକ୍ଷେପମାନ ଗ୍ରହଣ କରିଅଛନ୍ତି ।

(୧) ମୁଖ୍ୟମନ୍ତ୍ରୀ ମହୋଦୟଙ୍କ ସଭାପତିତ୍ୱରେ ବିଭିନ୍ନ ବିଭାଗର ମନ୍ତ୍ରୀ ତଥା ବିଭାଗୀୟ ସଚିବମାନଙ୍କୁ ନେଇ ଏକ କ୍ୟାବିନେଟ୍ ସବ୍‌କମିଟି ଗଠନ କରାଯାଇଅଛି । ଏହି ସବ୍‌କମିଟି ବର୍ତ୍ତମାନ ସୁଦ୍ଧା ଏକାଧିକବାର ବସି କାର୍ଯ୍ୟକ୍ରମଗୁଡ଼ିକର ସମୀକ୍ଷା କରିବା ସଙ୍ଗେ ସଙ୍ଗେ ଉପୁଜୁଥିବା ସମସ୍ୟାମାନଙ୍କର ସମାଧାନ ଉଦ୍ଦେଶ୍ୟରେ ନିର୍ଦ୍ଦେଶମାନ ଦେଉଅଛନ୍ତି ।

(୨) ମୁଖ୍ୟ ଶାସନ ସଚିବଙ୍କ ଅଧ୍ୟକ୍ଷତାରେ ବିଭିନ୍ନ ବିଭାଗର ସଚିବମାନଙ୍କୁ ନେଇ ଏକ ଟାସ୍କଫୋର୍ସ କମିଟି ଗଠନ କରାଯାଇଅଛି ଏବଂ ଏହି କମିଟି ମଧ୍ୟ ଇତିମଧ୍ୟରେ ଏକାଧିକବାର ବସି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିମାନ ଗ୍ରହଣ କରିଅଛନ୍ତି ।

(୩) ରାଜସ୍ୱ ବିଭାଗରେ ମରୁଡ଼ିଜନିତ ପରିସ୍ଥିତିର ଦୈନିକ ଖବର ସଂଗ୍ରହ କରିବା ଉଦ୍ଦେଶ୍ୟରେ ଗୋଟିଏ ୨୪ ଘଣ୍ଟିଆ କଣ୍ଟ୍ରୋଲ୍‌ରୁମ୍ ଖୋଲାଯାଇଅଛି ।

(୪) ଫସଲର ଜଳସେଚନ ସକାଶେ ଆଡ଼ିବନ୍ଧମାନ ନିର୍ମାଣ କରିବାପାଇଁ ରାଜ୍ୟ ସରକାର ୨୬ ଲକ୍ଷ ଟଙ୍କା ଯୋଗାଇ ଦେଇଛନ୍ତି ।

(୫) ପ୍ରାଥମିକ ପର୍ଯ୍ୟାୟରେ ଅକାମି ହୋଇ ପଡ଼ିଥିବା ଉଠା ଜଳସେଚନ ପଏଣ୍ଟଗୁଡ଼ିକ ତୁରନ୍ତ ମରାମତି କରି ଚାଷ ଜମିକୁ ଜଳ ଯୋଗାଇବା ସକାଶେ ଉଠା ଜଳସେଚନ ବିଭାଗକୁ ୨'୮୦ କୋଟି ଟଙ୍କା ଦିଆଯାଇଛି । ଏତଦ୍‌ବ୍ୟତୀତ ଉଠା ଜଳସେଚନ ଜଳକର ବାବଦକୁ ଚାଷୀମାନଙ୍କ ପାଇଁ ସରକାର ଶତକଡ଼ା ୫୦'୭ ରିହାତି ଘୋଷଣା କରିଅଛନ୍ତି ।

(୬) ଖରିଫ୍ ଫସଲ କ୍ଷତିର ଆଂଶିକ ଭରଣା ଉଦ୍ଦେଶ୍ୟରେ ମରୁଡ଼ିଗ୍ରସ୍ତ ଅଞ୍ଚଳର କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କ ମଧ୍ୟରେ ଡାଲି ଜାତୀୟ ବିହନ ଓ ବୀଜର ୨ ଲକ୍ଷ ମଞ୍ଜି ଓ ସାର ପୁଡ଼ିଆ (ମିନିକିଟ୍) ଇତି ମଧ୍ୟରେ ବଣ୍ଟନ କରାଯାଇଅଛି । ଏବାବଦରେ ରାଜ୍ୟ ସରକାରଙ୍କୁ ପ୍ରାୟ ୨ କୋଟି ଟଙ୍କା ଖର୍ଚ୍ଚ କରିବାକୁ ପଡ଼ୁଛି ।

(୭) ରାଜ୍ୟର କେତେକ ଅଞ୍ଚଳରେ ବର୍ଷାଭାବ ଜନିତ ପାନୀୟ ଜଳର ଅଭାବ ମେଣ୍ଟାଇବା ପାଇଁ ନଳକୂପ ଖନନ ଓ ମରାମତି ଉଦ୍ଦେଶ୍ୟରେ ୬୦'୪୦ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଅଛି । ଏହି ବାବଦରେ କେନ୍ଦ୍ର ସରକାର ମଧ୍ୟ ରାଜ୍ୟ ସରକାରଙ୍କୁ ୪'୨୮ କୋଟି ଟଙ୍କା ଚଳିତ ବର୍ଷ ଖର୍ଚ୍ଚ କରିବାକୁ ମଞ୍ଜୁର କରିଛନ୍ତି ।

(୮) ଚଳିତ ଖରିଫ୍ ଋତୁରେ ସେବା ସମବାୟ ସମିତିମାନଙ୍କ ମାଧ୍ୟମରେ ଚାଷକାର୍ଯ୍ୟ ପାଇଁ ସ୍ୱଳ୍ପମିଆଦୀ ଋଣ ପରିଶୋଧର ସମୟ ବଢ଼ାଇବା ଉଦ୍ଦେଶ୍ୟରେ କେନ୍ଦ୍ର ସରକାର ୨୨୫ ଲକ୍ଷ ଟଙ୍କା ମଞ୍ଜୁର କରିଅଛନ୍ତି । ଏହାଦ୍ୱାରା ଋଣ ଗ୍ରହୀତାମାନେ ଆସନ୍ତା ଖରିଫ୍ ଋତୁରେ ମଧ୍ୟ ଋଣ ପାଇବାକୁ ଯୋଗ୍ୟ ବିବେଚିତ ହୋଇ ପାରିବେ ।

(୯) ମରୁଡ଼ିଗ୍ରସ୍ତ ଅଞ୍ଚଳର ଅସହାୟ, ବୃଦ୍ଧବ୍ୟକ୍ତି, ଦୁର୍ବଳ, ଅକର୍ମଣ୍ୟ ତଥା ଗର୍ଭବତୀ ଓ ପ୍ରସୂତି ମହିଳା ଓ ୬ ବର୍ଷ ବୟସ ପର୍ଯ୍ୟନ୍ତ ଶିଶୁମାନଙ୍କୁ ମାଗଣା ଖାଦ୍ୟ ଯୋଗାଇବା ପାଇଁ ରାଜ୍ୟ ସରକାର ଅଦ୍ୟାବଧି ୨୪୪ ଲକ୍ଷ ଟଙ୍କା ଖର୍ଚ୍ଚ କରି ସାରିଲେଣି । ଏହାଦ୍ୱାରା ରାଜ୍ୟରେ ୨୪୫,୦୦୦ ଲୋକ ଉପକୃତ ହେଉଅଛନ୍ତି । ଏତଦ୍‌ବ୍ୟତୀତ ଭାରତ ସରକାର ଆଉ ୨ କୋଟି ଟଙ୍କା ଏବାବଦରେ ଖର୍ଚ୍ଚ କରିବାପାଇଁ ମଞ୍ଜୁର କରିଅଛନ୍ତି ଏବଂ ଏହି ଟଙ୍କାରେ ଅଧିକ ୨'୩୫ ଲକ୍ଷ ଲୋକଙ୍କୁ ଆସନ୍ତା ମାର୍ଚ୍ଚ ଶେଷପର୍ଯ୍ୟନ୍ତ ମାଗଣା ଭୋଜନ କେନ୍ଦ୍ର ଜରିଆରେ ଭୋଜନ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।

(୧୦) ଉତ୍କଟ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ବିଭିନ୍ନ ସଂକ୍ରାମକ ରୋଗର ମୁକାବିଲା କରିବା ପାଇଁ ରାଜ୍ୟ ସରକାର ଦୁର୍ଗମ ଅଞ୍ଚଳରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ କେନ୍ଦ୍ର ଓ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରମାନଙ୍କରେ ଜୀବନରକ୍ଷାକାରୀ ଔଷଧମାନ ଯୋଗାଇ ଦେଇଛନ୍ତି ଏବଂ ଏବାବଦରେ ୧୭'୭୨ ଲକ୍ଷ ଟଙ୍କା ଖର୍ଚ୍ଚ କରାଯିବାର ବ୍ୟବସ୍ଥା କରାଯାଇଛି ।

(୧୧) ସୁଲଭ ମୂଲ୍ୟରେ ଗୋଖାଦ୍ୟ ଯୋଗାଇବାପାଇଁ ଉତ୍କଟ ମରୁଡ଼ି ଅଞ୍ଚଳରେ ଘାସ ଚାଷ କରିବା ଉଦ୍ଦେଶ୍ୟରେ ୧'୪୦ ଲକ୍ଷ ଟଙ୍କା ବ୍ୟବସ୍ଥା କରାଯାଇଅଛି ।

(୧୨) ଶ୍ରମ ଭିତ୍ତିକ କାର୍ଯ୍ୟକ୍ରମ—ମରୁଡ଼ିର ଦୃଢ଼ ମୁକାବିଲା କରିବା ଉଦ୍ଦେଶ୍ୟରେ ଅଗଷ୍ଟ ସୁଦ୍ଧା ଦିଆଯାଇଥିବା କେନ୍ଦ୍ରୀୟ ସାହାଯ୍ୟ ୫୦ କୋଟି ୮୧ ଲକ୍ଷ ଟଙ୍କା ମଧ୍ୟରୁ ୩୮ କୋଟି ଟଙ୍କା ଶ୍ରମଭିତ୍ତିକ କାର୍ଯ୍ୟମାନ ପାଇଁ ଉଦ୍ଦିଷ୍ଟ । ଏହି ଅର୍ଥ ବୃହତ, କ୍ଷୁଦ୍ର ଓ ମଧ୍ୟମ ଜଳସେଚନ ଯୋଜନାର ମରାମତି ଓ ସଂପ୍ରସାରଣ, ଜଳ ଅମଳ ପ୍ରକଳ୍ପଗୁଡ଼ିକର ଖନନ ତଥା ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତମାନଙ୍କର ପୁଷ୍କରିଣୀମାନଙ୍କର ପୁନରୁଦ୍ଧାର କାର୍ଯ୍ୟରେ ବିନିଯୋଗ କରଯାଇ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଲକ୍ଷାଧିକ ଶ୍ରମ ଦିବସ ସୃଷ୍ଟି କରାଯିବ । ପ୍ରତ୍ୟେକ ଶ୍ରମିକଙ୍କୁ ଦୈନିକ ମଜୁରୀ ବାବଦରେ ଏକ କିଲୋଗ୍ରାମ ଚାଉଳ, ଏକ କିଲୋଗ୍ରାମ ଗହମ ନିର୍ଦ୍ଦିଷ୍ଟ ଦରରେ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ଅବଶିଷ୍ଟ ମଜୁରୀକୁ ଅର୍ଥାକାରରେ ଦିଆଯାଇଅଛି ।

(୧୩) ସାଧାରଣ ବଣ୍ଟନ ବ୍ୟବସ୍ଥା—ଅତ୍ୟାବଶ୍ୟକ ଖାଉଟି ଦ୍ରବ୍ୟର ମୂଲ୍ୟବୃଦ୍ଧି ରୋକିବା ନିମନ୍ତେ ସରକାରୀ ଖୁଚୁରା ଦୋକାନ ସାହାଯ୍ୟରେ ଆବଶ୍ୟକ ପରିମାଣରେ ଚାଉଳ, ଗହମ, ଖାଇବା ତେଲ, କିରୋସିନି ଇତ୍ୟାଦି ଯୋଗାଇ ଦିଆଯିବାର ବ୍ୟବସ୍ଥା କରାଯାଇଅଛି । ଏତଦ୍‌ବ୍ୟତୀତ ଆଦିବାସୀ ଅଞ୍ଚଳର ହାଟମାନଙ୍କରେ ସରକାର ଭ୍ରାମ୍ୟମାଣ ବିକ୍ରୟ କେନ୍ଦ୍ର ଖୋଲଇ ସୁଲଭ ମୂଲ୍ୟରେ ଉପରୋକ୍ତ ଜିନିଷମାନ ଯୋଗାଇ ଦେଉଅଛନ୍ତି । ଏହି ବ୍ୟବସ୍ଥା ବିଶେଷକରି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଅତି ଜନପ୍ରିୟ ହୋଇ ପାରିଛି ।

(୧୪) ମରୁଡ଼ି ଅବସ୍ଥା ପର୍ଯ୍ୟବେକ୍ଷଣ କରିବା ପାଇଁ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଓଡ଼ିଶାର ଗଞ୍ଜାମ, କୋରାପୁଟ ଓ କଳାହାଣ୍ଡି ଜିଲ୍ଲାମାନ ଗସ୍ତକରି ଉଚ୍ଚସ୍ତରୀୟ ବୈଠକରେ

ମରୁଡ଼ିର ପ୍ରତିକାର ସମ୍ବନ୍ଧରେ ଫଳପ୍ରଦ ଆଲୋଚନା କରିଥିଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ, ରାଜସ୍ୱ ମନ୍ତ୍ରୀ ଏବଂ ଅନ୍ୟାନ୍ୟ ବିଭାଗୀୟ ମନ୍ତ୍ରୀବୃନ୍ଦ ମରୁଡ଼ି ଅଞ୍ଚଳ ଗସ୍ତକରି ତାର ମୁକାବିଲା କରିବାପାଇଁ ବିଭାଗୀୟ କର୍ମକର୍ତ୍ତାଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

(୧୫) ମରୁଡ଼ିଗ୍ରସ୍ତ ଅଞ୍ଚଳରେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରି ସରକାରଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ରାଜ୍ୟ ଭିତର ତଥା ବାହାରର ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ତଥା କେତେକ ଶିଳ୍ପପତିମାନଙ୍କର ଏକ ବୈଠକ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଅକ୍‌ଟୋବର ମାସ ୨୯ ତାରିଖରେ ଅନୁଷ୍ଠିତ ହୋଇ ଅନେକଗୁଡ଼ିଏ ନିଷ୍ପତ୍ତି ଗ୍ରହଣ କରାଯାଇଅଛି । ଏହାଫଳରେ ମାଗଣାରେ ଖାଦ୍ୟ ବଣ୍ଟନ, ନଳକୂପ ଖନନ ଏବଂ ଶ୍ରମଭିତ୍ତିକ କାର୍ଯ୍ୟକ୍ରମମାନଙ୍କ ଜରିଆରେ ଲୋକମାନଙ୍କୁ କର୍ମଯୋଗାଣ ତଥା ଅନ୍ୟାନ୍ୟ ବିଷୟରେ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନେଇଅଛନ୍ତି । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଉପରୋକ୍ତ କାର୍ଯ୍ୟକ୍ରମଗୁଡ଼ିକରେ ପ୍ରାୟ ୩ କୋଟି ଟଙ୍କା ବ୍ୟୟ କରିବାର ପ୍ରସ୍ତାବ ହୋଇଅଛି ।

ଫସଲ କ୍ଷତିର ପ୍ରକୃତ ଚିତ୍ର ପାଇବା ପାଇଁ ରାଜ୍ୟ ସରକାର ରାଜସ୍ୱ ବିଭାଗର କ୍ଷେତ୍ର କର୍ମଚାରୀମାନଙ୍କ ଦ୍ୱାରା ଫସଲ କଟାଇ କ୍ଷୟକ୍ଷତିର ବିବରଣୀ ସଂଗ୍ରହ କରୁଅଛନ୍ତି । ସଠିକ ବିବରଣୀ ସଂଗ୍ରହ କରିବାପାଇଁ ତହସିଲଦାର, ଏସ୍. ଡି. ଓ., ଏ. ଡି. ଏମ.ମାନଙ୍କୁ ଦାୟିତ୍ୱ ଦିଆଯାଇଅଛି । ଏହି ରିପୋର୍ଟ ପାଇବାପରେ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଆହୁରି ବିଭିନ୍ନ ପ୍ରକାର କାର୍ଯ୍ୟକ୍ରମ ଅଧିକଭାବେ ଚାଲୁରହିବ ।

ବର୍ତ୍ତମାନ ମରୁଡ଼ି ପରିସ୍ଥିତି ବ୍ୟାପକ ଓ ତୀବ୍ରତର ହେଲେ ମଧ୍ୟ ଆତଙ୍କିତ ହେବାର କାରଣ ନାହିଁ । ଚଳିତ ଖରିଫ ଫସଲକୁ ସବୁମତେ ରକ୍ଷା କରିବା ସଙ୍ଗେ ସଙ୍ଗେ ରବି କାର୍ଯ୍ୟକ୍ରମ ସଫଳ ରୂପାୟନ ଦିଗରେ ରାଜ୍ୟ ସରକାର ବିହିତ ପଦକ୍ଷେପମାନ ନେଇଅଛନ୍ତି । ଚଳିତ ରବି କାର୍ଯ୍ୟକ୍ରମର ସଫଳ ରୂପାୟନ ଉଦ୍ୟମରେ କୃଷୀଭାଇମାନଙ୍କ ମଧ୍ୟରେ ଦେଖାଦେଇଥିବା ଉତ୍ସାହ ଓ ଉଦ୍ଦିପନା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ଏହିଥିରୁ ପ୍ରମାଣିତ ହୁଏ ଯେ କୃଷକ ଭାଇମାନେ ନିରୁତ୍ସାହିତ ନ ହୋଇ ମରୁଡ଼ି ପରିସ୍ଥିତିର ଦୃଢ଼ ମୁକାବିଲା କରିବା ପାଇଁ ଆଗେଇ ଆସୁଅଛନ୍ତି ।

ଏହାହିଁ ଆମ ପକ୍ଷରେ ଏକ ଶୁଭ ସୂଚନା ।

ସ୍ୱତନ୍ତ୍ର ରିଲିଫ୍ କମିଶନର, ଓଡ଼ିଶା ।

ତିନୋଟି ଜାତିର ମିଳନ ବା ତ୍ରିବେଣୀ ସଙ୍ଗମରେ ଓଡ଼ିଆ ଜାତିର ସୃଷ୍ଟି । ଆଦିବାସୀ ବା ନିଷାଦ, ଦ୍ରାବିଡ଼ ବା ଦ୍ରମିଡ଼ ଏବଂ ଆର୍ଯ୍ୟ । ଓଡ଼ିଆ ଭାଷାରେ ବହୁ ଦ୍ରାବିଡ଼ ଓ ଆଦିବାସୀ ଶବ୍ଦ ମିଶି ଯାଇଛି । ଓଡ଼ିଆ ଲିପି ମଧ୍ୟ ଆର୍ଯ୍ୟ (ତଳପୁଡ଼ା) ଓ ଦ୍ରାବିଡ଼ (ଉପର ମୁଣ୍ଡା)ର ସମନ୍ୱୟର ପରିଚୟ ଦିଏ । ଓଡ଼ିଶାର ରାଜବଂଶ ମହାମେଘବାହନଙ୍କ ଠାରୁ ପର୍ଯ୍ୟନ୍ତ ବହୁ ଦ୍ରାବିଡ଼ ରାଜାମାନଙ୍କୁ ନେଇ ସୃଷ୍ଟି । ଅଧ୍ୟାପକ ସୁନୀତି କୁମାର ଚଟ୍ଟୋପାଧ୍ୟାୟଙ୍କ ମତରେ ଖାରବେଳ ଏକ ଦ୍ରାବିଡ଼ ଶବ୍ଦ । (କେରବେଳ ବା କୃଷ୍ଣବର୍ଣ୍ଣ ।) ଖାରବେଳଙ୍କ ବହୁପରେ ଗଙ୍ଗ ବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ଦାକ୍ଷିଣାତ୍ୟରୁ ଆସିଥିଲେ । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କୁ ତେଲେଙ୍ଗା ମୁକୁନ୍ଦ ଦେବ ବୋଲି କୁହାଯାଏ । କେବଳ ରାଜା ବା ରାଜବଂଶୀୟ ନୁହନ୍ତି, ସାଧାରଣ ଜନତାଙ୍କ ମଧ୍ୟରେ ଏହି ସମନ୍ୱୟ ସାଧିତ ହୋଇଛି । ଯେଉଁ ବୀର ପାଇକମାନେ କପିଳେନ୍ଦ୍ରଙ୍କ ଦିଗ୍‌ବିଜୟର ସୈନିକ ଥିଲେ, ସେମାନଙ୍କ ମଧ୍ୟରୁ ଅନେକେ ଦାକ୍ଷିଣାତ୍ୟରୁ ଆସିଥିଲେ । ଓଡ଼ିଶାର ତଥାକଥିତ ଉଚ୍ଚବର୍ଣ୍ଣର ବ୍ୟକ୍ତିମାନଙ୍କର ବହୁ ପୂର୍ବ ପୁରୁଷ କାନ୍ୟକୁବ୍‌ଜରୁ ଆସିଥିଲେ । କେବଳ ଏତିକି ନୁହେଁ, ଓଡ଼ିଶାର ନୃତ୍ୟ, ସଙ୍ଗୀତ, ଭାସ୍କର୍ଯ୍ୟ, ଚିତ୍ରକଳା ସବୁ ନିଷାଦ, ଦ୍ରାବିଡ଼ ଓ ଆର୍ଯ୍ୟର ସମନ୍ୱୟରେ ଗଠିତ । ଓଡ଼ିଶାର ଇଷ୍ଟଦେବ ଶ୍ରୀ ଜଗନ୍ନାଥ ହେଉଛନ୍ତି ଏହି ସମନ୍ୱୟର ସର୍ବଶ୍ରେଷ୍ଠ ପ୍ରତୀକ । ସମସ୍ତ ଧର୍ମ ଓ ସଂସ୍କୃତିର ମିଳନ ଯେପରି ତାଙ୍କଠିଠାରେ ହିଁ ଘଟିଛି ।

———— ଜାନକୀ ବଲ୍ଲଭ ପଟ୍ଟନାୟକ

# ମରୁଡ଼ିର ପ୍ରତିକ୍ରିୟା

ଡକ୍ଟର ବୈଦ୍ୟନାଥ ମିଶ୍ର

ଓଡ଼ିଶାରେ ମରୁଡ଼ି କି ବନ୍ୟା କିଛି ନୂଆ କଥା ନୁହେଁ । ପ୍ରତି ତିନି ଚାରିବର୍ଷରେ ଥରେ ମରୁଡ଼ି କି ବନ୍ୟା ହେଉଛି ଯାହା ଫଳରେ ଚାଷୀକୁଳ ସର୍ବସ୍ୱାନ୍ତ ହେଉଛନ୍ତି । ପଞ୍ଜାବ ପରି ଓଡ଼ିଶାରେ ଜଳସେଚନର ସୁବିଧା ନାହିଁ । ସେଠାରେ ଶତକଡା ୮୦ ଭାଗ ଚାଷ ଜମିରେ ଜଳସେଚନର ସୁବିଧା ଅଛି । ଓଡ଼ିଶାରେ ମୋଟେ ଶତକଡା ୨୫/୨୬ ଭାଗ ଚାଷ ଜମିରେ ଜଳସେଚନର ସୁବିଧା ଅଛି । ପୁଣି ଓଡ଼ିଶାରେ ରବିଚାଷ ପାଇଁ ବେଶି ଜଳସେଚନର ସୁବିଧା ନାହିଁ । ରବିଚାଷ ପାଇଁ ମୋଟେ ୭/୮ ଭାଗ । ଖରିଫ ଚାଷ ପାଇଁ ୨୩/୨୪ ଭାଗ । ଓଡ଼ିଶାର ପ୍ରଧାନ ଫସଲ ହେଉଛି ଧାନ । ଓଡ଼ିଶାରେ ଯେତେ ଧାନଚାଷ ହୁଏ, ତାର ଶତକଡା ୯୦ ଭାଗ ଖରିଫରେ ଚାଷ କରାଯାଏ, ବାକୀ ମୋଟେ ୧୦ ଭାଗ ରବିରେ ଚାଷ କରାଯାଏ । ତେଣୁ ମରୁଡ଼ି ହେଲେ ସେଥିରୁ ରକ୍ଷା ପାଇବା ଭାରୀ କଷ୍ଟ । ବନ୍ୟା ହେଲେ ବନ୍ୟାପରେ ରବି ସମୟରେ ଅନ୍ତତଃ କିଛି ଅର୍ଥକରୀ ଫସଲ ଆଦାୟ କରି ହେବ । ମରୁଡ଼ି ହେଲେ ରବିରେ କୌଣସି ଫସଲ ଆଦାୟ କରିବା ସହଜ ନୁହେଁ ।

ଓଡ଼ିଶାରେ ଏ ବର୍ଷ ଯେଉଁ ମରୁଡ଼ି ହୋଇଛି, ତାହା ଅତି ଭୟାବହ । କେତେକ ଜାଗାରେ ଶତକଡା ୬୫/୭୦ ଭାଗ ଫସଲ ନଷ୍ଟ ହୋଇଛି । କେଉଁଠି ୫୦ ଭାଗ, କେଉଁଠି ୬୦ ଭାଗ, କେଉଁଠି ୭୦ ଭାଗ । ଅକ୍ଟୋବର ମାସରେ ଟିକିଏ ବର୍ଷା ହେବା ଯୋଗୁଁ କିଛି କିଛି ଫସଲ ବଞ୍ଚି ଯାଇଛି । ହୁଏତ ଏହା ରବିରୁ କେତେକ ପରିମାଣରେ ସାହାଯ୍ୟ କରିବ । ପୁଣି କେବଳ ଓଡ଼ିଶାରେ ମରୁଡ଼ି ହୋଇ ନାହିଁ । ସାରା ଭାରତରେ ମରୁଡ଼ି ହୋଇଛି । ଗୁଜରାଟ ଓ ରାଜସ୍ଥାନ ପ୍ରଭୃତି ରାଜ୍ୟରେ ତ ଅବସ୍ଥା ସାଂଘାତିକ । ସେଠାରେ ପିଇବାକୁ ପାଣି ମିଳୁ ନାହିଁ, ଚାଷ କଥା କିଏ ପଚାରୁଛି । ଅନେକ ଗୋରୁ ଗାଈ ସେଠାରେ ଖାଦ୍ୟ ଅଭାବରୁ ପ୍ରାଣ ହରାଇଲେଣି । ଜମିସବୁ ଫାଟି ଆଁ କରି ରହିଛି । ସାରା ଭାରତରେ ଯେଉଁ ମରୁଡ଼ି ହୋଇଛି, ତାହା ଫଳରେ ଖାଦ୍ୟଶସ୍ୟ ଶତକଡା ପ୍ରାୟ ୧୫ ଭାଗ କମ୍ ହେବ ବୋଲି ହିସାବ କରାଯାଉଛି । ଅର୍ଥାତ୍ ଆମର ସାଧାରଣତଃ ଖରିଫରେ ୬୦ ଭାଗ ଖାଦ୍ୟ ଉତ୍ପନ୍ନ କରାଯାଏ । ଏହାର ୧୫ ଭାଗ ଅର୍ଥ ଏହି ବର୍ଷ ମୋଟ ୧୮ ଠାରୁ ୨୦ ନିୟୁତ ଟନ ଖାଦ୍ୟ-ଶସ୍ୟ କମ୍ ହେବ । ତୈଳବୀଜ ଜିନିଷ ଶତକଡା ୩୦ ଭାଗ କମ୍ ହେବ ବୋଲି ହିସାବ କରାଯାଉଛି । ଓଡ଼ିଶାରେ ଠିକ୍ କେତେ ଖାଦ୍ୟଶସ୍ୟ କମ ହେବ ତାର ସଠିକ ହିସାବ ବାହାର କରିବା ସହଜ ନୁହେଁ । ତେବେ ଅନେକ କମ୍ ହେବ, ଏଥିରେ ସନ୍ଦେହ ନାହିଁ ।

ଅର୍ଥନୈତିକ କ୍ଷେତ୍ରରେ ସାରା ଭାରତରେ ମରୁଡ଼ିର ପ୍ରଭାବ ବିଷୟରେ ଅନେକ କଳ୍ପନା ଜଳ୍ପନା କରାଯାଉଛି । ପୃଥିବୀ ବ୍ୟାଙ୍କର କର୍ମକର୍ତ୍ତାମାନେ ଏବେ ହିସାବ କରି କହିଛନ୍ତି ଯେ ଚଳିତ ବର୍ଷ ଭାରତୀୟ ଜାତୀୟ ଆୟରେ କୌଣସି ଉନ୍ନତି ହେବ ନାହିଁ । ଗତ ୫/୬ ବର୍ଷ ଧରି କ୍ରମାଗତଭାବରେ ଭାରତର ଜାତୀୟ ଆୟ ଶତକଡା ୫ ହାରରେ ବୃଦ୍ଧି ପାଉଥିଲା । ଚଳିତବର୍ଷ ଶୂନ ହେବ ବୋଲି ପୃଥିବୀ ବ୍ୟାଙ୍କର ହିସାବ । ଓଡ଼ିଶାର ଜାତୀୟ ଆୟ ଗତ ୫/୬ ବର୍ଷ ଭିତରେ ଶତକଡା ପ୍ରାୟ ବାର୍ଷିକ ୬ ଭାଗରେ ବୃଦ୍ଧି ପାଇଛି । ଏ ବର୍ଷ ବହୁତ କମ୍ ହେବାର ସମ୍ଭାବନା । କାରଣ ଓଡ଼ିଶା ଅର୍ଥନୀତିରେ କୃଷିର ଭୂମିକା ବହୁତ ଗୁରୁତ୍ୱପୂର୍ଣ୍ଣ । ସାରା ଭାରତରେ ଜାତୀୟ ଆୟର ଶତକଡା ପ୍ରାୟ ୩୬ ଭାଗ କୃଷି ଓ ତାର ଆନୁସଙ୍ଗିକ କାର୍ଯ୍ୟକ୍ରମରୁ ସଂଗୃହୀତ ହୁଏ । ଓଡ଼ିଶାରେ ଏହାର ପରିମାଣ ବହୁତ ଅଧିକ—ଶତକଡା ପ୍ରାୟ ୬୦ ଭାଗ । ତେଣୁ ମରୁଡ଼ି ହେଲେ ଓଡ଼ିଶାର ଆୟରେ ବେଶି କ୍ଷତି ହେବ । ମରୁଡ଼ି ଯୋଗୁଁ ଅର୍ଥନୀତିରେ ନିମ୍ନଲିଖିତ ପ୍ରଭାବ ପଡ଼ିବାର ସମ୍ଭାବନା ।

(୧) ଭାରତର ରପ୍ତାନି କମିବ ଓ ଆମଦାନୀ ବଢ଼ିବ । ଗତ ୧୫ ବର୍ଷ ଧରି ଭାରତ ଖାଦ୍ୟଶସ୍ୟ ଆମଦାନୀ କରୁ ନଥିଲା । ସବୁଜ ବିପ୍ଳବ ପରେ ଖାଦ୍ୟଶସ୍ୟରେ ଭାରତ ଆତ୍ମନିର୍ଭରଶୀଳ ହୋଇଥିଲା ବୋଲି କୁହାଯାଉଥିଲା । ଏପରିକି ଭାରତ ମଧ୍ୟ କିଛି ଖାଦ୍ୟଶସ୍ୟ ବିଦେଶକୁ ବିକ୍ରୟ କରିବାକୁ ସୁଯୋଗ ପାଉଥିଲା । କିନ୍ତୁ ଏ ବର୍ଷ ସେ ଅବସ୍ଥା ନାହିଁ । ଅନେକ ତ ହିସାବ କରୁଛନ୍ତି ଏ ବର୍ଷ ଭାରତ ବିଦେଶରୁ ଖାଦ୍ୟଶସ୍ୟ ଖରିଦ କରିବାକୁ ବାଧ୍ୟ ହେବ । ଏହା ବ୍ୟତୀତ ତୈଳବୀଜ ଓ ଡାଲି ଜାତୀୟ ଦ୍ରବ୍ୟ (ଏହା ଖାଦ୍ୟଶସ୍ୟ ଭିତରେ ହିସାବ କରାଯାଏ) ମଧ୍ୟ ଆମଦାନୀ କରିବାକୁ ପଡ଼ିବ । ଭାରତରେ ବୈଦେଶିକ ମୁଦ୍ରାର ବହୁତ ଅଭାବ । ବୈଦେଶିକ ବାଣିଜ୍ୟରେ ଆମର ନିଅଣ୍ଟିଆ ଅବସ୍ଥା । ଏହି ମରୁଡ଼ି ଯୋଗୁଁ ନିଅଣ୍ଟିଆ ଅବସ୍ଥା ବୃଦ୍ଧି ହେବ । ଭାରତ ବାଧ୍ୟ ହୋଇ ବିଦେଶରୁ ଋଣ କରିବାକୁ ଚେଷ୍ଟା କରିବ ।

(୨) ଭାରତରେ ସଞ୍ଚିତ ଖାଦ୍ୟ ପାଣ୍ଠି ପ୍ରାୟ ୨୩/୨୪ ନିୟୁତ ଟନ ଅଛି । ଏହାରି ସାହାଯ୍ୟରେ କର୍ମ ନିଯୋଜନ ସୃଷ୍ଟି କରାଯାଉଛି । ଆର.ଏଲ୍.ଜି.ପି., ଏନ୍.ଆର୍.ଇ.ପି. ପ୍ରଭୃତି କାର୍ଯ୍ୟକ୍ରମ ପାଇଁ ଯେଉଁ ଖାଦ୍ୟ ସାହାଯ୍ୟ ବା ମଜୁରି ଦିଆଯାଉଛି, ତାହା ଏହି ଖାଦ୍ୟ ପାଣ୍ଠିରୁ ଦିଆଯାଉଛି । ଏଭଳି ମରୁଡ଼ି ସମୟରେ ସଞ୍ଚିତ ଖାଦ୍ୟ ପାଣ୍ଠି ଉପରେ ଅନେକ ଚାପ ପଡ଼ିବ । ତାକୁ ଖାଦ୍ୟ ପାଣ୍ଠି ତୁଲାଇ ପାରିବ କି ନାହିଁ

ସନ୍ଦେହ । ଏତିକି ସତ୍ୟ ଯେ ଏହି ଖାଦ୍ୟ ପାଣ୍ଠି ଯୋଗୁଁ ଦୁର୍ଭିକ୍ଷ ହେବ ନାହିଁ । କିନ୍ତୁ ଲୋକମାନେ ଅଭାବରୁ ମୁକ୍ତ ହୋଇ ପାରିବେ ନାହିଁ । ଗଚ୍ଛିତ ଖାଦ୍ୟ ପାଣ୍ଠି ଯେତିକି ଆତ୍ମ ବିଶ୍ୱାସ ସୃଷ୍ଟି କରୁଥିଲା, ସେତିକି ଆତ୍ମ ବିଶ୍ୱାସ ରହିବ ନାହିଁ ।

(୩) ମରୁଡ଼ି ଯୋଗୁଁ ମଫସଲ ଲୋକମାନଙ୍କର ଆୟ ହ୍ରାସ ହେବ । କୃଷି ଯେଉଁମାନଙ୍କର ଜୀବିକା, ସେମାନଙ୍କର ଫସଲ ନଷ୍ଟ ଯୋଗୁଁ ଆୟ କମ୍ ହେବ । କୃଷିରେ ଯେଉଁମାନେ କାମ କରି କିଛି ମଜୁରି ପାଉଛନ୍ତି, ସେମାନଙ୍କର ଆୟ ମଧ୍ୟ କମ୍ ହେବ । କାରଣ କୃଷିରେ ଯଥେଷ୍ଟ କାମ ମିଳିବ ନାହିଁ । ଏହା ଫଳରେ ଶିଳ୍ପଜାତ ଦ୍ରବ୍ୟ ପାଇଁ ଚାହିଦା କମ ହେବ । ଶିଳ୍ପର ଉନ୍ନତି ଚାହିଦା ଉପରେ ନିର୍ଭର କରେ । ଏହି ଚାହିଦା କମ୍ ହେଲେ ଶିଳ୍ପର ପ୍ରଗତି ହାର ମଧ୍ୟ କମ୍ ହେବ । ଏଥିରୁ ଦେଖାଯିବ ଯେ କୃଷି ଓ ଶିଳ୍ପ ଘନିଷ୍ଠ ଭାବରେ ସଂପୃକ୍ତ । କୃଷିର କ୍ଷତି ହେଲେ ଶିଳ୍ପର କ୍ଷତି ହୁଏ ଏବଂ ଶିଳ୍ପର କ୍ଷତି ହେଲେ କୃଷିର ମଧ୍ୟ କ୍ଷତି ହୁଏ ।

(୪) ସବୁଠାରୁ ବେଶି ଦୁଃଖର କଥା ଯେ ଏହି ମରୁଡ଼ି ଯୋଗୁଁ ଦରଦାମ ବୃଦ୍ଧି ହେବାର ସମ୍ଭାବନା । ଭାରତରେ ପ୍ରତ୍ୟେକ ବର୍ଷ ହାରାହାରି ଶତକଡା ୬ ଭାଗରେ ଦରଦାମ ବୃଦ୍ଧି ହେଉଛି । ଅନ୍ୟାନ୍ୟ ଅନେକ ଦେଶ ତୁଳନାରେ ଅବଶ୍ୟ କମ୍ । କିନ୍ତୁ ଯେଉଁ ଦେଶର ଅଧିକାଂଶ ଲୋକ ଦରିଦ୍ର, ସେ ଦେଶରେ ଦରଦାମ ବୃଦ୍ଧି ହେଲେ ଜନସାଧାରଣଙ୍କର ଦୁର୍ଗତି ବଢ଼ିଯାଏ । ଦରଦାମ ପ୍ରତ୍ୟେକ ବର୍ଷ ଶତକଡା ୬ ଭାଗରେ ବୃଦ୍ଧି ପାଇଲେ ୧୦ ବର୍ଷରେ ଦୁଇଗୁଣ ହୋଇଯାଏ । ଏବେ ଯେଉଁ ସରକାରୀ ହିସାବ ବାହାରିଛି, ସେଥିରୁ ଦେଖାଯାଉଛି ଯେ ୧୯୬୦ ଦରସୂଚୀ ଅନୁସାରେ ଏକ ଟଙ୍କାର ମୂଲ୍ୟ ବର୍ତ୍ତମାନ ପ୍ରାୟ ୧୪ ପଇସା । କିନ୍ତୁ ଏ ବର୍ଷ ଯେପରି ମରୁଡ଼ି ହୋଇଛି ସେଥିରେ ଦରଦାମ ଶତକଡା ୬ ଭାଗ ନ ବଢ଼ି ଆହୁରି ଅଧିକ ବଢ଼ିବାର ସମ୍ଭାବନା । ତାହାହେଲେ ଦରିଦ୍ର ଜନସାଧାରଣଙ୍କର ଅବସ୍ଥା ଅନେକ ଖରାପ ହେବ । ସରକାର ଯେତେ ଚେଷ୍ଟା କଲେ ମଧ୍ୟ ଦରିଦ୍ର ଜନସାଧାରଣଙ୍କର ଦୁଃଖ ମୋଚନ କରି ପାରିବେ ନାହିଁ ।

(୫) ଏହି ମରୁଡ଼ି ଯୋଗୁଁ ସରକାରଙ୍କର ବଜେଟରେ ନିଅଣ୍ଟିଆ ଭାଗ ଅନେକ ବୃଦ୍ଧି ହେବ । ଚଳିତ ବର୍ଷ ପ୍ରାୟ ବଜେଟରେ ୬ ହଜାର କୋଟି ଟଙ୍କା ନିଅଣ୍ଟ ପଡ଼ିବ ବୋଲି ଅଟକଳ କରାଯାଇଛି । ପ୍ରଧାନମନ୍ତ୍ରୀ ଏହି ନିଅଣ୍ଟ ନ ବଢ଼େଇବା ପାଇଁ କଡ଼ାକଡ଼ି ନିର୍ଦ୍ଦେଶ ଦେଇଛନ୍ତି । କିନ୍ତୁ ଯାହା ଦେଖାଯାଉଛି ନିଅଣ୍ଟିଆ ବଜେଟ ୬ ହଜାର କୋଟି ଟଙ୍କାରେ ସୀମିତ ହୋଇ ରହିବ ନାହିଁ । କେବଳ କେନ୍ଦ୍ର ବଜେଟ ନିଅଣ୍ଟ ହେବ ନାହିଁ, ରାଜ୍ୟ ବଜେଟରେ ମଧ୍ୟ ନିଅଣ୍ଟ ବଢ଼ିବ । ବଜେଟରେ ନିଅଣ୍ଟ ଯେତିକି ବଢ଼ିବ, ମୁଦ୍ରାସ୍ଫୀତି ସେତିକି ଅଧିକ ହେବ । ଏହାର ପ୍ରଭାବ ପ୍ରତ୍ୟେକ ରାଜ୍ୟର ଅର୍ଥନୀତି ଉପରେ ପଡ଼ିବ । ରାଜ୍ୟ ସରକାରମାନେ କେନ୍ଦ୍ରରୁ ଯେତିକି ସାହାଯ୍ୟ ପାଇବାର କଥା, ସେତିକି ସାହାଯ୍ୟ ପାଇ ପାରିବେ ନାହିଁ । ଯାହା ବା ସାହାଯ୍ୟ ପାଇବେ, ତାହା ମରୁଡ଼ିରେ ଖର୍ଚ୍ଚ କରିବେ, ଉନ୍ନୟନ କାର୍ଯ୍ୟରେ ଖର୍ଚ୍ଚ କରିବାକୁ ସୁବିଧା ପାଇବେ ନାହିଁ । ଚଳିତ ବର୍ଷ କେନ୍ଦ୍ର ସରକାର ମରୁଡ଼ି ବାବଦରେ ପ୍ରାୟ ଦୁଇ ହଜାର କୋଟି ଟଙ୍କା ଖର୍ଚ୍ଚ କରିବେ ବୋଲି ହିସାବ ବାହାରିଛି । ଏହା ଫଳରେ ଉନ୍ନୟନ ଖର୍ଚ୍ଚ ଉପରେ ନିଶ୍ଚୟ ଆଞ୍ଚ ଆସିବ ।

ଏଥିରୁ ଦେଖାଯିବ ଯେ ମରୁଡ଼ି ଯୋଗୁଁ ଅର୍ଥନୈତିକ ପ୍ରଗତିରେ ଅନେକ ବାଧା ସୃଷ୍ଟି ହେବ । ବର୍ତ୍ତମାନ ମରୁଡ଼ିରୁ ରକ୍ଷା ପାଇବା ପାଇଁ ଦୁଇଟି କାର୍ଯ୍ୟ ଉପରେ ଗୁରୁତ୍ୱ ଦେବାକୁ ପଡ଼ିବ । ପ୍ରଥମ ହେଉଛି ଲୋକମାନଙ୍କୁ କାମ ଯୋଗାଇବା । ସେହି କାମ ଯୋଗୁଁ ଯଦି କିଛି ଉନ୍ନୟନ କାମ ହୋଇ ପାରିଲା, ଖୁବ ଭଲ । ଅର୍ଥାତ୍ କ୍ଷୁଦ୍ର କ୍ଷୁଦ୍ର ଜଳସେଚନ ଯୋଜନା, ପୁରୁଣା ଜଳସେଚନ ଯୋଜନାର ମରାମତି, ପୋଲ, ଗ୍ରାମ୍ୟ ରାସ୍ତା ମରାମତି ଇତ୍ୟାଦି । ତାହାହେଲେ ପୁଞ୍ଜି ଗଠନ ହେବ ଏବଂ ସ୍ଥାନୀୟ ଲୋକମାନେ କାମ ପାଇ କିଛି ରୋଜଗାର କରିବାକୁ ସୁଯୋଗ ପାଇବେ । ଓଡ଼ିଶା ସରକାର ଏ ଦିଗରେ ବର୍ତ୍ତମାନ ଦୃଷ୍ଟି ଦେଇଛନ୍ତି । କିଛି କିଛି କାମ ଆରମ୍ଭ ହୋଇଛି । ହୁଏତ ଆହୁରି ଅନେକ ଅଧିକ କାମ ହେବ । ପ୍ରତ୍ୟେକ ବିଭାଗକୁ ସେଥିପାଇଁ ସତର୍କ କରାଯାଇଛି ।

ଦ୍ୱିତୀୟ ହେଉଛି ଶସ୍ତାଦରରେ ଆବଶ୍ୟକୀୟ ଜିନିଷର ସୁବଣ୍ଟନ । ଯୋଜନା ଆରମ୍ଭ କାଳରୁ ସରକାରୀ ସ୍ତରରେ ବଣ୍ଟନ ବ୍ୟବସ୍ଥା ଜାରି କରାଯାଇଛି । ଆସ୍ତେ ଆସ୍ତେ ଏହାର ପରିସର ବୃଦ୍ଧି ହେଉଛି । ଏଥର କିନ୍ତୁ ବ୍ୟାପକ ଭାବରେ ଏହି ବଣ୍ଟନ କାର୍ଯ୍ୟ ହାତକୁ ନିଆଯାଉଛି । କେତେକ ଦରକାରୀ ଜିନିଷ ଯଦି ଶସ୍ତା ଦରରେ ସହର ଓ ମଫସଲ ଉଭୟ ଜାଗାରେ ସହଜରେ ଓ ସୁବିଧାରେ ବଣ୍ଟନ କରାଯାଇ ପାରିବ, ତାହାହେଲେ ମରୁଡ଼ିର ହାତରୁ ଅନେକ ଲୋକ ରକ୍ଷା ପାଇ ପାରିବେ ।

ଏହା ବ୍ୟତୀତ ଆହୁରି ଅନେକ କାମ ମଧ୍ୟ କାର୍ଯ୍ୟକାରୀ କରାଯାଇ ପାରେ । ଯଥା ଅଣଉନ୍ନୟନ ଖର୍ଚ୍ଚ କାଟଛାଣ୍ଟ, ପୁଣି ରବିଫସଲ ପାଇଁ ବ୍ୟାପକ ବ୍ୟବସ୍ଥା । ଅକ୍ଟୋବର ଓ ନଭେମ୍ବର ମାସରେ ଯେଉଁ ବର୍ଷା ହୋଇଛି, ତାହା ରବି ଫସଲକୁ ଅନେକ ସାହାଯ୍ୟ କରିବ । କିନ୍ତୁ ସେଥିପାଇଁ ଏକ ବ୍ୟାପକ ଯୋଜନା କରିବାକୁ ପଡ଼ିବ । ଚାଷୀ ଏହି ରବିଋତୁରେ କଣ ଫସଲ କରିବ, କେଉଁଠି କରିବ, କେତେ କରିବ, ସରକାର କଣ ସାହାଯ୍ୟ ଦେଇ ପାରିବେ, ଏ ସବୁ ବିଷୟରେ ଚାଷୀ ଆଜିଠାରୁ ସବୁ ଜାଣିବା ଦରକାର । ତାହାହେଲେ ସେ ସେଥିପାଇଁ ଏକ କାର୍ଯ୍ୟକ୍ରମ ଗ୍ରହଣ କରି ପାରିବ । ଜଳସେଚନ ବିଭାଗ ମଧ୍ୟ କେତେ ପାଣି ଯୋଗାଇ ପାରିବ, ତାହାର ହିସାବ ଦେବା ଦରକାର । ସୁସ୍ଥ ସମୟରେ ଯେପରି କାର୍ଯ୍ୟକ୍ରମ ଗ୍ରହଣ କରାଯାଏ । ବର୍ତ୍ତମାନ ସେହି ରୀତିରେ କାର୍ଯ୍ୟକ୍ରମ ଗ୍ରହଣ କରାଗଲେ କେବଳ ଚାଷୀ ନୁହଁନ୍ତି ସାଧାରଣ ଲୋକମାନେ ମଧ୍ୟ ଅନେକ ଉପକୃତ ହେବେ

ଯଦି ସମାଜରେ ଉଚ୍ଚ, ନୀଚ, ଧନୀ, ଗରିବ ଭେଦଭାବ ବଢ଼େ, ତାହାହେଲେ ବ୍ୟଗ୍ରତା ବଢ଼ିବ, ଝଗଡ଼ା ବଢ଼ିଯିବ, ଶାନ୍ତି ଓ ଶୃଙ୍ଖଳା ରହି ପାରିବ ନାହିଁ । ଯେଉଁଭଳି ସମାଜରେ ସ୍ୱାଧୀନତା ଦୃଢ଼ୀଭୂତ ହୋଇ ପାରିବ, ଦେଶର ପ୍ରଗତି ଓ ବିକାଶରେ ଅଗ୍ରଗତି ହୋଇ ପାରିବ, ସେଥିପାଇଁ ଆମକୁ ଆତ୍ମନିର୍ଭରଶୀଳ ହେବାକୁ ପଡ଼ିବ ।

– ଶ୍ରୀମତୀ ଇନ୍ଦିରା ଗାନ୍ଧୀ

# ଯୋଗାଣ ନିଗମ ଆଭିମୁଖ୍ୟ ଓ ମରୁଡ଼ି ପ୍ରତିକାର ପାଇଁ କାର୍ଯ୍ୟକ୍ରମ

ଶ୍ରୀ ରବୀନ୍ଦ୍ର ମୋହନ ସେନାପତି

ସାଂପ୍ରତିକ ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ଯୋଗାଣ ନିଗମ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଇବା ପାଇଁ ବଳିଷ୍ଠ କର୍ମପନ୍ଥା ଗ୍ରହଣ କରିଅଛି । ଭ୍ରାମ୍ୟମାଣ ଗାଡ଼ି (mobile van) ମାଧ୍ୟମରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ରିହାତି ମୂଲ୍ୟରେ ଚାଉଳ ଇତ୍ୟାଦି ଯୋଗାଇ ଦିଆଯାଉଛି ।

ରାଜ୍ୟର ପ୍ରତ୍ୟେକ ସହରାଞ୍ଚଳ ତଥା ଗ୍ରାମାଞ୍ଚଳର ଖାଉଟିମାନଙ୍କୁ ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ମୂଲ୍ୟରେ ଏବଂ ସାଧାରଣ ବଣ୍ଟନ ବ୍ୟବସ୍ଥା ମାଧ୍ୟମରେ ଚାଉଳ, ଚିନି, ଗହମ, ଖାଇବା ତେଲ ଇତ୍ୟାଦି ୧୯୭୨୩ ଟି ସୁଲଭ ମୂଲ୍ୟ ଦୋକାନ ଜରିଆରେ ଯୋଗାଇ ଦେଉଥାନ୍ତି । ଏତଦ୍ ବ୍ୟତୀତ ଭୁବନେଶ୍ୱର, କଟକ ଏବଂ ବାଲେଶ୍ୱର ସହରରେ ଯୋଗାଣ ନିଗମ ଆଦର୍ଶ ସୁଲଭ ମୂଲ୍ୟଦୋକାନମାନ ଖୋଲି ଖାଉଟିମାନଙ୍କୁ ଅତ୍ୟାବଶ୍ୟକୀୟ ସାମଗ୍ରୀ ଯୋଗାଇ ଦିଅଯିବାର ସୁବିଧା କରିଛନ୍ତି ।

ଆଦିବାସୀ ବହୁଳ ଅଞ୍ଚଳ ମାନଙ୍କରେ ଖାଉଟିମାନଙ୍କୁ ନିଗମ ଗାଡ଼ିଦ୍ୱାରା ହାଟମାନଙ୍କରେ ଅତ୍ୟାବଶ୍ୟକୀୟ ସାମଗ୍ରୀ ଯୋଗାଇ ଦିଆଯାଉଛି । ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ଯୋଗାଣ ନିଗମ ଅଧିକ ପରିମାଣରେ ଚାଉଳ, ଗହମ ଓ ଖାଇବା ତେଲ ବଣ୍ଟନ କରିବାର ବନ୍ଦୋବସ୍ତ କରିଛନ୍ତି ।

ପୂର୍ବ ବର୍ଷ ତୁଳନାରେ ଚଳିତ ବର୍ଷ ଜୁଲାଇଠାରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ ଅତ୍ୟାବଶ୍ୟକୀୟ ସାମଗ୍ରୀର ଆବଣ୍ଟିତ ପରିମାଣ (ମେଟ୍ରିକ ଟନ୍‌ରେ) ।

| | ଜୁଲାଇ'୮୬ | ଜୁଲାଇ'୮୭ | ଅଗଷ୍ଟ'୮୬ | ଅଗଷ୍ଟ'୮୭ |
|---|---|---|---|---|
| ଚାଉଳ | ୧୦୯୫୦ | ୧୬୧୫୦ | ୬୨୫୦ | ୨୦୦୦୦ |
| ଗହମ | ୬୬୨୦ | ୧୦୨୯୦ | ୫୯୨୦ | ୧୧୩୯୦ |
| ଚିନି | ୧୧୫୬୬ | ୧୨୩୯୩ | ୧୧୫୬୬ | ୧୨୩୯୩ |
| ଖାଇବା ତେଲ | ୧୫୦୦ | ୧୩୦୦ | ୩୦୦୦ | ୩୨୦୦ |

| | ସେପ୍ଟେମ୍ବର'୮୬ | ସେପ୍ଟେମ୍ବର'୮୭ | ଅକ୍ଟୋବର'୮୬ | ଅକ୍ଟୋବର'୮୭ |
|---|---|---|---|---|
| ଚାଉଳ | ୮୦୫୦ | ୩୦୦୦୦ | ୯୯୫୦ | ୪୦୦୦୦ |
| ଗହମ | ୮୮୨୦ | ୧୬୦୦୦ | ୯୯୫୦ | ୧୫୨୦୦ |
| ଚିନି | ୧୩୪୨୮ | ୧୪୨୫୮ | ୧୩୪୨୮ | ୧୪୨୫୮ |
| ଖାଇବା ତେଲ | ୩୦୦୦ | ୩୫୦୦ | ୩୦୦୦ | ୪୫୦୦ |

ଯୋଗାଣ ନିଗମ ସ୍ୱତନ୍ତ୍ର ଭାବେ ନିର୍ମିତ କେତେକ ଗାଡ଼ିରେ ଅତ୍ୟାବଶ୍ୟକୀୟ ସାମଗ୍ରୀ ପରିବହନ କରି ବିଭିନ୍ନ ହାଟରେ ଖାଉଟିମାନଙ୍କ ନିକଟରେ ପହଞ୍ଚାଇ ଥାଆନ୍ତି । ସେହି ଗାଡ଼ି ଗୁଡ଼ିକ ଭ୍ରାମ୍ୟମାଣ ସୁଲଭ ମୂଲ୍ୟ ଦୋକାନ ବୋଲି କୁହାଯାଇଥାଏ । ଏହା ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ କରାଯାଉଥିବା ସମନ୍ୱିତ ଆଦିବାସୀ ଉନ୍ନୟନ ଯୋଜନାର ଏକ ଅଂଶ ବିଶେଷ । ବର୍ତ୍ତମାନ ୨୧ଟି ସମନ୍ୱିତ ଆଦିବାସୀ ଉନ୍ନୟନ ଯୋଜନା ଓଡ଼ିଶାର ୯ଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାର ୧୧୮ଟି ବ୍ଲକରେ କାର୍ଯ୍ୟକାରୀ ହେଉଛି । ବର୍ତ୍ତମାନ ସୁଦ୍ଧା ବିଭିନ୍ନ ଜିଲ୍ଲାକୁ ଭ୍ରାମ୍ୟମାଣ ସୁଲଭ ମୂଲ୍ୟ ଦୋକାନ ନିମନ୍ତେ ୩୦ଟି ଗାଡ଼ି ଯୋଗାଇ ଦିଆଯାଇଛି ।

| | | | | | |
|---|---|---|---|---|---|
| ଗଞ୍ଜାମ | .. | 2 | ସମ୍ବଲପୁର | .. | 1 |
| କୋରାପୁଟ | .. | 15 | ସୁନ୍ଦରଗଡ଼ | .. | 1 |
| କଳାହାଣ୍ଡି | .. | 1 | ମୟୂରଭଞ୍ଜ | .. | 2 |
| ଫୁଲବାଣୀ | .. | 6 | କେନ୍ଦୁଝର | .. | 2 |

ପରବର୍ତ୍ତୀ ପର୍ଯ୍ୟାୟରେ ନିଗମ ତରଫରୁ ୨୧ଟି ଗାଡ଼ି ଯୋଗାଇ ଦେବାର ବନ୍ଦୋବସ୍ତ କରାଯାଉଛି ।

ସାଧାରଣତଃ ଆଦିବାସୀ ଅଞ୍ଚଳର ଲୋକମାନେ କିଣାବିକା ପାଇଁ ହାଟରେ ଠୁଳ ହେଉଥିବାରୁ ସମସ୍ତ ଅତ୍ୟାବଶ୍ୟକୀୟ ସାମଗ୍ରୀ ଭ୍ରାମ୍ୟମାଣ ଦୋକାନରୁ ସହଜରେ ଏବଂ ନିକଟରେ ସଂଗ୍ରହ କରିପାରୁଛନ୍ତି ।

ଚାଉଳ, ଚିନି, ଗହମ, କିରୋସିନି ତେଲ, ଖାଇବା ତେଲ (ପାମୋଲିନ), ଜନତା ଧୋତି ଏବଂ ଶାଢ଼ୀ ଇତ୍ୟାଦି ଯୋଗାଇ ଦିଆଯାଇଛି । ତନ୍ମଧ୍ୟରୁ ଚାଉଳ ଏବଂ ଗହମ ରିହାତି ଦରରେ ଯଥା ଏକ କିଲୋ ପ୍ରତି ଟ ୧.୮୫ ପଇସା ଏବଂ ଗହମ କିଲୋପ୍ରତି ଟ ୧.୫୫ ପଇସା ଦରରେ ଯୋଗାଇ ଦିଆଯାଉଛି ।

ରାଜ୍ୟର ୩୦୦ଟିରୁ ଅଧିକ ସାପ୍ତାହିକ ହାଟରେ ଏହି ଭ୍ରାମ୍ୟମାଣ ଦୋକାନ ଜରିଆରେ ବିକ୍ରି କରିବାର ବନ୍ଦୋବସ୍ତ କରାଯାଇଛି, ଯଦ୍ୱାରା ରାଜ୍ୟର ପ୍ରାୟ ୨୦ ଲକ୍ଷ ଖାଉଟି ଉପକୃତ ହୋଇପାରିଛନ୍ତି ।

ସମସ୍ତ ପରିବାରକୁ ପରିଚୟପତ୍ର କାର୍ଡ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇ କାର୍ଡ ପିଛା ପ୍ରତ୍ୟେକ ପରିବାରକୁ ମାସିକ ୧୩ କିଲୋ ଚାଉଳ ଏବଂ

ସରକାର ଅନୁଯାଇ ଗହମ ଏବଂ ଅନ୍ୟାନ୍ୟ ସାମଗ୍ରୀ ଯୋଗାଇ ଦିଆଯାଇଛି । ଏ ବାବଦରେ ରାଜ୍ୟ ସରକାର ଗତ ବର୍ଷ ଜୁଲାଇ ମାସଠାରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ ୨୬,୪୦୦ ମେଟ୍ରିକ ଟନ୍ ଚାଉଳ ଜିଲ୍ଲାମାନଙ୍କରେ ବଣ୍ଟନ ନିମନ୍ତେ ଆବଣ୍ଟନ କରିଥିଲେ ଓ ନିଗମ ସେଥି ମଧ୍ୟରୁ ୨୫,୦୯୯.୨୬୭ ମେଟ୍ରିକ ଟନ୍ ଚାଉଳ ରାଜ୍ୟରେ ବିନିଯୋଗ କରିଥିଲେ । ଚଳିତ ବର୍ଷ ରାଜ୍ୟ ସରକାର ରିହାତି ଦରରେ ଜୁଲାଇ ମାସଠାରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ ୫୦,୫୫୯ ମେଟ୍ରିକ ଟନ୍ ଚାଉଳ ଜିଲ୍ଲାମାନଙ୍କୁ ଆବଣ୍ଟନ କରିଛନ୍ତି ଓ ସେଥିମଧ୍ୟରୁ ନିଗମ ଜରିଆରେ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ୩୨,୩୨୩.୪୧୭ ମେଟ୍ରିକ ଟନ୍ ଚାଉଳ ରାଜ୍ୟରେ ବିନିଯୋଗ କରାଯାଇଅଛି ।

ଅତ୍ୟାବଶ୍ୟକୀୟ ଜିନିଷ ନେବାପାଇଁ ପଡ଼ିକାର୍ଡ ବ୍ୟବସ୍ଥା କରାଯାଇଛି । ଏହି କାର୍ଡର ଅପବ୍ୟବହାର ରୋକିବା ପାଇଁ ନିୟମିତ ଭାବରେ ଯାଞ୍ଚ କରାଯାଉଛି ।

ଏହି ସଂପର୍କରେ ନିର୍ଦ୍ଦିଷ୍ଟ ଅଭିଯୋଗ ମିଳିଲେ ନିଗମ ଅବଶ୍ୟ ଆଇନ ସଙ୍ଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ । ଏତଦ୍ ବ୍ୟତୀତ ସମସ୍ତ ରାଜ୍ୟକୁ ତିନୋଟି ଅଞ୍ଚଳରେ ବିଭକ୍ତ କରାଯାଇ ପ୍ରତ୍ୟେକ ଅଞ୍ଚଳକୁ ଗୋଟିଏ ଗୋଟିଏ ଏନ୍‌ଫୋର୍ସମେଣ୍ଟ ସ୍କ୍ୱାର୍ଡର ଅନ୍ତର୍ଭୁକ୍ତ କରାଯାଇଛି । ତା ଛଡା ପ୍ରତ୍ୟେକ ଜିଲ୍ଲାର ଜିଲ୍ଲାପାଳ, ଯୋଗାଣ ବିଭାଗ କର୍ମଚାରୀମାନଙ୍କୁ ଆବଶ୍ୟକୀୟ କ୍ଷମତା ପ୍ରଦାନ କରାଯାଇଛି ।

ସରକାରଙ୍କର ୨୦ ଦଫା କାର୍ଯ୍ୟକ୍ରମକୁ ସଫଳ ରୂପାୟନ ଦେବା ନିମନ୍ତେ ରାଜ୍ୟ ସରକାର ଜାତୀୟ ଗ୍ରାମ୍ୟ ନିଯୁକ୍ତି ଯୋଜନା ଓ ଗ୍ରାମ୍ୟ ଭୂମିହୀନ ନିଯୁକ୍ତି ପ୍ରତ୍ୟାଭୂତି ଯୋଜନା ଅନୁଯାୟୀ ରାଜ୍ୟରେ କର୍ମ ସଂସ୍ଥାନ କରିବାରେ ପର୍ଯ୍ୟାପ୍ତ ପରିମାଣର ଚାଉଳ ଯୋଗାଣ ନିଗମ ମାଧ୍ୟମରେ ଯୋଗାଇ ଦେଉଛନ୍ତି ।

ଏହା କେବଳ ରାଜ୍ୟ ସରକାରଙ୍କର ତତ୍ତ୍ୱାବଧାନରେ ଓ ନିଗମର କର୍ମ ତତ୍ପରତା ଯୋଗୁଁହିଁ ସମ୍ଭବ ହୋଇ ପାରିଛି ।

ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ ଯେତେବେଳେ ଅସ୍ତ ହେଉ ନ ଥିଲେ, ସେତେବେଳେ ଇଂରେଜ ଜାତି ସମ୍ପର୍କରେ କୁହା ଯାଉଥିଲା ଯେ ଇଟନର ଖେଳ ପଡ଼ିଆରେ ସେମାନଙ୍କର ଚରିତ୍ର ଗଠିତ ହେଉଥିଲା । ଖେଳ, କସରତ, ଶରୀର ଚର୍ଚ୍ଚାରେ ଚରମ ଉତ୍କର୍ଷ ସାଧନ ବିନା କୌଣସି ଜାତିର କେବେହେଲେ ଅଭ୍ୟୁଦୟ ହୋଇ ନାହିଁ । × × × ଯେଉଁ ଜାତି ସବୁଠାରୁ ବେଶୀ ଅଗ୍ରସର, ଶରୀର ଚର୍ଚ୍ଚାରେ ସେ ସେତିକି ଅଗ୍ରଣୀ ।

ଜାନକୀ ବଲ୍ଲଭ ପଟ୍ଟନାୟକ

# ମରୁଡ଼ି ପରିସ୍ଥିତି ମୁକାବିଲାରେ ଉଠାଜଳସେଚନ ନିଗମ

ଶ୍ରୀ ମଦନ ମୋହନ ମହାନ୍ତ

ଚଳିତ ବର୍ଷ କ୍ରମାଗତ ଅନାବୃଷ୍ଟି, ସ୍ୱଳ୍ପବୃଷ୍ଟି ବା ଅନିୟମିତ ବୃଷ୍ଟିପାତ ଯୋଗୁ ରାଜ୍ୟରେ ଅଭୂତପୂର୍ବ ମରୁଡ଼ି ପରିସ୍ଥିତି ଉପୁଜିଛି । ବହୁଅଞ୍ଚଳରେ ଖରିଫ ଫସଲ ଆଂଶିକ ବା ସଂପୂର୍ଣ୍ଣ ନଷ୍ଟ ହୋଇଯାଇଛି । ମାତ୍ର ଏହି ଦୁଃସ୍ଥିତି ସମୟରେ ଉଠା ଜଳସେଚନ ନିଗମ ଚାଷୀର ସହାୟ ରୂପରେ ଏକ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛି ।

ପଞ୍ଚମ ଯୋଜନା ଶେଷବେଳକୁ ରାଜ୍ୟରେ ମାତ୍ର ୩,୯୯୦ଟି ଉଠା ଜଳସେଚନ ପ୍ରକଳ୍ପ ସ୍ଥାପିତ ହୋଇଥିଲା । ଷଷ୍ଠ ଯୋଜନା କାଳରେ ଏହି ସଂଖ୍ୟା ୮,୨୪୩କୁ ବୃଦ୍ଧି ପାଇଥିଲା । ବିଶେଷତଃ ପ୍ରଧାନମନ୍ତ୍ରୀଙ୍କର ବ୍ୟାପକ ଜଳସେଚନ କାର୍ଯ୍ୟକ୍ରମ ଅନୁଯାୟୀ ରାଜ୍ୟରେ ଉଠା ଜଳସେଚନ ଯୋଜନାକୁ ବିଶେଷ ତ୍ୱରାନ୍ୱିତ କରାଯାଇଥିଲା । ସପ୍ତମ ଯୋଜନାକାଳରେ ଆଉ ୫,୦୦୦ଟି ନୂତନ ଉଠା ଜଳସେଚନ ପ୍ରକଳ୍ପ କାର୍ଯ୍ୟକାରୀ କରିବାପାଇଁ ସ୍ଥିର ହୋଇଛି । ତନ୍ମଧ୍ୟରୁ ଗତ ଦୁଇବର୍ଷରେ ୧,୫୨୪ ଟି ପ୍ରକଳ୍ପ ସ୍ଥାପନ କରାଯାଇଛି ଓ ଚଳିତ ବର୍ଷ ପ୍ରାୟ ୮୦୦ଟି ସ୍ଥାପନ କରିବା କାର୍ଯ୍ୟକ୍ରମ ରହିଛି ।

ପ୍ରତିବର୍ଷ ଖରିଫ୍ ଏବଂ ରବି ଋତୁର ଆରମ୍ଭ ପୂର୍ବରୁ ଉକ୍ତ ଋତୁରେ କେତୋଟି ଉଠା ଜଳସେଚନ ଯୋଜନା ଚଳାଯାଇପାରିବ ସେ ବିଷୟରେ ଗୋଟିଏ କାର୍ଯ୍ୟକ୍ରମ ପ୍ରସ୍ତୁତି କରାଯାଇଥାଏ । ଅନ୍ୟବର୍ଷପରି ଚଳିତ ବର୍ଷ ମଧ୍ୟ ଖରିଫ୍ ଋତୁ ଆରମ୍ଭ ପୂର୍ବରୁ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଥିଲା । ସେଥିରେ ୮,୦୪୫ଟି ଉଠା ଜଳସେଚନ ପ୍ରକଳ୍ପକୁ ଚଳାଇ ୯୫,୪୨୦ ହେକ୍‌ଟର ଜମିକୁ ଜଳସେଚିତ କରିବାରେ କାର୍ଯ୍ୟକ୍ରମ ସ୍ଥିର କରାଯାଇଥିଲା । ଏହି କାର୍ଯ୍ୟକ୍ରମ ରାଜ୍ୟରେ ସ୍ୱାଭାବିକ ବୃଷ୍ଟିପାତକୁ ଆଖିଆଗରେ ରଖି କେବଳ କ୍ଷେତ୍ର ବିଶେଷରେ ଅନିୟମିତ ବୃଷ୍ଟିପାତ ଯୋଗୁ ଉପୁଜୁଥିବା ଜଳାଭାବକୁ ପୂରଣ କରିବାରେ ସହାୟକ ହେବା ପାଇଁ କରାଯାଇଥିଲା । କିନ୍ତୁ କ୍ରମାଗତ ଅନାବୃଷ୍ଟି ଯୋଗୁ ଉପୁଜିଥିବା ବ୍ୟାପକ ମରୁଡ଼ି ପରିସ୍ଥିତିକୁ ମୁକାବିଲା କରିବା ଦିଗରେ ଉଠା ଜଳସେଚନ ଯୋଜନାଗୁଡ଼ିକ ବିଶେଷ ଫଳପ୍ରଦ ଭୂମିକା ଗ୍ରହଣ କରିଥିଲେ ।

ମାର୍ଚ୍ଚ ୧୯୮୭ ସୁଦ୍ଧା ସ୍ଥାପିତ ହୋଇଥିବା ମୋଟ୍ ୯,୭୬୭ଟି ପ୍ରକଳ୍ପ ମଧ୍ୟରୁ ବିଭିନ୍ନ କାରଣରୁ ୩୭୨୨ଟି ଗତ ଖରିଫ ଋତୁ ଆରମ୍ଭ ବେଳକୁ କାର୍ଯ୍ୟକ୍ଷମ ଅବସ୍ଥାରେ ନ ଥିଲା । ମାତ୍ର ଉକ୍ତ ପ୍ରକଳ୍ପଗୁଡ଼ିକ ସକ୍ରିୟ କରିବା ପାଇଁ ଯୁଦ୍ଧକାଳୀନ ଭିତ୍ତିରେ ପଦକ୍ଷେପ ନିଆଯାଇଥିଲା । ଚୋରୀ ହୋଇ ବିଦ୍ୟୁତ ତାର ନ ଥିବା ଯୋଗୁ ଅଚଳଥିବା ଉଠା ଜଳସେଚନ ଯୋଜନା ଗୁଡ଼ିକରେ ବିଦ୍ୟୁତ ତାର ଲଗାଇ ଦିଆଯାଇଥିଲା ଓ ଅଚଳ ଥିବା ଟ୍ରାନ୍ସଫର୍ମର ଗୁଡ଼ିକ ମରାମତି କରାଯାଇ ଏବଂ କ୍ଷେତ୍ର ବିଶେଷରେ ନୂତନ ଟ୍ରାନ୍ସଫର୍ମର ବସାଇ ବହୁ ଅଚଳ ପ୍ରକଳ୍ପ ଚାଲୁ କରାଯାଇଥିଲା । ପ୍ରେସର ପାଇପ ନ ଥିବା ଯୋଗୁଁ ଅଚଳ ଥିବା ପ୍ରକଳ୍ପଗୁଡ଼ିକରେ ପାଇପ ବସାଯାଇ ସେଚନ କ୍ଷମ କରାଯାଇଥିଲା । ଏହା ବ୍ୟତୀତ ରୁଦ୍ଧ ହୋଇ ଅଚଳ ଥିବା ନଳକୂପଗୁଡ଼ିକ ପୁନରୁଦ୍ଧାର କରିବା ପାଇଁ ମଧ୍ୟ ପଦକ୍ଷେପ ନିଆଯାଇଥିଲା । ସ୍ଥଳ ବିଶେଷରେ ଯେଉଁ ନଦୀଗୁଡ଼ିକରେ ଜଳ ପ୍ରବାହର ଗତିପଥ ବଦଳି ଯାଇଛି ଏବଂ ସେଥି ଯୋଗୁଁ ଉଠା ଜଳସେଚନ ପ୍ରକଳ୍ପ କାର୍ଯ୍ୟକ୍ଷମ ହୋଇପାରୁ ନାହିଁ ସେ କ୍ଷେତ୍ରରେ ଇନଟେକ ୱେଲ ନିର୍ମାଣ କରାଯାଇ ଯୋଜନାଗୁଡ଼ିକ ସକ୍ରିୟ କରାଯାଇଥିଲା । ପଂପ୍ ମରାମତି ଅଭାବରୁ ଓ ଅନ୍ୟାନ୍ୟ କାରଣରୁ ଅଚଳ ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକ ମଧ୍ୟ ତୁରନ୍ତ ସକ୍ରିୟ କରାଯାଇଛି । ଏହି ସମସ୍ତ ପଦକ୍ଷେପ ଫଳରେ ପ୍ରାୟ ୨ମାସ ମଧ୍ୟରେ ୬୪୦ଟି ଅଚଳ ପ୍ରକଳ୍ପ କାର୍ଯ୍ୟକ୍ଷମ ଅବସ୍ଥାକୁ ଅଣାଯାଇ ପାରିଥିଲା । ବାକୀ ପ୍ରାୟ ୯୦୦ରୁ ଅଧିକ ଚଳିତ ରବି ଋତୁରେ କାର୍ଯ୍ୟକ୍ଷମ କରିବାର ପ୍ରସ୍ତାବ ରହିଛି । ଏଥି ନିମନ୍ତେ ଯଥାଯଥ ପଦକ୍ଷେପ ମଧ୍ୟ ନିଆସରିଛି ।

ଚଳିତ ଖରିଫ ଋତୁରେ ରାଜ୍ୟରେ ୬,୯୦୦ରୁ ଅଧିକ ପ୍ରକଳ୍ପ କାର୍ଯ୍ୟକାରୀ କରାଯାଇ ପ୍ରାୟ ୪୨,୦୦୦ ହେକ୍‌ଟର ଜମିକୁ ଜଳ ଯୋଗାଇ ଦିଆଯାଇ ଜଳକର ଆଦାୟ ହୋଇଛି । ଏହା ବ୍ୟତୀତ ଆହୁରି ପ୍ରାୟ ୧୦,୦୦୦ରୁ ୧୫,୦୦୦ ହେକ୍‌ଟର ଜମିକୁ ଜଳ ଯୋଗାଇ ଦିଆଯାଇଥିଲେ ମଧ୍ୟ ଜଳକର ଆଦାୟ ହୋଇପାରିନାହିଁ । ଏଠାରେ ସ୍ମରଣ କରାଯାଇ ପାରେ ଯେ,

ଏଥି ପୂର୍ବରୁ ରାଜ୍ୟରେ କୌଣସି ଋତୁରେ ଏତେ ସଂଖ୍ୟକ ଉଠା ଜଳସେଚନ ପ୍ରକଳ୍ପ କରାଯାଇ ନ ଥିଲା । ପୂର୍ବତନ ବର୍ଷମାନଙ୍କ ମଧ୍ୟରେ ୧୯୮୨-୮୩ ମସିହାରେ ଖରିଫ ଋତୁରେ ସର୍ବାଧିକ ୪,୨୮୪ଟି ଏବଂ ୧୯୮୬-୮୭ ରବି ଋତୁରେ ସର୍ବାଧିକ ୬,୧୯୭ଟି ପ୍ରକଳ୍ପ ଖୋଲା କରାଯାଇଥିଲା । ଚଳିତ ଖରିଫ ଋତୁରେ କୃଷୀମାନେ କିପରି ବହୁଳଭାବେ ଉଠା ଜଳସେଚନ ପ୍ରକଳ୍ପରୁ ପାଣି ପାଇପାରିବେ ସେଥିପାଇଁ ବହୁ କଟକଣା କୋହଳ କରାଯାଇଥିଲା ଏବଂ ଜଳକର ହାର ମଧ୍ୟ ଶତକଡ଼ା ୫୦ଭାଗ କମାଇ ଦିଆଯାଇଥିଲା, କୋହଳ କରାଯାଇଥିବା କଟକଣା ଗୁଡ଼ିକ ହେଲା :-(୧) ୨୦୦୦ଟଙ୍କାରୁ ଅଧିକ ବକେୟା ଜଳକର ଅନାଦାୟୀ ରହିଥିବା ପ୍ରକଳ୍ପଗୁଡ଼ିକ ଖୋଲା ନ କରିବା ପାଇଁ ଥିବା କଟକଣା ଉଠାଇ ଦିଆଯାଇଥିଲା । (୨) ଯେଉଁ ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକରୁ ବିଦ୍ୟୁତ ତାର ଦୁଇ ଥରରୁ ଅଧିକ ଚୋରୀ ହୋଇଥିଲା ସେଗୁଡ଼ିକରେ ଆଉ ବିଦ୍ୟୁତ ତାର ନ ଲଗାଇବା ପାଇଁ ଆଗରୁ ଥିବା ନିଷ୍ପତ୍ତିକୁ ଉଠାଇ ନିଆଯାଇଥିଲା । ଫଳରେ ବହୁବାର ତାର ଚୋରୀଯାଇ ଅଚଳ ଥିବା ପ୍ରକଳ୍ପଗୁଡ଼ିକୁ ମଧ୍ୟ ତାର ଯୋଗାଇ ସଚଳ କରାଯାଇଥିଲା ; (୩) କୌଣସି ପ୍ରକଳ୍ପରେ (ଖରିଫ ଋତୁ ପାଇଁ) ସର୍ବ ନିମ୍ନ ୨୫/୧୫ ଏକର ଜମିରେ ପାଣି ମଡ଼ାଇବା ପାଇଁ ଚୁକ୍ତିବଦ୍ଧ ନହେଲେ ଏବଂ ସର୍ବ ନିମ୍ନ ୬୩୨/୪୩୨ ଟଙ୍କା ଅଗ୍ରୀମ ଜଳକର ଦାଖଲ ନ କଲେ ସେ ପ୍ରକଳ୍ପକୁ ଚାଲୁ କରା ଯାଉ ନଥିଲା । ଏହି କଟକଣାଟି ସହ ରବି ଋତୁ ପାଇଁ ଅନୁରୂପ ନିୟମ ମଧ୍ୟ ଉଠାଇ ଦିଆଯାଇଛି । ଏହା ଫଳରେ କୃଷୀ ଉଠା ଜଳସେଚନ ପ୍ରକଳ୍ପରୁ ଖୁବ କମ ଜମିପାଇଁ ମଧ୍ୟ ପାଣି ଯେ କୌଣସି ସମୟରେ ପାଇ ପାରୁଛି । ଏହା ବ୍ୟତୀତ ପ୍ରକଳ୍ପଗୁଡ଼ିକୁ ନିର୍ଦ୍ଧାରିତ ସମୟଠାରୁ ଅଧିକ ସମୟ ଚାଲୁ କରାଯାଇ ଅଧିକ ଜମିକୁ ପାଣି ଯୋଗାଇ ଦିଆଯାଉଛି ।

ରବି ଋତୁରେ ଉଠା ଜଳସେଚନ ପ୍ରକଳ୍ପ ବ୍ୟାପକଭାବରେ ଚାଲୁ କରାଯାଇ ଜଳ ଯୋଗାଇ ଦେବା ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି । ତଦନୁଯାୟୀ ରାଜ୍ୟରେ ବିଭିନ୍ନ ଜିଲ୍ଲାରେ ୮୬୧ଟି ପ୍ରକଳ୍ପ ଖୋଲା କରାଯାଇ ୮୦,୦୦୦ ହେକ୍ଟରରୁ ଅଧିକ ଜମିକୁ ପାଣି ଯୋଗାଇ ଦେବାର ମସୁଧା କରାଯାଇଛି । ବିଭିନ୍ନ ଜିଲ୍ଲାରେ କେତୋଟି ଲେଖାଏଁ ପ୍ରକଳ୍ପ ଖୋଲିବ ଓ କେତେ ଜମି ପାଇଁ ପାଣି ଯୋଗାଇ ଦିଆଯିବ ତାହାର ଜିଲ୍ଲାୱାରୀ ତାଲିକା ହେଲା—ବାଲେଶ୍ୱର ଜିଲ୍ଲାରେ ୧,୭୫୪ଟି ପ୍ରକଳ୍ପରୁ ୧୫,୨୦୦ ହେକ୍ଟର, ବଲାଙ୍ଗୀର ଜିଲ୍ଲାରେ ୧୮୧ଟି ପ୍ରକଳ୍ପରୁ ୨,୬୨୦ ହେକ୍ଟର, କଟକ ଜିଲ୍ଲାରେ ୨,୬୦୭ ପ୍ରକଳ୍ପରୁ ୨୩,୬୫୦ ହେକ୍ଟର, ଢେଙ୍କାନାଳ ଜିଲ୍ଲାରେ ୩୮୮ଟି ପ୍ରକଳ୍ପରୁ ୪,୮୬୦ ହେକ୍ଟର, ଗଞ୍ଜାମ ଜିଲ୍ଲାରେ ୮୦୦ଟି ପ୍ରକଳ୍ପରୁ ୪,୦୦୦ହେକଟର କଳାହାଣ୍ଡି ଜିଲ୍ଲାରେ ୨୭୦ଟି ପ୍ରକଳ୍ପରୁ ୨,୪୦୦ ହେକ୍ଟର, କେନ୍ଦୁଝର ଜିଲ୍ଲାରେ ୩୨୦ଟି ପ୍ରକଳ୍ପରୁ ୩,୮୪୦ ହେକଟର, କୋରାପୁଟ ଜିଲ୍ଲାରେ ୭୪୮ଟି ପ୍ରକଳ୍ପରୁ ୭,୬୫୦ ହେକ୍ଟର, ମୟୂରଭଞ୍ଜ ଜିଲ୍ଲାରେ ୪୬୭ଟି ପ୍ରକଳ୍ପରୁ ୪,୨୯୦ ହେକ୍ଟର, ଫୁଲବାଣୀ ଜିଲ୍ଲରେ ୧୪୪ଟି ପ୍ରକଳ୍ପରୁ ୧,୬୦୦ ହେକଟର, ପୁରୀ ଜିଲ୍ଲାରେ ୩୫୦ଟି ପ୍ରକଳ୍ପରୁ ୩,୨୫୦ ହେକଟର, ସମ୍ବଲପୁର ଜିଲ୍ଲାରେ ୩୫୦ଟି ପ୍ରକଳ୍ପରୁ ୪,୦୫୦ ହେକ୍ଟର ଏବଂ ସୁନ୍ଦରଗଡ ଜିଲ୍ଲାରେ ୨୪୦ଟି ପ୍ରକଳ୍ପରୁ ୨,୮୫୦ ହେକ୍ଟର ଜମିପାଇଁ ପାଣି ଯୋଗାଇ ଦିଆଯିବାର ଆପାତତଃ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଉଛି । ଏହା ମଧ୍ୟ ବୃଦ୍ଧି ପାଇପାରେ ।

ରାଜ୍ୟରେ ପ୍ରାୟ ୬,୦୦୦ଟି ଉଠା ଜଳସେଚନ ପ୍ରକଳ୍ପରେ ଜଳ ବଣ୍ଟନ ପ୍ରଣାଳୀ ସଂପୂର୍ଣ୍ଣ ହୋଇ ନଥିଲା । ଏହା ଫଳରେ ପ୍ରକଳ୍ପ ମାଧ୍ୟମରେ ଯେତେ ଜମି ପାଣି ପାଇବା କଥା ସେତେ ଜମି ପାଣି ପାଇପାରୁନଥିଲା । ଏହି ଅସୁବିଧା ଦୂର କରିବା ପାଇଁ ଏହି ବର୍ଷ ପ୍ରାୟ ୬ କୋଟି ଟଙ୍କା ବ୍ୟୟରେ ପ୍ରାୟ ୧,୭୦୦ଟି ପ୍ରକଳ୍ପରେ ଜଳ ବଣ୍ଟନ ପ୍ରଣାଳୀ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି । ଏଥି ସଙ୍ଗେ ଆଉ ୪୦୦ଟି ପ୍ରକଳ୍ପରେ ଡି. ଆର. ଡି. ଏ. ରୁ ମିଳିଥିବା ଅର୍ଥ ବିନିଯୋଗ କରି ବଣ୍ଟନ ପ୍ରଣାଳୀ ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରାଯାଉଛି । ଏହାଦ୍ୱାରା ୨୦,୦୦୦ ହେକ୍ଟର ଅଧିକ ଜମି ଜଳସେଚିତ ହେବ ବୋଲି ଅଟକଳ କରାଯାଇଛି । ସୁସଂହତଭାବେ ଉଠା ଜଳସେଚନ ବିକାଶ ପାଇଁ ଏ ପ୍ରକାର ବ୍ୟାପକ କାର୍ଯ୍ୟକ୍ରମ ଏହା ପୂର୍ବରୁ କେବେ ହାତକୁ ନିଆଯାଇ ନଥିଲା ।

ଏହି ପରିପ୍ରେକ୍ଷୀରେ ରବି ଋତୁରେ କାର୍ଯ୍ୟକ୍ରମଠାରୁ ଆହୁରି ଅଧିକ ଯୋଜନା ଖୋଲା କରାଯିବା ପାଇଁ ମଧ୍ୟ ଚେଷ୍ଟା କରାଯାଉଛି ଓ ମୋଟ ପ୍ରାୟ ୯,୦୦୦ଟି ଯୋଜନା ଖୋଲା ହେବାର ସମ୍ଭାବନା ଅଛି । ଖରିଫ୍ ଋତୁରେ କୃଷୀମାନଙ୍କୁ ଯେଉଁ ସୁବିଧାସୁଯୋଗ ଦିଆଯାଇଛି ସେ ସମସ୍ତ ସୁବିଧାସୁଯୋଗ ରବି ଋତୁରେ ମଧ୍ୟ ଦେବା ପାଇଁ ସରକାର ବିଚାର କରୁଛନ୍ତି । ତେବେ ଉଠା ଜଳସେଚନ ପ୍ରକଳ୍ପରୁ ପାଣି ମିଳିବା ଏକ ବ୍ୟୟ ସାପେକ୍ଷ ବ୍ୟବସ୍ଥା । ରକ୍ଷଣାବେକ୍ଷଣ ଖର୍ଚ୍ଚ, ବିଦ୍ୟୁତ୍ ମାସୁଲ, ଡ୍ରାଇଭର ଦରମା ଇତ୍ୟାଦି ହିସାବକୁ ନେଇ ଯେତିକି ଖର୍ଚ୍ଚ କରାଯାଉଛି, ତାର ପ୍ରାୟ ଏକ ଦଶମାଂଶ ଜଳକରରୂପେ ଧାର୍ଯ୍ୟ କରାଯାଉଛି । ଏଣୁ ଏ କ୍ଷେତ୍ରରେ ଯଦି କୃଷୀମାନେ ସହଯୋଗ ନ କରନ୍ତି, ଅଗ୍ରୀମ ଜଳକର ଦେବା ଦିଗରେ ଆଗ୍ରହ ପ୍ରକାଶ ନକରନ୍ତି, ଓ ବହୁଳ ପରିମାଣରେ ବକେୟା ଜଳକର ଅନାଦାୟ ହୋଇ ପଡ଼ିରହେ ତେବେ ଉଠାଜଳସେଚନ ବ୍ୟବସ୍ଥାର ପ୍ରସାର ଦିଗରେ ଅଧିକ ସଫଳ ପଦକ୍ଷେପ ନେବା ବାଧାପ୍ରାପ୍ତ ହେବ ।

ଅଧ୍ୟକ୍ଷ ତଥା ପରିଚାଳନା ନିର୍ଦ୍ଦେଶକ
ଉଠା ଜଳସେଚନ ନିଗମ, ଭୁବନେଶ୍ୱର

—ସେହି ପ୍ରକୃତ ଭାରତୀୟ, ଯେ ତା'ର ଦେଶକୁ ବିଭିନ୍ନ ଧର୍ମ ସଂପ୍ରଦାୟର ଏକ ଉଦାର ସମନ୍ୱୟ ଭୂମିବୋଲି ଗର୍ବକରେ । ଧର୍ମ ସଂପର୍କରେ ଯାହା ସତ୍ୟ, ଭାଷା ଓ ବିଭିନ୍ନ ଭାଷାଭାଷୀ ରାଜ୍ୟମାନଙ୍କ କ୍ଷେତ୍ରରେ ତାହା ମଧ୍ୟ ସତ୍ୟ ।

# ମରୁଡ଼ି ପରିସ୍ଥିତିରେ ଦାରିଦ୍ର୍ୟ ଦୂରୀକରଣ ଯୋଜନାର ବିଶେଷ ଭୂମିକା

ଶ୍ରୀ ଅଜିତ କୁମାର ତ୍ରିପାଠୀ

ଏ ବର୍ଷ ଓଡ଼ିଶାରେ ଏକ ଅଭୂତପୂର୍ବ ମରୁଡ଼ି ପରିସ୍ଥିତି ଦେଖାଦେଇଛି । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାର ବର୍ଗଙ୍କୁ ଏହା ବିଶେଷ ଭାବେ ବାଧିବ । ବିଲବାଡ଼ିରେ କାମ କମିଯାଇଛି । ମୂଲ ମିଳିବା ଆସନ୍ତା ବର୍ଷ ପର୍ଯ୍ୟନ୍ତ ନିଶ୍ଚିତ ଭାବେ ଦୁର୍ଲଭ ହେବ । କ୍ଷୁଦ୍ର ଚାଷୀ, ନାମମାତ୍ର ଚାଷୀ ଓ ଭୂମିହୀନ କୃଷି ଶ୍ରମିକମାନେ ଫସଲ ହାନି ଯୋଗୁଁ ବିଶେଷ ଭାବେ କ୍ଷତିଗ୍ରସ୍ତ ହେବେ । ଗ୍ରାମାଞ୍ଚଳରେ ସାଧାରଣ କ୍ରୟ କ୍ଷମତା ହ୍ରାସ ହେବାରୁ ଗ୍ରାମ୍ୟ କାରିଗରମାନଙ୍କର ମଧ୍ୟ ଜୀବିକା ନିର୍ବାହ କଷ୍ଟକର ହେବ । ସେହିଭଳି ଗ୍ରାମାଞ୍ଚଳର କ୍ଷୁଦ୍ର ବ୍ୟବସାୟୀମାନେ ଯେଉଁମାନେ ଧାନ ଚାଉଳ ଓ ଅନ୍ୟାନ୍ୟ କୃଷିଜାତ ଦ୍ରବ୍ୟ ଓ ପନିପରିବା ବିକ୍ରୟକରି ଜୀବିକା ନିର୍ବାହ କରନ୍ତି ସେମାନେ ମଧ୍ୟ ଏହିସବୁ ବେପାରରୁ ଯଥେଷ୍ଟ ଆୟ କରିପାରିବେ ନାହିଁ ।

ଓଡ଼ିଶାରେ ଯେଉଁ ଦାରିଦ୍ର୍ୟ ଦୂରୀକରଣ ଯୋଜନାଗୁଡ଼ିକ କାର୍ଯ୍ୟକାରୀ କରାଯାଉଛି ସେଗୁଡ଼ିକ ହେଲ, (ଆଇ. ଆର. ଡି.) ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା, ଗ୍ରାମ୍ୟ ଦରିଦ୍ରଙ୍କ ଅର୍ଥନୈତିକ ଉତ୍ଥାନ (ଇ. ଆର. ଆର. ପି.), ଜାତୀୟ ଗ୍ରାମାଞ୍ଚଳ ନିଯୁକ୍ତି କାର୍ଯ୍ୟକ୍ରମ ଓ ଗ୍ରାମ୍ୟ ଭୂମିହୀନ ନିଯୁକ୍ତି ନିର୍ଭରଣ କାର୍ଯ୍ୟକ୍ରମ (ଆର. ଏଲ୍. ଇ. ଜି. ପି.) । ଆଇ. ଆର. ଡି. କାର୍ଯ୍ୟକ୍ରମରେ ଷଷ୍ଠ ଯୋଜନାରେ ଯେଉଁ ପରିବାରମାନଙ୍କୁ ଯଥେଷ୍ଟ ପରିମାଣର ସାହାଯ୍ୟ ଦିଆଯାଇ ପାରି ନ ଥିବାରୁ ସେମାନେ ଦାରିଦ୍ର୍ୟ ସୀମାରେଖା ଅତିକ୍ରମ କରି ନାହାନ୍ତି, ସେମାନଙ୍କୁ ଦ୍ୱିତୀୟ ଦଫା ସାହାଯ୍ୟ ଦିଆଯାଉଛି । ଯେଉଁମାନେ ଋଣ ପରିଶୋଧରେ ଇଚ୍ଛାକୃତ ଭାବେ ଖିଲାପ କରିନାହାନ୍ତି ଏବଂ ଧନର ସଂପତ୍ତିକୁ ହସ୍ତାନ୍ତର କରିନାହାନ୍ତି ସେମାନେ ଏହି ଦ୍ୱିତୀୟ ଦଫା ସାହାଯ୍ୟ ପାଇବାକୁ ଯୋଗ୍ୟ ବିବେଚିତ ହେବେ । ମରୁଡ଼ିରେ ବ୍ୟାପକ ଫସଲହାନି ହେବା ଦୃଷ୍ଟିରୁ ଋଣ ପରିଶୋଧ କ୍ଷମତା ଏ ବର୍ଷ ନିଶ୍ଚିତ ଭାବେ ହ୍ରାସ ପାଇଛି । ତେଣୁ ସଂପୂର୍ଣ୍ଣ ଋଣ ପରିଶୋଧ ଉପରେ ଯୋର ନ ଦେଇ ଦ୍ୱିତୀୟ ଦଫା ସାହାଯ୍ୟ ଦେବାପାଇଁ ବ୍ୟାଙ୍କମାନଙ୍କୁ ପଚରା ଯାଉଛି ଏବଂ ଏଥିପାଇଁ ଜିଲ୍ଲା ସ୍ତରୀୟ ବ୍ୟାଙ୍କ ମ୍ୟାନେଜରମାନଙ୍କ ସମନ୍ୱୟ କମିଟିର ବିଶେଷ ବୈଠକ ଡକାଯାଇ ମରୁଡ଼ି ପରିସ୍ଥିତି ଓ ଦ୍ୱିତୀୟ ଦଫା ସାହାଯ୍ୟ ବିଷୟ ଆଲୋଚନା କରାଯାଉଛି । ଦ୍ୱିତୀୟ ଦଫା ସାହାଯ୍ୟ ପ୍ରଦାନରେ ଧାର୍ଯ୍ୟ ଲକ୍ଷ୍ୟ ଯେଉଁଠାରେ ମରୁଡ଼ି ଜନିତ ପରିସ୍ଥିତି ଯୋଗୁଁ ହାସଲ ନ ହୋଇ ପାରିବ ସେଠାରେ ଆଇ. ଆର. ଡି. ପ୍ରଥମ ଦଫା ସାହାଯ୍ୟ ଧାର୍ଯ୍ୟ ଲକ୍ଷ୍ୟଠାରୁ ବେଶୀ ସଂଖ୍ୟାରେ ଦିଆଯାଇ ପାରିବ ବୋଲି ନିର୍ଦ୍ଦେଶ ଦିଆଯାଉଛି । ରାଜ୍ୟ ସ୍ତରୀୟ ବ୍ୟାଙ୍କ ସମନ୍ୱୟ କମିଟିର ଏକ ବିଶେଷ ବୈଠକ ବସି ଏ ବିଷୟରେ ସବିସ୍ତୃତ ଆଲୋଚନା କରାଯାଉଛି ।

୧୯୮୭ ମସିହାରେ ଯେଉଁ ଅସହାୟ ଓ ଦୁସ୍ଥ ପରିବାରମାନଙ୍କ ବାର୍ଷିକ ଆୟ ୧୨୦୦ ଟଙ୍କାରୁ ମଧ୍ୟ କମ୍ ସେମାନଙ୍କୁ ବିନା ବ୍ୟାଙ୍କ ଋଣରେ ଇ. ଆର. ଆର. ପି. କାର୍ଯ୍ୟକ୍ରମରେ ସହାୟତା ଦିଆଯାଉଛି । କୌଣସି ବ୍ୟାଙ୍କ ନ ଥିବା ଗ୍ରାମପଞ୍ଚାୟତଗୁଡ଼ିକରେ ଏବଂ ସମବାୟ ସମିତିଗୁଡ଼ିକ ଖିଲାପ ହୋଇଯାଇଥିବା ଅଞ୍ଚଳଗୁଡ଼ିକରେ ଏହି ଯୋଜନାରେ ଦାରିଦ୍ର୍ୟ ସୀମାରେଖା ତଳେଥିବା ଦୁଃସ୍ଥ ଓ ଅସହାୟ ପରିବାରମାନଙ୍କୁ ଏହି ସାହାଯ୍ୟ ବିଶେଷ ସହାୟକ ହେଉଛି ଏବଂ ଏଥିରେ ପ୍ରକଳ୍ପ ଖର୍ଚ୍ଚ ଅଟକଳର ଶତକଡ଼ା ପଞ୍ଚସ୍ତରୀ ଭାଗ ଛାଡ଼ ଦିଆଯାଉଛି । ବାକୀ ପଚିଶ ଭାଗ ହିତାଧିକାରୀ ନିଜ ପରିଶ୍ରମ ବା ନିଜ ଉଦ୍ୟମରେ ଯୋଗାଡ଼ କରୁଛନ୍ତି ଏବଂ ସେମାନଙ୍କୁ ଋଣଗ୍ରସ୍ତ ହେବାକୁ ପଡ଼ୁନାହିଁ । ମରୁଡ଼ି ପରିସ୍ଥିତି ଦୃଷ୍ଟିରୁ ଏଭଳି ସାହାଯ୍ୟ ବିଶେଷ ମରୁଡ଼ି ଗ୍ରସ୍ତ ବ୍ଲକଗୁଡ଼ିକରେ ଅଗ୍ରାଧିକାର ଭିତ୍ତିରେ ଦେବାପାଇଁ ନିର୍ଦ୍ଦେଶ ଦିଆଯାଇଛି ।

ଜାତୀୟ ଗ୍ରାମାଞ୍ଚଳ କର୍ମ ନିଯୁକ୍ତି ଯୋଜନାରେ ଗ୍ରାମାଞ୍ଚଳରେ ଗୋଷ୍ଠିଗତ ସ୍ଥାୟୀ ସଂପତ୍ତି ସୃଷ୍ଟି କରାଯିବା ସଙ୍ଗେ ସଙ୍ଗେ କର୍ମଯୋଗାଣ ପାଇଁ ପ୍ରଶସ୍ତ ସୁବିଧା ସୃଷ୍ଟି କରାଯାଇଛି । ଗ୍ରାମାଞ୍ଚଳରେ ମରୁଡ଼ି ପରିସ୍ଥିତିରେ ନିମ୍ନତମ ମଜୁରୀ ମିଳେ ନାହିଁ ଏବଂ ଅର୍ଥ ମିଳିଲେ ମଧ୍ୟ ଖାଦ୍ୟଶସ୍ୟ

ମିଳେ ନାହିଁ । ଏହି ଯୋଜନାକୁ ବ୍ୟାପକ ଭାବେ କାର୍ଯ୍ୟକାରୀ କରାଯାଇ ମଜୁରୀର ଅଂଶ ଭାବେ ଚାଉଳ ଓ ଗହମ ଦୁଇ କେଜି ଲେଖାଏଁ ... ଦିଆଯାଉଛି ଏବଂ ଗ୍ରାମାଞ୍ଚଳରେ ନିମ୍ନତମ ମଜୁରୀର ହାର କିଭଳି କମି ନ ଯାଏ ତା, ପ୍ରତି ଦୃଷ୍ଟି ଦିଆଯାଉଛି । ଗ୍ରାମସେବକମାନେ କାର୍ଯ୍ୟ ସ୍ଥାନକୁ ନିୟମିତ ଭାବେ ଯାଇ ଶ୍ରମିକମାନଙ୍କୁ ଅନ୍ତତଃ ନିମ୍ନତମ ମଜୁରୀ ମିଳୁଛି କି ନାହିଁ ଏବଂ ସେମାନେ ମଜୁରୀର କିଛି ଅଂଶ ଖାଦ୍ୟ ଶସ୍ୟ ରୂପେ ପାଉଛନ୍ତି କି ନାହିଁ ଦେଖିବାକୁ କୁହାଯାଇଛି । ଅଳ୍ପ କ୍ଷତିଗ୍ରସ୍ତ ବ୍ଲକ୍‌ଗୁଡ଼ିକୁ ଏନ୍. ଆର. ଇ. ପି. ଅର୍ଥ ଓ ଖାଦ୍ୟ ଶସ୍ୟ କମ୍ ପରିମାଣରେ ଯୋଗାଇ, ବିଶେଷ କ୍ଷତିଗ୍ରସ୍ତ ବ୍ଲକ୍‌ଗୁଡ଼ିକୁ ଅଧିକ ଅର୍ଥ ଦେବାପାଇଁ ଜିଲ୍ଲାପାଳମାନଙ୍କୁ କ୍ଷମତା ଦିଆଯାଇଛି । ମରୁଡ଼ି ପରିସ୍ଥିତି ଯେଉଁଠାରେ ଅତି ଉତ୍କଟ ସେଠାରେ କାମଧନ୍ଦା ପାଇବା ପାଇଁ ଲୋକମାନଙ୍କର ଆବଶ୍ୟକତା ଓ ଦାବୀ ମଧ୍ୟ ଅଧିକ । ତେଣୁ ଅଧିକ ଶ୍ରମଦିବସ ସୃଷ୍ଟି କରିପାରୁଥିବା ଭଳି କାର୍ଯ୍ୟ ସେଠାରେ ବେଶୀ ସଂଖ୍ୟାରେ ନିଆଯିବା ଆବଶ୍ୟକ । ପୂର୍ବରୁ ଏନ୍. ଆର. ଇ. ପି. ରେ ମିଳୁଥିବା ଅର୍ଥକୁ ବ୍ଲକ୍ ପିଛା ସମାନ ଭାବରେ ବଣ୍ଟା ହୋଇ ଯାଉଥିଲା, ଏବେ ଅଞ୍ଚଳର ଆବଶ୍ୟକତା ଓ ଖର୍ଚ୍ଚର ଗତି ଓ ପରିମାଣକୁ ଦୃଷ୍ଟି ରଖି ଜିଲ୍ଲାପାଳ ବ୍ଲକ୍ ପିଛା ଅର୍ଥକୁ କମ୍ ବା ବେଶୀ ମଧ୍ୟ କରିପାରିବେ । ମରୁଡ଼ି ପରିସ୍ଥିତି ସମ୍ଭାଳିବା ପାଇଁ ଏହା ଜିଲ୍ଲାପାଳମାନଙ୍କୁ ନିଶ୍ଚିତ ଭାବରେ ସହାୟକ ହେବ । ଅଧିକନ୍ତୁ ଅଧିକ ଶ୍ରମ ଭିତ୍ତିକ କାର୍ଯ୍ୟ ହାତକୁ ନେବାପାଇଁ ଜିଲ୍ଲାମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ଏବଂ ଯେଉଁଠାରେ ବାର୍ଷିକ ଡିଠା ଯୋଜନାରେ ବେଶୀ ସଂଖ୍ୟକ ଅନୁଷ୍ଠାନ ଗୃହ ନିର୍ମାଣ କାର୍ଯ୍ୟକ୍ରମ ଥିଲା ସେଠାରେ ତାକୁ ପରିବର୍ତ୍ତନ କରାଯାଇ ଜଳସେଚନ ଓ ରାସ୍ତାକାମ ଇତ୍ୟାଦିକୁ ଅଗ୍ରାଧିକାର ଦିଆଯାଇଛି ।

ଆର. ଏଲ୍. ଇ. ଜି. ପି. କାର୍ଯ୍ୟକ୍ରମ ଭାରତ ସରକାରଙ୍କ ସଂପୂର୍ଣ୍ଣ ନିଜସ୍ୱ କାର୍ଯ୍ୟକ୍ରମ । ଏଥିରେ ଶତକଡ଼ା ଶହେଭାଗ ଖର୍ଚ୍ଚ ଭାରତ ସରକାର ବହନ କରନ୍ତି । ଏହି କାର୍ଯ୍ୟକ୍ରମ ଜରିଆରେ ଜଳସେଚନ, ଗ୍ରାମାଞ୍ଚଳ ରାସ୍ତାନିର୍ମାଣ, ସାମାଜିକ ବନୀକରଣ, ବିଦ୍ୟାଳୟ ଗୃହ ନିର୍ମାଣ ଆଦି ଅନେକ କାର୍ଯ୍ୟ ହାତକୁ ନିଆଯାଇଛି । ବିଶେଷ ମରୁଡ଼ି ଗ୍ରସ୍ତ ଅଞ୍ଚଳକୁ ଆଖିରେ ରଖି ପାର୍ବତ୍ୟ ଅଞ୍ଚଳରେ ଅଧିକ ରାସ୍ତା ନିର୍ମାଣ କାର୍ଯ୍ୟ କୋରାପୁଟ, କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲାରେ ହାତକୁ ନିଆଯାଇଛି ଏବଂ ଏଥିପାଇଁ ବ୍ୟୟ ବରାଦ କରାଯାଇଛି । ଅନ୍ୟାନ୍ୟ ବର୍ଷ ତୁଳନାରେ ଏନ୍. ଆର. ଇ. ପି. ଓ ଆର. ଏଲ୍. ଇ. ଜି. ପି. କାର୍ଯ୍ୟକ୍ରମଗୁଡ଼ିକରେ ଏ ବର୍ଷ ଖର୍ଚ୍ଚର ପରିମାଣ ଅଧିକ ସନ୍ତୋଷଜନକ ହୋଇ ପାରିଛି ଏବଂ ମରୁଡ଼ି ଗ୍ରସ୍ତ ଅଞ୍ଚଳଗୁଡ଼ିକରେ ଲୋକଙ୍କୁ କାମଧନ୍ଦା ଯୋଗାଇବାରେ ସହାୟକ ହୋଇ ପାରିଛି ।

"କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ କୃଷି ଉତ୍ପାଦନ ବୃଦ୍ଧି ନିମନ୍ତେ ସହାୟତା" କାର୍ଯ୍ୟକ୍ରମରେ ତୈଳବୀଜ, ଡାଲି ଜାତୀୟ ଶସ୍ୟ ଓ ମକା ବାଜରା ଆଦି ଶସ୍ୟର ମିନିକିଟ୍ ବଣ୍ଟନ, ଭୂଉନ୍ନୟନ ଓ କ୍ଷୁଦ୍ରଜଳସେଚନ କାର୍ଯ୍ୟ ଗ୍ରାମାଞ୍ଚଳରେ ହାତକୁ ନିଆଯାଉଥାଏ । ଏ ବର୍ଷ ମରୁଡ଼ି ପରିସ୍ଥିତି ଦୃଷ୍ଟିରୁ ରବି ଫସଲ ପାଇଁ ଅଧିକ ମିନିକିଟ୍ ବଣ୍ଟନ କରିବାପାଇଁ ଏବଂ ଦରକାରସ୍ଥଳେ ଭୂଉନ୍ନୟନ ପାଇଁ ଖର୍ଚ୍ଚ ନ ହୋଇ ଗଚ୍ଛିତ ଥିବା ଅର୍ଥ ଏଦିଗରେ ଖର୍ଚ୍ଚ କରିବା ପାଇଁ ଭାରତ ସରକାରଙ୍କଠାରୁ ଅନୁମତି ଆଣି ନିର୍ଦ୍ଦେଶ ଦିଆଯାଇଛି । ଜଳ ଅମଳ ପ୍ରକଳ୍ପ ଦ୍ୱାରା ଉଭୟ ମୃତ୍ତିକା ସଂରକ୍ଷଣ ଓ କ୍ଷୁଦ୍ର ଜଳସେଚନ ସଂଭବପର ହୋଇଥାଏ । ଭୂଉନ୍ନୟନ ପାଇଁ ଆସିଥିବା ଅର୍ଥରେ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ପାଇଁ ଅଧିକରୁ ଅଧିକ ଜଳ ଅମଳ ପ୍ରକଳ୍ପ ହାତକୁ ନେବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ସେହିପରି ଅଞ୍ଚଳର ଆବଶ୍ୟକତା ଓ ଉପକୃତ ହେବାକୁ ଥିବା କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ସଂଖ୍ୟାକୁ ଆଖିରେ ରଖି କ୍ଷୁଦ୍ର ଜଳସେଚନ ପାଇଁ ଉଦ୍ଦିଷ୍ଟ ଅର୍ଥରେ ଉଠା ଜଳସେଚନ ପ୍ରକଳ୍ପ ବ୍ୟତୀତ ଅନ୍ୟାନ୍ୟ ଅନେକ କ୍ଷୁଦ୍ର ଜଳସେଚନ ଯୋଜନା ମଧ୍ୟ ନିଆଯାଉ ବୋଲି ନିର୍ଦ୍ଦେଶ ଦିଆଯାଇଛି । ଦରକାର ହେଲେ ବ୍ଲକ ପିଛା ଜଳସେଚନ ପାଇଁ ଉଦ୍ଦିଷ୍ଟ ଅର୍ଥକୁ ଏକାଠି କରି ଏହି କାର୍ଯ୍ୟକ୍ରମରେ ଓ ଆଇ. ଆର. ଡି,ରେ ମଧ୍ୟ ମରୁଡ଼ିଗ୍ରସ୍ତ ଅଞ୍ଚଳଗୁଡ଼ିକରେ ପର୍ଯ୍ୟାପ୍ତ ସଂଖ୍ୟାର ଉଠା ଜଳସେଚନ ପ୍ରକଳ୍ପ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ସହାୟତା ପାଇଁ ହାତକୁ ନିଆଯାଇ ପାରିବ ବୋଲି ନିର୍ଦ୍ଦେଶ ଦିଆଯାଇଛି ।

ମରୁଡ଼ି ପରିସ୍ଥିତିରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରଗୁଡ଼ିକର ଆର୍ଥିକ ଅବସ୍ଥା ଆହୁରି ଶୋଚନୀୟ ହୋଇଯାଏ । ତେଣୁ ସେମାନଙ୍କ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମର ସୁଫଳ ଯେପରି ସେମାନଙ୍କ ପାଖରେ ଠିକ୍ ଭାବେ ପହଞ୍ଚେ ଏହା ତଦାରଖ କରି ଦେଖିବା ପାଇଁ କଡ଼ା ନିର୍ଦ୍ଦେଶ ଦିଆଯାଇଛି । ଏହି କାର୍ଯ୍ୟକ୍ରମଗୁଡ଼ିକରେ ଅନ୍ତର୍ଭୁକ୍ତ ହୋଇଥିବା ପରିବାରମାନଙ୍କୁ ଛୋଟ ଛୋଟ ଦଳରେ ସମୂହଭାବେ ନିୟମିତ ଗ୍ରାମ ପଞ୍ଚାୟତ ସ୍ତରରେ ଭେଟିବା ପାଇଁ ଏବଂ ସେମାନଙ୍କର ସୁବିଧା ଅସୁବିଧା ବୁଝିବା ପାଇଁ ସମସ୍ତ ଗ୍ରାମସେବକ, ସଂପ୍ରସାରଣ ଅଫିସର, ବି. ଡ଼ି. ଓ., ଏସ୍. ଡି. ଓ., ଜିଲ୍ଲାପାଳ ଓ ପ୍ରୋଜେକ୍ଟ ଅଫିସର, ଡ଼ି. ଆର. ଡ଼ି. ଏ.କୁ ନିର୍ଦ୍ଦେଶ ଦିଆଯାଇଛି । ପ୍ରତି ଡ଼ି. ଆର. ଡ଼ି. ଏ. ରେ ଅଭିଯୋଗ ପ୍ରକୋଷ୍ଠ ଖୋଲାଯାଇଛି ଏବଂ ଅତିରିକ୍ତ ପ୍ରୋଜେକ୍ଟ ଅଫିସରମାନଙ୍କୁ ଏହାର ସ୍ୱତନ୍ତ୍ର ଦାୟିତ୍ୱରେ ରଖାଯାଇଛି । ବ୍ଲକ ସ୍ତରୀୟ ବ୍ୟାଙ୍କ ସମନ୍ୱୟ କମିଟି ନିୟମିତ ଭାବେ ପ୍ରତି ମାସରେ ବସୁଛି । ଏମ୍. ଏଲ୍. ଏ.ମାନଙ୍କ ଅଧ୍ୟକ୍ଷତାରେ ବ୍ଲକ ସ୍ତରୀୟ ବିଂଶସୂତ୍ରୀୟ କାର୍ଯ୍ୟକ୍ରମର ସମୀକ୍ଷା କରିବାପାଇଁ ଏକ କମିଟି ଗଠନ କରାଯାଇଛି । ଏହାଛଡ଼ା ରାଜ୍ୟ ମନ୍ତ୍ରୀମଣ୍ଡଳର ମନ୍ତ୍ରୀବୃନ୍ଦ ମଧ୍ୟ ନିୟମିତ ଭାବେ ବ୍ଲକକୁ ଯାଇ ବ୍ଲକ ସ୍ତରରେ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଓ ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ନିଆଯାଇଥିବା କାର୍ଯ୍ୟକ୍ରମର ସମୀକ୍ଷା କରୁଛନ୍ତି । କିନ୍ତୁ ମରୁଡ଼ିର ପ୍ରକୃତ ଓ ସଫଳ ମୁକାବିଲା ଜନସାଧାରଣଙ୍କର ଦୃଢ଼ ମନୋବଳ ଓ ସଂକଳ୍ପ ଉପରେ ନିର୍ଭର କରେ ।

ନିର୍ଦ୍ଦେଶକ, ସ୍ୱତନ୍ତ୍ର ପ୍ରକଳ୍ପ,
ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗ ।

# ଓଡ଼ିଶାରେ ବ୍ୟାପକ ରବି କାର୍ଯ୍ୟକ୍ରମ

ଡ଼ଃ ରବି ନାରାୟଣ ମହାନ୍ତି

ଚଳିତ ବର୍ଷ ବର୍ଷାଦିନେ ଅନିୟମିତ ଏବଂ ସ୍ୱଳ୍ପ ବର୍ଷା ଯୋଗୁଁ ଖରିଫ ଚାଷରୁ ଆଶାନୁରୂପ ଅମଳ ପାଇବା ସମ୍ଭବ ହେବ ନାହିଁ । କାରଣ ଆମ ରାଜ୍ୟର ଚାଷ ବାସ ବିଶେଷ ଭାବେ ବର୍ଷା ଉପରେ ନିର୍ଭର କରିଥାଏ । ଖରିଫ୍ ଋତୁର ଶେଷ ଆଡ଼କୁ ଅର୍ଥାତ୍ ସେପ୍ଟେମ୍ବର ଅକ୍ଟୋବର ମାସରେ ରାଜ୍ୟର ବ୍ୟାପକ ଅଞ୍ଚଳରେ ବର୍ଷା ହୋଇ ଯାଇଛି । ଏଣୁ ମରୁଡ଼ି ଜନିତ ଖରିଫ ଫସଲର ଅମଳ ଭରଣା କରିବା ସଙ୍ଗେ ସଙ୍ଗେ ଆସନ୍ତା ଖରିଫ୍ ଋତୁରେ ବିହନ ଚାହିଦା ମେଣ୍ଟାଇବା ପାଇଁ ଏ ବର୍ଷର ରବି ଚାଷ ଖୁବ୍ ଗୁରୁତ୍ୱ ପୂର୍ଣ୍ଣ । ରାଜ୍ୟର ବ୍ୟାପକ ଅଞ୍ଚଳରେ ସଂପ୍ରତି ବର୍ଷା ହୋଇ ଯାଇଥିବାରୁ ଏହାର ଉପଯୋଗ ଓ ସୀମିତ ଜଳସେଚନ ସୁବିଧାର ବହୁଳ ବିନିଯୋଗ ଉପରେ ଏହାର ସଫଳତା ବିଶେଷ ଭାବେ ନିର୍ଭର କରୁଥିବାରୁ ରାଜ୍ୟ ସରକାର ଏକ ବାସ୍ତବମୁଖୀ ବ୍ୟାପକ ରବି କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛନ୍ତି ।

ମରୁଡ଼ି ଜନିତ ଖରିଫ୍ ଫସଲ ଉତ୍ପାଦନର ଭରଣା କରିବା ସଙ୍ଗେ ସଙ୍ଗେ, ଗତ ରବି ଋତୁଠାରୁ ଅଧିକ ଉତ୍ପାଦନ ହାସଲ କରିବା, ଚଳିତ ରବି କାର୍ଯ୍ୟକ୍ରମର ଲକ୍ଷ୍ୟ ।

**ଚଳିତ ରବି ଉତ୍ପାଦନ ଲକ୍ଷ୍ୟ :**

ଚାଉଳ– ୪.୭୫ ଲକ୍ଷ ମେଟ୍ରିକ ଟନ୍
ଗହମ– ୧.୭୩ " " "
ଅନ୍ୟାନ୍ୟ ଶସ୍ୟ–୦.୪୧ " "
ଡାଲି– ୭.୭୩ " "
ମୋଟ ଖାଦ୍ୟ ଶସ୍ୟ– ୧୪.୬୨ ଲକ୍ଷ ମେଟ୍ରିକ୍ ଟନ୍
ତୈଳବୀଜ– ୫.୧୪
ଆଖୁ (ଗୁଡ)–୩.୮୫ " "
କନ୍ଦମୂଳ– ୧.୫୪ " "
ଆଳୁ– ୩.୭୪
ଅନ୍ୟାନ୍ୟ ପନିପରିବା– ୨୬.୧୯
ମସଲା– ୫.୪୬
ଅନ୍ୟାନ୍ୟ ଫସଲ–୦.୧୨
ମୋଟ ରବି ଉତ୍ପାଦନ–୬୦.୫୬

ମୋଟ ୨୧.୮୪ ଲକ୍ଷ ହେକ୍ଟର ଜମିରେ ବିଭିନ୍ନ ପ୍ରକାର ଫସଲ ଚାଷ କରାଯାଇ ଏହି ଲକ୍ଷ୍ୟ ହାସଲ କରାଯିବ ।

**ରବି ଉତ୍ପାଦନର ଆଭିମୁଖ୍ୟ :**

ରବି ଉତ୍ପାଦନର ଲକ୍ଷ୍ୟ ହାସଲ ନିମନ୍ତେ କୃଷି ବିଭାଗ ତରଫରୁ ମାଟିର ବତରକୁ ଉପଯୋଗ କରିବା ପାଇଁ ବ୍ୟାପକ ଉଦ୍ୟମ କରାଯାଉଛି । କାରଣ ରବି ଋତୁରେ ଆମର ଜଳସେଚନ ସୁବିଧା ଖୁବ୍ କମ୍ ଏବଂ ଏ ବର୍ଷର ବର୍ଷା ପରିସ୍ଥିତି ଦୃଷ୍ଟିରୁ ଏହା ଆହୁରି ସୀମିତ ହୋଇ ଯିବାର ସମ୍ଭାବନା ରହିଛି । ଏହି ଦୃଷ୍ଟି ରୁ ବର୍ତ୍ତମାନ ନିମ୍ନ ଲିଖିତ ଉତ୍ପାଦନ କୌଶଳମାନ ଅବଲମ୍ବନ କରାଯାଉଛି ।

(କ) ମାଟିର ବତରକୁ ଉପଯୋଗ କରିବା ପାଇଁ କୁସୁମ, ଅଳସୀ, ରାଶି, ଚିନାବାଦାମ, ସୋରିଷ ଇତ୍ୟାଦି ତୈଳବୀଜ ଏବଂ ମୁଗ, ବିରି, ମଟର, ବୁଟ, କୋଳଥ ଇତ୍ୟାଦି ଡାଲି ଜାତୀୟ ଫସଲ ଚାଷର ବ୍ୟାପକ ବ୍ୟବସ୍ଥା କରାଯାଇଛି ।

(ଖ) ଧାନ ଅମଳର ୧୫–୨୦ ଦିନ ପୂର୍ବରୁ, ମାଟି କାଦୁଅ ଥିବା ଅବସ୍ଥାରେ ଲଘୁ ଓ ମଧ୍ୟମ ଧାନ ବିଲରେ ବିରି, ମୁଗ, ବୁଟ, ମଟର ପ୍ରଭୃତି 'ପିଆରା ଫସଲ' ଭାବେ ଚାଷ କରାଯାଉଛି ।

(ଗ) ପଟୁ ପଡୁଥିବା ନଈପଠା ଏବଂ ଦୋରସା-ମଟାଳ ଲଘୁ ଧାନ ଜମିରେ ଅଧିକ ଦିନ ବତର ରହିଥାଏ । ଏପ୍ରକାର ଜମିରେ ବ୍ୟାପକ ଭାବେ ଅଣଜଳସେଚିତ ଚିନାବାଦାମ ଚାଷ ପାଇଁ ବ୍ୟବସ୍ଥା ହୋଇଛି ।

ରାଜ୍ୟର ୩୧୪ ଟି ବ୍ଲକରେ ଛୋଟ ଛୋଟ ଚାଷୀମାନଙ୍କୁ ଏ ଦିଗରେ ଉତ୍ସାହିତ କରିବା ପାଇଁ ୫୧,୨୭୮ ଟି ବିହନ ପୁଡ଼ିଆ Omini kit ଯୋଗାଇ ଦିଆଗଲାଣି । ଫସଲର ଉତ୍ପାଦିକତା ଶକ୍ତି ବଢ଼ାଇବା ପାଇଁ ମିନିକିଟ୍ ପୁଡ଼ିଆ ସହିତ ସାର ଏବଂ କୀଟନାଶକ ଔଷଧ ମଧ୍ୟ ଆବଶ୍ୟକ ସ୍ଥଳେ ସାହାଯ୍ୟ କରାଯିବାର ବ୍ୟବସ୍ଥା ହୋଇଛି ।

**ଜଳ ସେଚିତ ଅଞ୍ଚଳ :**

(କ) ଫସଲର ବିଭିନ୍ନ ଅବସ୍ଥାରେ ଜଳସେଚନ ଆବଶ୍ୟକ । ତେଣୁ ଭବିଷ୍ୟତରେ ପାଣିର ପୂର୍ଣ୍ଣ ସଦୁପଯୋଗ କରାଯିବ । ଏହା ଦ୍ୱାରା ପାଣିର ଅଯଥା ଅପଚୟ ହେବ ନାହିଁ । ବରଂ, ଦରକାର ନଥିବା ବେଳେ କେନାଲ ମାଧ୍ୟମରେ ପାଣିକୁ ଛାଡ଼ି ଦିଆଗଲେ କେନାଲ ଶେଷମୁଣ୍ଡ ଜମିରେ ଅଧିକ ଫସଲ ଚାଷ କରାଯାଇ ପାରିବ ।

(ଖ) କେବଳ ଖାଲ ଜମିରେ ଡାଲୁଅ ଧାନ ଚାଷ କରାଯିବ । ଏହା ଫଳରେ ଜଳସେଚିତ ଢିପ ଓ ମଝିଆଳ ଜମିରେ ରବି ଋତୁରେ, ଆଳୁ କିମ୍ବା ଗହମ ଚାଷ କରି, ଆଳୁ ଓ ଗହମ ଅମଳ ପରେ ଖରାଦିନେ ମୁଗ

ବିରି, ରାଶି, ଚିନାବାଦାମ ଓ ପନିପରିବା ଚାଷ କରାଯାଇ ପାରିବ ।

(ଗ) କ୍ଷୁଦ୍ର ଓ ମଧ୍ୟମ ଜଳସେଚନ ଯୋଜନା ଗୁଡ଼ିକରୁ ସାଧାରଣତଃ, ସୀମିତ ଜମିକୁ ଓ ନିର୍ଦ୍ଦିଷ୍ଟ ସମୟ ପାଇଁ ପାଣି ମିଳିଥାଏ । ତେଣୁ ଏହି ଜମିରେ ଅଳ୍ପ ଦିନରେ ଅମଳ ହେଉଥିବା ଅଧିକ ଅମଳକ୍ଷମ ଓ ଅଳ୍ପ ପାଣି ଦରକାର କରୁଥିବା ମାଣ୍ଡିଆ, ଡାଲି, ଓ ତୈଳବୀଜ ପ୍ରଭୃତି ଫସଲ କରାଯିବ ।

(ଘ) ଖରିଫ୍ ଋତୁରେ କ୍ଷତିଗ୍ରସ୍ତ ହୋଇଥିବା ଶସ୍ୟ ଜାତୀୟ ଫସଲର ଭରଣା ପାଇଁ ଉଠାଜଳସେଚିତ ଅଞ୍ଚଳରେ ଗହମ, ମାଣ୍ଡିଆ ଇତ୍ୟାଦି ଚାଷ କରାଯିବ ।

(ଙ) ସେଚକୂପ ଓ ଆଡ଼ିବନ୍ଧ ପକାଇ ଜଳସେଚନ ସୁବିଧା ସୃଷ୍ଟି କରାଯାଇଥିବା ଜମିରେ ଅଳ୍ପ ପାଣି ଦରକାର କରୁଥିବା ସୋରିଷ, ମୁଗ, ବିରି, ମାଣ୍ଡିଆ ଇତ୍ୟାଦିର ବ୍ୟାପକ ଚାଷ କରାଯିବ ।

ଜଳସେଚନ ସୁବିଧା ସହିତ କୃଷି ସାମଗ୍ରୀର ଯୋଗାଣ ତଥା ଅନ୍ୟାନ୍ୟ ଆନୁଷଙ୍ଗିକ ବିଷୟ ପ୍ରତି ମଧ୍ୟ ଦୃଷ୍ଟି ଦିଆଯାଉଛି । ଚାଷୀଙ୍କୁ ଯଥା ସମ୍ଭବ ନିକଟରେ ବିହନ, ସାର ଓ ପୋକମରା ଔଷଧ କିମ୍ବା ଉନ୍ନତ କୃଷି ଯନ୍ତ୍ରପାତି ଯୋଗାଇ ଦେବାପାଇଁ ନିମ୍ନଲିଖିତ ବ୍ୟବସ୍ଥା ଗ୍ରହଣ କରାଯାଇଛି ।

(କ) ବିହନ—ବ୍ଲକ ସ୍ତରରେ ଖୋଲା ଯାଇଥିବା ବିହନ ବିକ୍ରୟ କେନ୍ଦ୍ର ମାଧ୍ୟମରେ, ଓଡ଼ିଶା ରାଜ୍ୟ ବିହନ ସଂସ୍ଥା ଚାଷୀମାନଙ୍କୁ ବିଭିନ୍ନ ଫସଲର ପରୀକ୍ଷିତ ଓ ଉନ୍ନତ ବିହନ ଯୋଗାଇ ଦେବ । ଚଳିତ ରବି ଋତୁ ପାଇଁ ମିନିକିଟ୍ ବିହନ ବ୍ୟତୀତ,

| | | |
|---|---|---|
| ୮,୦୦୦ | କୁଇଣ୍ଟାଲ | ଧାନ, |
| ୧୩,୫୦୦ | ,, | ଗହମ, |
| ୧୦୦ | ,, | ମକା, |
| ୨୦୦ | ,, | ମାଣ୍ଡିଆ, |
| ୨,୦୦୦ | ,, | ମୁଗ, |
| ୨,୦୦୦ | ,, | ବିରି, |
| ୧୦୦ | ,, | ହରଡ, |
| ୮୩୮ | ,, | ମଟର, |
| ୬୯୩ | ,, | ବୁଟ, |
| ୨୫,୦୦୦ | ,, | ଚିନାବାଦାମ, |
| ୩୧୫ | ,, | ରାଶି |
| ଏବଂ ୮୧୭ | ,, | ସୋରିଷ |

ବିହନ,

ଚାଷୀମାନଙ୍କୁ ଯୋଗାଇ ଦିଆଯାଉଛି ।

(ଖ) ସାର—ରାଜ୍ୟର ଚାଷୀମାନଙ୍କୁ ଉଚିତ ମୂଲ୍ୟରେ ସାର ଯୋଗାଇ ଦେବା ପାଇଁ ସମବାୟ ସମିତି, ରାଜ୍ୟ କୃଷି ଶିଳ୍ପନିଗମ ଏବଂ ଘରୋଇ ସଂସ୍ଥାମାନଙ୍କ ମାଧ୍ୟମରେ ସାର ବିକ୍ରୟର ବ୍ୟବସ୍ଥା କରାଯାଉଛି । ସାର ମୂଲ୍ୟ ଓ ପରିବହନ ଖର୍ଚ୍ଚ କମ୍ କରିବା ପାଇଁ ମୂଳସାର ଭାବେ ଅଧିକ ପରିମାଣର ଯୌଗିକ (Complex) ସାର ଯୋଗାଇ ଦେବା ପାଇଁ ଭାରତ ସରକାରଙ୍କୁ ଅନୁରୋଧ କରାଯାଉଛି । ଚଳିତ ରବି ଋତୁରେ, ନିମ୍ନୋକ୍ତ ପରିମାଣର ସାର ଚାଷୀମାନଙ୍କୁ ଯୋଗାଇ ଦିଆଯିବ ।

| | | |
|---|---|---|
| ଯବକ୍ଷାରଜାନ— | ୫୨,୦୦୦ | ମେଟ୍ରିକ୍ ଟନ୍ |
| ଫସ୍‌ଫରସ୍— | ୨୪,୦୦୦ | ,, |
| ପଟାସ— | ୧୪,୫୦୦ | ,, |
| ମୋଟ— | ୯୦,୫୦୦ | ମେଟ୍ରିକ୍ ଟନ୍ |

ସାର ଯୋଗାଣ ସଙ୍ଗେ ସଙ୍ଗେ, ଏହାର ସୁଷମ ଉପଯୋଗ ପାଇଁ କୃଷି କର୍ମଚାରୀଙ୍କ ମାଧ୍ୟମରେ ଚାଷୀମାନଙ୍କୁ ଶିକ୍ଷା ଦିଆଯାଉଛି । କାରଣ, ସାରର ସୁଷମଉପଯୋଗ ଉପରେ ହିଁ, ଫସଲର ଅମଳ ଓ ଲାଭ ନିର୍ଭର କରେ ।

ସମବାୟ ସମିତି, ରାଜ୍ୟ କୃଷି ଶିଳ୍ପ ନିଗମ ଏବଂ ଘରୋଇ ସଂସ୍ଥା ମାଧ୍ୟମରେ କୀଟନାଶକ ଔଷଧ ବିକ୍ରୟର ମଧ୍ୟ, ବ୍ୟବସ୍ଥା ହୋଇଛି ।

(ଗ) କୃଷି ଯନ୍ତ୍ରପାତି—ଉପଯୁକ୍ତ ଜମି ପ୍ରସ୍ତୁତି ଉପରେ ପାଣିର ସଦୁପଯୋଗ ବିଶେଷ ନିର୍ଭର କରେ । କାରଣ, ଜମି ସମତଳ ରହିଲେ ପାଣି ଓ ସାରର ଉପଯୁକ୍ତ ବିନିଯୋଗ ହେବା ସଙ୍ଗେ ସଙ୍ଗେ, ଘାସ କମିଯାଏ । ଏଣୁ, ଘାସ ଯୋଗୁ ପାଣି ନଷ୍ଟ ହୁଏ ନାହିଁ ।

ଏଥିପାଇଁ କୃଷି ଯନ୍ତ୍ରପାତି ପ୍ରଦର୍ଶନ ମାଧ୍ୟମରେ ଚାଷୀଙ୍କମଧ୍ୟରେ ଆଗ୍ରହ ସୃଷ୍ଟି କରିବା ସଙ୍ଗେ ସଙ୍ଗେ, ରାଜ୍ୟ କୃଷି ଶିଳ୍ପ ନିଗମ ଏବଂ ସହକାରୀ କୃଷି ଯନ୍ତ୍ରୀଙ୍କ ମାଧ୍ୟମରେ ଏଗୁଡ଼ିକର ବିକ୍ରୟ ବ୍ୟବସ୍ଥା କରାଯାଉଛି । ଆବଶ୍ୟକ ସ୍ଥଳେ, ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ କୃଷି ଯନ୍ତ୍ରପାତିଗୁଡ଼ିକୁ ରିହାତି ଦରରେ ମଧ୍ୟ ବିକ୍ରୟ କରାଯିବ ।

(ଘ) କୃଷି ଋଣ—ଆମର ଅଧିକାଂଶ ଚାଷୀ, କ୍ଷୁଦ୍ର ବା ନାମମାତ୍ର ଚାଷୀ ସମ୍ବଳ ଅଭାବରୁ ବ୍ୟୟସାପେକ୍ଷ ଉନ୍ନତ ଚାଷ ପ୍ରଣାଳୀ ଗ୍ରହଣ କରିବା ଅନେକ ସମୟରେ ସେମାନଙ୍କ ପକ୍ଷରେ ସମ୍ଭବ ହୁଏ ନାହିଁ । ତେଣୁ, ସମବାୟ ସମିତି, ବ୍ୟବସାୟୀ ବ୍ୟାଙ୍କ୍ ଏବଂ ଗ୍ରାମ୍ୟ ବ୍ୟାଙ୍କମାନଙ୍କ ମାଧ୍ୟମରେ ଇଚ୍ଛୁକ ଚାଷୀଙ୍କୁ ଋଣ ଯୋଗାଇ ଦେବାର ବ୍ୟବସ୍ଥା ହୋଇଛି ।

ଚାଷୀମାନଙ୍କୁ ଏ ଦିଗରେ ଆମର କୃଷି କର୍ମଚାରୀମାନେ ସାହାଯ୍ୟ କରିବେ ।

ସ୍ୱତନ୍ତ୍ର କାର୍ଯ୍ୟକ୍ରମ—ଧାନ, ଡାଲି ଓ ତୈଳବୀଜ ଆମ ରାଜ୍ୟର ତିନୋଟି ପ୍ରଧାନ ଫସଲ । ଏସବୁ ଫସଲର ଉତ୍ପାଦନ ଓ ଉତ୍ପାଦିକତା ଶକ୍ତି ବଢ଼ାଇବା ପାଇଁ ରାଜ୍ୟର ବଛାବଛା ୬୩ଟି ବ୍ଲକ୍‌ରେ ସ୍ୱତନ୍ତ୍ର ଧାନ ଉତ୍ପାଦନ ଯୋଜନା—କଟକ, ପୁରୀ, ଢେଙ୍କାନାଳ, ବାଲେଶ୍ୱର, ଗଞ୍ଜାମ, ବଲାଙ୍ଗିର ଏବଂ କୋରାପୁଟ ଜିଲ୍ଲାରେ ଜାତୀୟ ଡାଲି ଫସଲ ଉନ୍ନୟନ ଯୋଜନା ଓ କଟକ, ଢେଙ୍କାନାଳ, ଗଞ୍ଜାମ, କଳାହାଣ୍ଡି, କୋରାପୁଟ, ଫୁଲବାଣୀ ଏବଂ ପୁରୀ ଜିଲ୍ଲାରେ ଜାତୀୟ ତୈଳବୀଜ ଉନ୍ନୟନ ଯୋଜନା ନାମରେ ତିନୋଟି ସ୍ୱତନ୍ତ୍ର ଯୋଜନା କାର୍ଯ୍ୟକାରୀ କରାଯାଉଛି ।

ସାଧାରଣ କାର୍ଯ୍ୟକ୍ରମ ସହିତ ସ୍ୱତନ୍ତ୍ର ଭାବେ ବଛା ଯାଇଥିବା ଅଞ୍ଚଳରେ ଧାନ, ଡାଲି ଓ ତୈଳବୀଜ ଫସଲର ଉନ୍ନୟନ ପାଇଁ ଚାଷୀମାନଙ୍କୁ ବିଭିନ୍ନ ପ୍ରକାର ସହାୟତା ଯୋଗାଇ ଦିଆଯିବ ।

ତେଣୁ ରବି କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ କୃଷି, ସମବାୟ ଓ ଜଳସେଚନ ତଥା ଅନ୍ୟାନ୍ୟ ଆନୁଷଙ୍ଗିକ ବିଭାଗମାନଙ୍କର କର୍ମକର୍ତ୍ତାଙ୍କ ମଧ୍ୟରେ ସମନ୍ୱୟ ରହିବା ସର୍ବାଦୌ ଆବଶ୍ୟକ । ତା'ହେଲେ ଚାଷୀମାନଙ୍କ ସହଯୋଗରେ ଏବର୍ଷର ବ୍ୟାପକ ରବି କାର୍ଯ୍ୟକ୍ରମକୁ ଲକ୍ଷ୍ୟ ହାସଲ କରିବା ସହଜ ଓ ସୁବିଧାଜନକ ହେବ ।

କୃଷି ଓ ଖାଦ୍ୟ ଉତ୍ପାଦନ ନିର୍ଦ୍ଦେଶକ,
ଓଡ଼ିଶା, ଭୁବନେଶ୍ୱର ।

# ଅଧିକ ଦୁଗ୍ଧ ଉତ୍ପାଦନରେ ସବୁଜ ଗୋଖାଦ୍ୟର ଭୂମିକା

ଆର୍. ଏନ୍. ଧଳବଟଶାଇ

ଯକ୍ଷ ଧର୍ମରାଜ ଯୁଧିଷ୍ଠିରଙ୍କୁ ପଚାରିଲେ, "ଅମୃତ କିମ୍" ଅମୃତ କଣ ? ଧର୍ମରାଜଙ୍କର ଉତ୍ତର ଥିଲା, "ସୋମୋ ଗବାମୃତମ୍" । ଗୋ-ଦୁଗ୍ଧ ହେଉଛି ଅମୃତ । ଗୋ ମାତାଙ୍କର ମହିମାକୁ ବାଣୀ ଓ ଲେଖନୀ ବ୍ୟକ୍ତ କରିବାକୁ ଅସମର୍ଥ । ଗୋଷୁ ମାତ୍ରା ନବିଦ୍ୟତେ । ଅର୍ଥାତ୍ ଗୋ ମାତା ଯେଉଁ ରାଜ୍ୟରେ ଅବହେଳିତ ସେହି ରାଜ୍ୟର ରାଜା ଓ ପ୍ରଜା କଷ୍ଟ ପାଉଥାନ୍ତି ।

ଗୋ-ମାତାର ମହତ୍ତ୍ୱ ସମ୍ବନ୍ଧରେ ଆମେରିକାର ପ୍ରସିଦ୍ଧ ଡାକ୍ତର Dr. E. V. M. C. Cullum କହିଛନ୍ତି—

The people who have achieved, who have becoms large, strong and vigorous people, who reduced their infant mortality, who have their trades in the world, who have appreciation for art, literature and music, who are progressive in science and in every activity of human intellect on the people who have used liberal amounts of cow milk and its products.

ଯେଉଁ ରାଷ୍ଟ୍ର ସଫଳତା ଲାଭ କରିଛି, ମହାନ ସୁଦୃଢ଼ ଓ ଶକ୍ତିଶାଳୀ ହୋଇଛି ଶିଶୁ ମୃତ୍ୟୁ ସଂଖ୍ୟା ହ୍ରାସ କରି ପାରିଛି, ଯାହାର ବାଣିଜ୍ୟ ସମଗ୍ର ବିଶ୍ୱରେ ପ୍ରସାର ଲାଭ କରିଛି, ଯେଉଁ ରାଷ୍ଟ୍ର କଳା ସାହିତ୍ୟ, ସଙ୍ଗୀତର ଗୁଣକୁ ଚିହ୍ନି ପାରିଛି, ବିଜ୍ଞାନ ଏବଂ ବୌଦ୍ଧିକ କ୍ଷେତ୍ରରେ ଉନ୍ନତି କରିଛି ସେହି ରାଷ୍ଟ୍ରର ଲୋକେ ଗୋ-ଦୁଗ୍ଧ ଓ ତତ୍ ନିର୍ମିତ ପଦାର୍ଥକୁ ଯଥେଷ୍ଟ ପରିମାଣରେ ସେବନ କରି ଥିବାରୁ ଏ ସବୁ ସମୃଦ୍ଧି ସମ୍ଭବ ହୋଇଛି ।

ଆର୍ଯ୍ୟ ସଂସ୍କୃତି ଓ ଗୋ-ମାତା ମଧ୍ୟରେ କାର୍ଯ୍ୟ-କାରଣ ସମ୍ବନ୍ଧ ବିଦ୍ୟମାନ । ପାଶ୍ଚାତ୍ୟ ସଭ୍ୟତା ପଛରେ ଆମ ସମାଜର ଶିକ୍ଷିତ ବଂଶଧରଙ୍କର ଅନୁକରଣର ଗତି ଅତି କ୍ଷିପ୍ର । ମଦ ମାଂସ ତୁଳନାରେ ଦୁଗ୍ଧଜାତ ସାମଗ୍ରୀର ଆଦର ପ୍ରାୟ ନାହିଁ । ସାତ୍ତ୍ୱିକ ଆହାର ଓ ଚିନ୍ତାଧାରାର ପୁନର୍ବିନ୍ୟାସ ଅଧୁନା ଏକାନ୍ତ ଆବଶ୍ୟକ । ସୁସ୍ଥ, ବଳିଷ୍ଠ, ଦୀର୍ଘାୟୁ, ବୁଦ୍ଧିମାନ ଉତ୍ତମ ସ୍ୱଭାବ ବିଶିଷ୍ଟ ନାଗରିକ ଗଠନରେ ଗୋ-ଜାତିର ଦାନ ଅତୁଳନୀୟ । ତେଣୁ ବେଦରେ ଭଗବାନ କହିଛନ୍ତି—

"ଆଗାବୋ ଅନୁଗ୍ମତ ଉଦ୍ରମକ୍ରନ"

ଗୋମାତା ଆମ ଘରକୁ ଆସନ୍ତୁ ଓ ଆମର ମଙ୍ଗଳ କରନ୍ତୁ । ଗୋମାତାର ସାତ୍ତ୍ୱିକ କ୍ଷୀର ଆମର ଜୀବନକୁ ମଧ୍ୟ ସାତ୍ତ୍ୱିକ ଭାବାପନ୍ନ କରୁ । ଅସ୍ଥିର ବିଦଗ୍ଧ ଦେଶ,ଜଗତର ଶାନ୍ତ ପରିବେଶ ସୃଷ୍ଟିକରୁ ଏହାହିଁ କାମନା । ସରଳ ଜୀବନ ଯାପନ ଓ ଉଚ୍ଚତ ଚିନ୍ତା । ପ୍ରତ୍ୟେକ ନାଗରିକର ଧ୍ୟେୟ ହେବା ଉଚିତ୍ । ଏ ସମ୍ବନ୍ଧରେ ଭଗବାନ ଶ୍ରୀକୃଷ୍ଣଙ୍କ ଅର୍ଥନୀତିକୁ ତର୍ଜମା କରାଯାଉ । କୃଷ୍ଣ ଲହୁଣୀକୁ ଭାରି ଭଲ ପାଉଥିଲେ । ଚୋରି କରୁଥିଲେ । ଗୋ-ଦୁଗ୍ଧର ଏକ ବିଶେଷତ୍ୱ—ଶରୀର ଗଠନ ବ୍ୟତୀତ ମାନସିକ ଖାଦ୍ୟ ଯୋଗାଇବା । ଏହା ଅନ୍ୟ କୌଣସି ସାମଗ୍ରୀରୁ ମିଳେନି । ଗୋ-ଦୁଗ୍ଧରେ ଯେଉଁ ବିଶେଷତ୍ୱ ରହିଛି ତାହା ଅନ୍ୟ କୌଣସି ପ୍ରାଣୀର ଦୁଗ୍ଧରେ ମିଳିବନି । ସଂସାରରେ ସମସ୍ତ ଦୁଗ୍ଧ-ପ୍ରଦାନକାରୀ ପ୍ରାଣୀମାନଙ୍କ ଦୁଗ୍ଧରେ କିଛି ପରିମାଣର ଆରସେନିକ୍ ନାମକ ବିଷାକ୍ତ ଦ୍ରବ୍ୟ ରହିଛି, ଏପରିକି ମାତ ଦୁଗ୍ଧରେ ମଧ୍ୟ ଅଛି କିନ୍ତୁ ଗୋ-ଦୁଗ୍ଧରେ ଏହାର ଚିହ୍ନବର୍ଣ୍ଣ ନାହିଁ । ବର୍ତ୍ତମାନର ପ୍ରଶ୍ନ ଏହାର ଚାହିଦା ବୃଦ୍ଧି ଓ ଖାଦ୍ୟାଭାବ । ପ୍ରତ୍ୟେକ ଚାଷୀ ଗୋ-ପାଳନ ନିମିତ୍ତ ଆଗ୍ରହୀ । ବିଭିନ୍ନ ଯୋଜନା ମଧ୍ୟରେ ସଂଶ୍ଳିଷ୍ଟ ଯେଉଁ କେତେକ ଅଭାବ ଅନୁଭୂତିରୁ ପରିଲକ୍ଷିତ ତାହା କେବଳ ପ୍ରତ୍ୟେକ ଚାଷୀର ବ୍ୟକ୍ତିଗତ ଆଗ୍ରହ ଓ ନିଷ୍ଠା ଉପରେ ନିର୍ଭର ଯୋଗ୍ୟ । ଉତ୍ତମ ଗଛ ଲଗାଇବାଦ୍ୱାରା ଭଲ ବଗିଚା ହୋଇପାରେ ନାହିଁ । ଭୂମିର ଉର୍ବରତା, ଅନୁକୂଳ ପାଣି ପାଗ ତଥା ଚାଷୀର କୁଶଳତା ପ୍ରଣିଧାନ ଯୋଗ୍ୟ । ଛାତ୍ରର ନିଷ୍ଠା ଓ ମେଧାହିଁ କେବଳ ଛାତ୍ରକୁ ବିଦ୍ୱାନ କରିଥାଏ । ସୁଯୋଗ୍ୟ ଶିକ୍ଷକ ବା ଅଧ୍ୟାପକ ନିଷ୍ଠା ଓ ମେଧାଶକ୍ତି ବିନା ସେ କୌଣସି ଛାତ୍ରକୁ ବିଦ୍ୱାନ କରିପାରିବ ନାହିଁ । କେବଳ ଶିକ୍ଷା ଜାହିତ

ଯେ କୌଣସି କ୍ଷେତ୍ରରେ ଏହାର ଆବଶ୍ୟକତା ଅନୁଭୂତ ହୁଏ । ସେହିପରି ପ୍ରତ୍ୟେକ ଗ୍ରାମର ଆଗ୍ରହୀ ଓ କାର୍ଯ୍ୟଦକ୍ଷ କୃଷୀ ମାନଙ୍କର ସାମୁହିକ ପ୍ରଚେଷ୍ଟା ଦେଶକୁ ଖାଦ୍ୟ ଶସ୍ୟରେ ସ୍ୱାବଲମ୍ବୀ କରେ । ବର୍ତ୍ତମାନର ସଂପ୍ରସାରଣ କାର୍ଯ୍ୟକ୍ରମ ଅତ୍ୟନ୍ତ ବ୍ୟାପକ । ବିଜ୍ଞାନ ଲବ୍ଧ ଉନ୍ନତ ପ୍ରଣାଳୀ ଓ ବିହନ ପ୍ରତ୍ୟେକ କୃଷୀର ଚାହିଦା ପୂରଣ କରିବ । ଆଧୁନିକ ଭାରତରେ ଶିଳ୍ପଭିତ୍ତିକ, କୃଷିଭିତ୍ତିକ, ଶିଳ୍ପ ଉପରେ ବହୁତ ଅଗ୍ରାଧିକାର ଦିଆଯାଉଛି । ବୃହତ୍ ଯାନ୍ତ୍ରୀକ ଦାବରେ କୃଷିଜୀବି ମାନେ ନିରୁତ୍ସାହିତ ହେବା ଅନୁଚିତ୍ । କାରଣ ଉଭୟଙ୍କର ସମନ୍ୱୟ ଏକାନ୍ତ ଆବଶ୍ୟକ । ସ୍ଥିର ଦୃଷ୍ଟିରେ ବିଚାର କଲେ କୃଷିର ପ୍ରାଧାନ୍ୟ ଅଧିକ ଅନୁଭୂତ ହୁଏ ।

ଗୋ-ରସ ବା କ୍ଷୀର ଏକାନ୍ତ ମାନସିକ ଖାଦ୍ୟ । ଅଧିକ ଉତ୍ପାଦକକ୍ଷମ ଗୋରୁଙ୍କୁ ଉତ୍ପାଦିକା ଶକ୍ତି ବୃଦ୍ଧି କରିବାର ମୂଳ ଲକ୍ଷ ଉପାଦେୟ ଗୋ ଖାଦ୍ୟ ଯୋଗାଣ । ଉକ୍ତ ଗୋ ଖାଦ୍ୟ ସୁ ପାଚ୍ୟ ହେବା ଉଚିତ୍ । ଏହା ଗାଈଗୋରୁଙ୍କର ଉପଯୁକ୍ତ ଶରୀର ବୃଦ୍ଧି ସହିତ ବଳଦ ମାନଙ୍କର କାର୍ଯ୍ୟଦକ୍ଷତା ବଢ଼ାଇଥାଏ । ପ୍ରଶ୍ନ ଉଠେ ଦାନାର ଅତ୍ୟାଧିକ ମୂଲ୍ୟ ଓ ଦୁର୍ମୂଲ୍ୟତା ପ୍ରତ୍ୟେକ ଗୃହସ୍ଥଙ୍କ ପକ୍ଷେ ଗାଈ ରଖିବା ଏକ କଷ୍ଟକର ବ୍ୟାପାର । ସାଧାରଣତଃ ମକା, ପିଡ଼ିଆ, ସ୍ୱେକଢ଼, ବିରିଚୁନି, କୁଣ୍ଡା ଇତ୍ୟାଦିରେ ମିଶ୍ରିତ ଦାନା ବ୍ୟତିତ କମ୍‌ଖର୍ଚ୍ଚରେ ଗାଈର ଆବଶ୍ୟକତା ଆମେ ମେଣ୍ଟାଇ ପାରିବା କି ?

ଆଜି ଗୋଚର ଓ ଚାରଣ ଭୂମିର ଅଭାବ । ଜନସଂଖ୍ୟା ବୃଦ୍ଧିର ଏକ ମାତ୍ରକାରଣ । ଉତ୍ତରପ୍ରଦେଶ ପଞ୍ଜାବ ଓ ହରିଆନା ରେ ଗୋଜାତି ଅଭିବୃଦ୍ଧି ଲକ୍ଷ କରିବା କଥା । ସେଠାରେ କୃଷୀମାନେ ନିଜର ଧାନ ଜମିରେ ବିଭିନ୍ନ ଘାସଚାଷ କରିଥାନ୍ତି । ଏପରିକି ପ୍ରତ୍ୟେକ ହାଟ ବଜାରରେ ମଧ୍ୟ ଘାସ ବିକ୍ରୟ କରା ଯାଇଥାଏ । କୃଷିମାନେ ଏହାକୁ ମଧ୍ୟ ଏକ ଲାଭଜନକ ଫସଲରୂପେ ଗ୍ରହଣ କରି ଆସିଛନ୍ତି । ଘାସ ଗାଈର ଯେ ପ୍ରିୟ ଖାଦ୍ୟ ତାହା ନୁହେଁ, ସୃଷ୍ଟିର ଆରମ୍ଭରୁ ଏହା ତୃଣ ବା ଘାସ ଉପରେ ନିର୍ଭର କରି ତୃଣଭୋଜି ରୂପେ ପରିଗଣିତ । ଯଶୋଦା ଶ୍ରୀକୃଷ୍ଣଙ୍କ ପାଇଁ ନିଜେ ଲହୁଣି ତିଆରିକରି ଦେଉଥିଲେ । ତାହା କେବଳ ଯେଉଁ ଗାଈ ଚାରଣ ଭୂମି ଉପରେ ନିର୍ଭର କରୁଥିଲା । ଏ ଲହୁଣି ସୁସ୍ଥ ଶରୀର ଗଠନରେ ସାହାଯ୍ୟ କରୁଥିଲା । ଉକ୍ତ ବିଷୟଟି ଟିକିଏ ପର୍ଯ୍ୟାଲୋଚନା କଲେ ଜାଣିହେବ ଯେ ଗାଈ ଚାରଣ ଭୂମିରୁ କଣ ଏକ ପ୍ରକାର ଘାସ ଖାଉଥିଲା ବା ବହୁମିଶ୍ରିତ ଘାସ ଖାଉଥିଲା । ମିଶ୍ରିତ ଘାସ ଅତି ସୁ ପାଚ୍ୟ ହୋଇଥିବାରୁ ଦେହ ବୃଦ୍ଧି ଓ କ୍ଷମତା ବୃଦ୍ଧି କରିବା ପାଇଁ ଏକ ଉପାଦେୟ ଗୋଖାଦ୍ୟ । ପୂର୍ବ ମୁନି ଋଷି ମାନେ ଅତିମାତ୍ରାରେ ହୃଦୟଙ୍ଗମ କରିଥିଲେ । ବଶିଷ୍ଠଙ୍କ ଗୋସେବା ଓ ଦିଲ୍ଲୀପଙ୍କର କାମଧେନୁପ୍ରତି ନିଷ୍ଠା ପାର୍ଯ୍ୟାଲୋଚନା କଲେ ଏହି ଚାରଣ ଭୂମି ସ୍ୱତଃ ମନକୁ ଆସେ ଅପରନ୍ତୁ ଗୋଜାତିର ଜୀବନ ଧାରଣର ନିମ୍ନତମ ମାନ ବା ଆଗ୍ରହ ଘାସ ଉପରେ ନିଶ୍ଚିତ୍‌ରୂପେ ନିର୍ଭର କରିଥାଏ ।

ଉପଯୁକ୍ତ ମିଶ୍ରିତ ଘାସ ଗୋ ଖାଦ୍ୟ ରୂପେ ବ୍ୟବହୃତ ହେଲେ ଦାନାର ଆବଶ୍ୟକତା ପ୍ରାୟ ଦରକାର ହେବନାହିଁ ।

N. D. R. I. କର୍ଣ୍ଣାଲ ଫାର୍ମରେ ଥିବା ଗୋରୁ ଗୁଡ଼ିକ କେବଳ ଘାସ ଉପରେ ନିର୍ଭର କରି ଅତ୍ୟନ୍ତ ଦୁଗ୍ଧବତୀ ହୋଇ ପାରିଥାନ୍ତି । ବର୍ତ୍ତମାନ ଚାରଣ ଭୂମିରେ ଉନ୍ନୟନରେ ଗୋ-ଖାଦ୍ୟ ଉପଯୋଗୀ ଗଛ ସହିତ ନାନା ପ୍ରକାର ଚାରଣ ଉପଯୋଗୀ ଘାସ ବିଭିନ୍ନଜାତୀୟ ଘାସ ମଧ୍ୟ ଲଗା ଯାଉଅଛି । ଗୋଖାଦ୍ୟ ଉପଯୋଗୀ ବୃକ୍ଷ ମଧ୍ୟରେ ସୁବାବୁଲ, ଅଗସ୍ତି, ଅଞ୍ଜନ ଗଛ ଅନ୍ୟତମ ଓ ଉନ୍ନତ ଚାରଣ ଘାସ ମଧ୍ୟରେ ଅଞ୍ଜନ, କାଞ୍ଚନ, ଷ୍ଟାଇଲୋ, ସିରାଟ୍ରୋ ପ୍ରଭୃତି ଅଟେ । ଏଗୁଡ଼ିକ ଆମ ରାଜ୍ୟରେ ବିଭିନ୍ନ ଯୋଜନାରେ ବହୁଳ ଭାବେ ଚାଷ କରିବାର ଯୋଜନା କରାଯାଇଅଛି ।

ଏହା ବ୍ୟତୀତ କୃଷୀ ନିଜ ବାଡ଼ି କଡ଼ରେ କିଛି କିଛି ଗୋ-ଖାଦ୍ୟ ଉପଯୋଗୀ ବୃକ୍ଷ ଓ ମକାବରଗୁଡ଼ି, ଏମ୍ ପି-ଚେରୀବରଗୁଡ଼ି, ପ୍ରଭୃତି ଘାସ ଚାଷକରି ଗାଈଗୋରୁମାନଙ୍କୁ ସବୁଜ ଗୋ-ଖାଦ୍ୟ ଯୋଗାଇ ଦେବାର ବନ୍ଦୋବସ୍ତ କରାଯାଉଛି ଗୋପାଳନ ଏବଂ ଦୁଗ୍ଧ ଉତ୍ପାଦନ ଏକ କଷ୍ଟକର ବ୍ୟାପାର ହୋଇପଡ଼ିବ । ଏଥିସକାଶେ ସରକାରଙ୍କ ତରଫରୁ ପଶୁପାଳନ ବିଭାଗ ମାଧ୍ୟମରେ ମଞ୍ଜି ଓ ସାର ପ୍ରଭୃତି ଜିନିଷ କୃଷି ମାନଙ୍କୁ ଯୋଗାଇ ଦେବାର ବନ୍ଦୋବସ୍ତ କରାଯାଉଅଛି ।

"ଅଜ୍ଞାନ–ଅଭାବ–ଅନ୍ୟାୟ" ସମାଜର ସାମାଜିକ ସ୍ଥିତିକୁ ଦୋହୋଲାଇ ଦେଇପାରେ । ସମାଜର ଜ୍ଞାନୀ ବୁଦ୍ଧିଜୀବି ଏହି ଆର୍ଥିକ କଲ୍ୟାଣର ସ୍ଥିତିକୁ ସୁଦୃଢ଼ କରିବା ପାଇଁ ଏମାନଙ୍କର ବିରୁଦ୍ଧରେ ସଂଗ୍ରାମ ଅବ୍ୟାହତ ରଖେ । କେବଳ ଆର୍ଥିକ ସଙ୍କଟର ଉଦ୍ଧାର ପାଇଁ ପ୍ରକୃତିର କୋଳରେ ପ୍ରକୃତି ପୁରୁଷ ନିଜକୁ ହଜାଇ ଦେଉଥିଲା । ପ୍ରାକୃତିକ ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇଥାଏ କବି, ଲେଖକ, ଦାର୍ଶନିକ ଓ ବୈଜ୍ଞାନିକ । ସୃଷ୍ଟିର ବୈଚିତ୍ର୍ୟ ଉପଲବ୍ଧି ପାଇଁ ପ୍ରାକୃତିକ ପରିବେଶ ଉନ୍ନତ ନିମିତ୍ତ ବୈଜ୍ଞାନିକବିପ୍ଳବ ଅଧୁନା ପ୍ରାଣସ୍ପର୍ଶୀ ହୋଇଛି । ସବୁଜ ବନାନୀର ବିଲୋପସତ୍ୱେ ଆରୋପର ଗୁରୁତ୍ୱ ପ୍ରକୃତିର ସ୍ଥିତିକୁ ସୁଦୃଢ଼ କରି ତୋଳିଛି । ତାରି କୋଳର ସନ୍ତାନକୁ ତାରି ପାଖରେ ପହଞ୍ଚାଇ ଦେବାକୁ" ଯୋଗ୍ୟତମ ଉଦବର୍ତ୍ତନ" ଭିତ୍ତିରେ ପ୍ରାଣୀର ସ୍ଥିତିକୁ ସ୍ଥାପନ କରିବାକୁ କିନ୍ତୁ ସେମାନଙ୍କର ସ୍ଥିତିକୁ ସାବ୍ୟସ୍ତ କରି ତୋଳିବା ପାଇଁ ଜୀବନଧାରଣର ନ୍ୟୁନତମ ବସ୍ତୁ ଖାଦ୍ୟର ଅଭାବ ପରିଲକ୍ଷିତ ହୁଏ । ତେଣୁ ପ୍ରାକୃତିକ ପରିସ୍ଥିତିର ପରିବେଷ୍ଟନୀରେ ସୁବାବୁଲ, ଅଗସ୍ତି, ଷ୍ଟାଇଲୋ ସିରାଟ୍ରୋ ଅଞ୍ଜନ ଓ ଶଂଚନ ପ୍ରାକୃତିକ ବୃକ୍ଷ ଓ ତୃଣ ସବୁଜ ବନାନୀର ବହୁପ୍ରାଣୀର ସ୍ଥିତି ସମ୍ଭବ ହୋଇପାରନ୍ତା ।

ଆମ ରାଜ୍ୟରେ ଦୁଧିଆଳ ଗାଈ, ଭାରବାହକ ବଳଦ ଓ ଦ୍ରୁତ ଗାମୀ ଅଶ୍ୱ ନୁହଁନ୍ତି । ମହାତ୍ମା ଗାନ୍ଧି ଗୋ ଜାତିର ମହତ୍ତ୍ୱ ଉପରେ ୧୮-୬-୧୯ Young India ରେ ଲେଖିଥିଲେ ।

"ଯେତେବେଳ ପର୍ଯ୍ୟନ୍ତ ଆମେ ଗାଈମାନଙ୍କୁ ରକ୍ଷା କରିବାର ଉପାୟ ଖୋଜି ବାହାର କରି ପାରିନାହୁଁ, ସେତେବେଳ ପର୍ଯ୍ୟନ୍ତ ସ୍ୱରାଜ୍ୟ ଅର୍ଥହୀନ ହୋଇ ପଡ଼ିବ ।"

# "ଚାଲିବାକୁ ହେବ ମାଇଲ୍ ମାଇଲ୍ ପଥ"

ଉଦ୍ଧବ ଚରଣ ନାୟକ

ଏହ୍ଲାବାଦ । ଭାରତବର୍ଷର ଅନ୍ୟତମ ପ୍ରାଚୀନ ତଥା ପ୍ରସିଦ୍ଧ ଐତିହାସିକ ନଗରୀ । ହିନ୍ଦୁମାନଙ୍କର ପବିତ୍ର ତୀର୍ଥ 'ତ୍ରିବେଣୀ ସଙ୍ଗମ' ସୃଷ୍ଟିର ଆଦିକାଳରୁ ଏଠାରେ ବିଦ୍ୟମାନ । ଗଙ୍ଗା, ଯମୁନା, ସରସ୍ୱତୀ ପବିତ୍ର ନଦୀ ତ୍ରୟଙ୍କ ସଙ୍ଗମ ଏଠାରେ । ଏହା ତ୍ରିବେଣୀ ସଙ୍ଗମ ନାମରେ ଖ୍ୟାତ । ଏଠାରେ ପ୍ରତ୍ୟହ ଭାରତବର୍ଷର ବିଭିନ୍ନ ଅଞ୍ଚଳର ଯାତ୍ରୀମାନେ ସମବେତ ହୋଇ ତ୍ରିବେଣୀ ସଙ୍ଗମରେ ସ୍ନାନପୂର୍ବକ ପାପ ପ୍ରକ୍ଷାଳନ କରନ୍ତି । ଏଣୁ ଏହ୍ଲାବାଦ ଏକ ପବିତ୍ର, ପୁଣ୍ୟ ତଥା ମୋକ୍ଷ ପୀଠ ।

ପୁରାଣ ବର୍ଣ୍ଣିତ ଜମ୍ବୁଦ୍ୱୀପ, ଆଜି 'ଏସିଆ ମହାଦେଶ ଭାବରେ ଖ୍ୟାତ । ଏହି ଏସିଆ ମହାଦେଶର ବିଗତ ଶତକର ମହାନ୍ ରାଷ୍ଟ୍ରନୀତିଜ୍ଞ, ସୁବ ଶୂନ୍ୟ ବିଶ୍ୱଗଠନର ଅନ୍ୟତମ ଅଧିନାୟକ, ବିଶ୍ୱର ଅନ୍ୟତମ ଶାନ୍ତିକାମୀ ଜନନାୟକ, ଆଜୀବନ ଗଣତନ୍ତ୍ର ପ୍ରେମୀ, ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ତଥା ଆଧୁନିକ ଭାରତର ନିର୍ମାତା ପଣ୍ଡିତ ଜବାହାରଲାଲ ନେହେରୁ ଏହି ପୁଣ୍ୟ ପୀଠ ଏହ୍ଲାବାଦ ନଗରୀର ଏକ ପ୍ରସିଦ୍ଧ ସମ୍ଭ୍ରାନ୍ତ, ଶିକ୍ଷିତ, ଧନଶାଳୀ ତଥା କୁଳୀନ କାଶ୍ମୀର ବ୍ରାହ୍ମଣ ପରିବାରରେ ୧୮୮୯ ମସିହା ନଭେମ୍ବର ମାସ ୧୪ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ଏଠାରେ ସ୍ୱତଃ ସ୍ମରଣୀୟ ଯେ, ଠିକ୍ ଏହି ବର୍ଷ ବିଶ୍ୱବିଖ୍ୟାତ କୂଟନୀତିଜ୍ଞ ଆଡଲଫ୍ ହିଟଲର ୟୁରୋପରେ ଜନ୍ମଗ୍ରହଣ କରିଥିଲେ ।

ଆଧୁନିକ ଭାରତର ନିର୍ମାତା ତଥା ଭାରତର ଶ୍ରେଷ୍ଠ ଜନନାୟକ ପଣ୍ଡିତ ଜବାହାରଲାଲଙ୍କ ବାଲ୍ୟଜୀବନର କାହାଣୀ ଏ ଜାତିର ଭବିଷ୍ୟତ ନାଗରିକମାନଙ୍କ ପାଇଁ ଯେତିକି ଉପାଦେୟ ସେତିକି ଶିକ୍ଷଣୀୟ ମଧ୍ୟ । ଜବାହାରଲାଲଙ୍କ ପୂର୍ବ ପୁରୁଷମାନେ କାଶ୍ମୀରରୁ ଆସି ଦିଲ୍ଲୀ ଆଗ୍ରା ଓ ପରେ ଏହ୍ଲାବାଦରେ ବାସ କରିଥିଲେ । 'ନେହେରୁ' ଏହି ପରିବାରର କୂଳ ସଂଜ୍ଞା ନ ଥିଲା । କାଶ୍ମୀରରୁ ଆସିବା ସମୟରେ 'କାଉଲ' ଥିଲା ସେମାନଙ୍କ ସଂଜ୍ଞା ତାପରେ ସେମାନେ ଦିଲ୍ଲୀ ନିକଟବର୍ତ୍ତୀ ଏକ କେନାଲ (ନହର) କୂଳରେ ବାସ କରିବାରୁ ସେମାନଙ୍କ ସଂଜ୍ଞା 'କଉଲ ନେହେରୁ'ରେ ପରିଣତ ହେଲା । ପରେ କାଉଲ କଟିଯାଇ କେବଳ 'ନେହେରୁ' ରହିଲା ।

ଜବାହାରଲାଲଙ୍କ ପିତାଙ୍କ ନାମ ପଣ୍ଡିତ ମୋତିଲାଲ ନେହେରୁ । ମାତାଙ୍କ ନାମ ସ୍ୱରୂପରାଣୀ । ମୋତିଲାଲଜୀ ଥିଲେ ତତ୍କାଳୀନ ଭାରତବର୍ଷର ପ୍ରସିଦ୍ଧ ଆଇନଜ୍ଞ, ବୁଦ୍ଧିଜୀବୀ ଜ୍ଞାନୀ, ପଣ୍ଡିତ ତଥା ଦୃଢ଼ ମନବଳସଂପନ୍ନ ମହାନ୍ ବ୍ୟକ୍ତିତ୍ୱର ଅଧିକାରୀ । ଜବାହାରଲାଲଙ୍କ ମାତା ସ୍ୱରୂପରାଣୀ ଥିଲେ ଅତ୍ୟନ୍ତ ରୂପବତୀ, ଗୁଣବତୀ ସମ୍ଭ୍ରାନ୍ତ ବଂଶୀୟା ତଥା ଭାରତୀୟ ଧର୍ମ, ସଂସ୍କୃତି ଓ ଆଦର୍ଶର ମୂର୍ତ୍ତିମନ୍ତ ପ୍ରତୀକ । ମୋତିଲାଲଙ୍କ ପରିବାରର ଗ୍ଭଲିଚଳନ ଓ ଭାବଭଙ୍ଗୀ ଥିଲା ସଂପୂର୍ଣ୍ଣ ପାଶ୍ଚାତ୍ୟ ଢଙ୍ଗର । ସେ ବହୁଥର ୟୁରୋପ ଭ୍ରମଣରେ ଯାଇ ନାନା ପ୍ରକାର ରୁଚିସଂପନ୍ନ ଜିନିଷମାନ ପରିବାରର ବ୍ୟବହାର ପାଇଁ କ୍ରୟକରି ଆଣୁଥିଲେ । ସେ ବିଭିନ୍ନ ଭାଷାରେ ପାରଦର୍ଶିତା ଲାଭ କରିଥିବା ହେତୁ ପଣ୍ଡିତ ଭାବରେ ଆଖ୍ୟାୟିତ ହୋଇଥିଲେ । ଜବାହାରଲାଲଙ୍କ ଜନ୍ମର ଏଗାର ବର୍ଷ ପର୍ଯ୍ୟନ୍ତ ମୋତିଲାଲଙ୍କର ଅନ୍ୟ କୌଣସି ସନ୍ତାନ ଭୂମିଷ୍ଠ ହୋଇ ନ ଥିଲେ, ଫଳରେ ଜାବାହରଲାଲ ଅତ୍ୟନ୍ତ ଗେଲବସରରେ ବଢ଼ିଥିଲେ ୧୯୦୦ ଖ୍ରୀଷ୍ଟାବ୍ଦରେ ମୋତିଲାଲଙ୍କ ପ୍ରଥମ କନ୍ୟା ବିଜୟଲକ୍ଷ୍ମୀ ପଣ୍ଡିତ ଓ ୧୯୦୭ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟା କନ୍ୟା କ୍ରିଷ୍ଣା ହାଟୀ ସିଂହ ଜନ୍ମ ଗ୍ରହଣ କରିଥିଲେ । ମୋତିଲାଲଜୀ ପ୍ରଥମେ ଏହ୍ଲାବାଦର ପୁରୁଣା ସହରାଞ୍ଚଳରେ ବାସ କରୁଥିଲେ । ଜବାହାରଲାଲଙ୍କୁ ପ୍ରାୟ ଦଶବର୍ଷ ବୟସ ହୋଇଥିବା କାଳରେ ସେ ଏହ୍ଲାବାଦ କ୍ୟାଣ୍ଟନମେଣ୍ଟ ଅଞ୍ଚଳରେ ଏକ ରାଜକୀୟ ପ୍ରସାଦ କ୍ରୟକରି ସେଠାକୁ ଉଠିଆସିଥିଲେ । ଏହି ରାଜକୀୟ ପ୍ରସାଦର ନାମ ଥିଲା 'ଆନନ୍ଦଭବନ' । ଏଥିରେ ବହୁତ ସୁସଜ୍ଜିତ କୋଠରୀ ଶୋଭାପାଏ । 'ଆନନ୍ଦଭବନ' ଅବସ୍ଥିତି କ୍ୟାଣ୍ଟନମେଣ୍ଟ ଅଞ୍ଚଳରେ ମୁଖ୍ୟତଃ କେବଳ ୟୁରୋପୀୟାନମାନେ ବାସ କରୁଥିଲେ ।

ଜବାହାରଲାଲ ବାଲ୍ୟକାଳରେ ଇଉରୋପ ତିଆରି ଚିକ୍କିଣିଆ ସାଇକେଲ ଓ ଆରବୀ ଘୋଡ଼ା ଚଢୁଥିଲେ । ମୋତିଲାଲ ଓ ତାଙ୍କ ଅନ୍ୟ ଭାଇମାନେ ସମସ୍ତେ ଏକାଠି ବାସ କରୁଥିଲେ । ତାଙ୍କ ଜେଠେଇ ପୁଅ ଭାଇମାନେ ତାଙ୍କଠାରୁ ଢେର ବୟସଥିବାରୁ ସେମାନେ ଜବାହାରଲାଲଙ୍କୁ ସଙ୍ଗରେ ମିଶାଉ ନ ଥିଲେ କି ସଙ୍ଗରେ ଖେଳାଉ ନ ଥିଲେ । ଜବାହାରଲାଲଙ୍କୁ ପାଞ୍ଚ ଛଅବର୍ଷ ବୟସ ହୋଇଥିବା ବେଳର କଥା । ସେ ସମୟରେ ଇଂରେଜ ଓ ଇଉରେସିଆନମାନେ ଭାରତୀୟମାନଙ୍କୁ ଅତ୍ୟନ୍ତ ଘୃଣା ଚକ୍ଷୁରେ ଦେଖୁଥିଲେ । ଭାରତୀୟମାନେ କିପରି ସେମାନଙ୍କୁ ବିରୁଦ୍ଧାଚରଣ କରିବେ ଏ ସଂପର୍କରେ ତାଙ୍କ ଜେଠେଇ ପୁଅ ଭାଇମାନେ କଥାବାର୍ତ୍ତା ହୁଅନ୍ତି । ଜବାହାରଲାଲ ସେମାନଙ୍କଠାରୁ ସେସବୁ କଥା ଭଲ ଭାବରେ ମନଦେଇ ଶୁଣନ୍ତି । ତାଙ୍କ ମନରେ ମଧ୍ୟ ଇଂରେଜମାନଙ୍କ ପ୍ରତି ସ୍ୱତଃ ଘୃଣାଭାବ ଜାତ ହେଉଥିଲା । ସେତେବେଳେ ଇଂରେଜମାନଙ୍କ ନିମନ୍ତେ ରେଳଗାଡ଼ି ଓ ପାର୍କରେ ବସିବା ନିମନ୍ତେ ସ୍ୱତନ୍ତ୍ର ଆସନ ସଂରକ୍ଷିତ ଓ ନିରୂପିତ ହୋଇ ରହିଥିଲା । ଫଳରେ ଏହି କାରଣରୁ ବିଭିନ୍ନ ସମୟରେ ଭାରତୀୟ ଓ ଇଂରେଜମାନଙ୍କ ମଧ୍ୟରେ ଝଗଡ଼ାଝାଟି ସୃଷ୍ଟି ହେଉଥିଲା । ଭାରତୀୟମାନେ ମାଡ଼ ଓ ଅପମାନଦେଇ ଇଂରେଜମାନଙ୍କୁ ବେଳେ ବେଳେ କାବୁ କରି ପକାଉଥିଲେ । ଏହି ଘଟଣା ଦେଖି ଓ ଶୁଣି ବାଳକ ଜବାହାରଲାଲ ଅତ୍ୟନ୍ତ ଖୁସି ହେଉଥିଲେ ।

ସର୍ବପ୍ରଥମେ ଜବାହରଲାଲଙ୍କ ବାଲ୍ୟଶିକ୍ଷା ଦାୟିତ୍ୱ ଭାରତୀୟ ଜ୍ଞାନୀ ବ୍ରାହ୍ମଣ ଓ ପଣ୍ଡିତଙ୍କ ହସ୍ତରେ ନ୍ୟସ୍ତଥିଲା ଓ ସେମାନେ ଜବାହରଲାଲଙ୍କୁ ଭାରତୀୟ ଭାଷା ହିନ୍ଦୀ ସଂସ୍କୃତ ଶିକ୍ଷାଦାନକଲେ । କିଛିଦିନ ପରେ ସେ ଏହ୍ଲାବାଦର ସେଣ୍ଟମେରୀ କନଭେଣ୍ଟ୍ ସ୍କୁଲରେ ନାମ ଲେଖାଇଲେ । ଏହି ସମୟରେ ତାଙ୍କୁ ଅଧ୍ୟାପନା କରିବା ନିମନ୍ତେ ଜଣେ ଏକୋଇଶ ବର୍ଷର ଇଂରେଜ ଶିକ୍ଷକଙ୍କୁ ଦାୟିତ୍ୱ ପ୍ରଦାନ କରଗଲା । ସେ ଜବାହାରଲାଲଙ୍କ ଗୃହ ଶିକ୍ଷକ ଭାବରେ ନିଯୁକ୍ତ ହେଲେ । ସେହି ଇଂରେଜ ଶିକ୍ଷକଙ୍କ ନାମ ଥିଲା ଫର୍ଡିନାଣ୍ଡ ବ୍ରୁକ୍ସ । ବ୍ରୁକସ ଜବାହରଲାଲଙ୍କୁ ଇଂରେଜୀ ଭାଷା, ସାହିତ୍ୟ, ଧର୍ମ ଓ ବିଜ୍ଞାନ ସଂପର୍କରେ ଶିକ୍ଷାଦାନ କଲେ । ଜବାହାରଲାଲ ଅଳ୍ପଦିନ ମଧ୍ୟରେ ଇଂରେଜୀ ଭାଷାରେ ଯଥେଷ୍ଟ ବ୍ୟୁତ୍ପତ୍ତି ଲାଭକଲେ । ଖୁବ୍ କମ୍ ବୟସରେ ସେ, ସ୍କଟ, ଥାକେରୀ, ଡିକେନ୍ସ, କିପ୍‌ଲିଙ୍ଗ, ଲିଉସିକାରଲ ଏବଂ ଏଚ.ଜି. ୱେଲ୍‌ସ ଆଦି ବିଶିଷ୍ଟ ଇଂରେଜୀ ଲେଖକମାନଙ୍କ ସାହିତ୍ୟ ଅଧ୍ୟୟନ କରି ଇଂରାଜୀ ଭାଷାରେ ପାରଦର୍ଶୀତା ଲାଭ କଲେ । ବିଶେଷ ଭାବରେ ଲିଉସି କାରଲଙ୍କ 'ଆଲିସ ଇନ ଦି ୱାଣ୍ଡର ଲ୍ୟାଣ୍ଡ' କିପ୍‌ଲିଙ୍ଗଙ୍କ 'କିମ', ଆନ୍ଥୋନୀ ହୋପଙ୍କ ପ୍ରିଜନର ଅଫ ଜେଣ୍ଡା', ଜେରମ କେ ଜେରମ୍‌ଙ୍କ 'ଥ୍ରୀମେନ୍ ଇନ୍ ଦ ବୋଟ' ତାଙ୍କୁ ଖୁବ୍ ଭଲ ଲଗିଥିଲା । ତାଙ୍କ ଗୃହ ଶିକ୍ଷକ ବ୍ରୁକ୍ସ ତାଙ୍କୁ ରସାୟନ ଓ ପଦାର୍ଥ ବିଜ୍ଞାନ ମଧ୍ୟ ଭଲଭାବରେ ପଢ଼ାଉଥିଲେ । ଜବାହାରଲାଲ ପିଲାଦିନେ ସନ୍ତରଣ, ଅଶ୍ୱାରୋହଣ, କ୍ରିକେଟ ଓ ଟେନିସ୍ ଖେଳ ପ୍ରିୟ ଥିଲେ ।

ତାଙ୍କ ପିତା ମୋତିଲାଲ ଥିଲେ ଅତ୍ୟନ୍ତ ସାହସୀ, ବଳବାନ, ଚତୁର ତଥା ଜ୍ଞାନୀ । ପିଲାଦିନେ ଜବାହାରଲାଲ ପିତାଙ୍କ ବ୍ୟକ୍ତିତ୍ୱକୁ ଲକ୍ଷ୍ୟକରି ମନେ ମନେ ଭାବୁଥିଲେ ବଡ଼ ହେଲେ ନିଶ୍ଚୟ ପିତାଙ୍କ ପରି ହେବି, ସେ ବାପାଙ୍କୁ ଯେତିକି ଭଲ ପାଉଥିଲେ, ଭକ୍ତି କରୁଥିଲେ ସେତିକି ଭୟ ମଧ୍ୟ କରୁଥିଲେ ତାଙ୍କ ପିତା ଥିଲେ ପ୍ରଚଣ୍ଡ ରାଗୀବ୍ୟକ୍ତି, ସେ ଏହାଭଲ ଭାବରେ ହୃଦୟଙ୍ଗମ କରିଥିଲେ । ପିତା ମୋତିଲାଲ ଚାକରବାକରଙ୍କ ଉପରେ ରାଗିଲାବେଳେ ବାଳକ ଜବାହାରଲାଲ ପିତାଙ୍କର ଏତାଦୃଶ କାର୍ଯ୍ୟକୁ ମନେ ମନେ ଘୃଣାକରୁଥିଲେ, ହେଲେ ମୁହଁଖୋଲି କିଛି କହିପାରୁ ନ ଥିଲେ । ସେ ମା'ଙ୍କ ପାଖରେ ସବୁବେଳେ ଉରସିକରି କଥା କହୁଥିଲେ । ପିତାଙ୍କୁ ଦେଖିଲେ ଭୟରେ ଥରହର ହେଉଥିଲେ । ତାଙ୍କୁ ପାଞ୍ଚ ଛଅ ବର୍ଷ ବୟସ ହୋଇଥିବା ବେଳେ ସେ କିପରି ପିତାଙ୍କ କ୍ରୋଧର ଶିକାର ହୋଇଥିଲେ ତାହା ଏଠାରେ ଉଲ୍ଲେଖ ଯୋଗ୍ୟ ।

ଦିନେ ସେ ପିତାଙ୍କ ଅଫିସ୍ ଘରେ ପଶି ଦେଖିଲେ ଯେ, ପିତାଙ୍କ ଟେବୁଲ ଉପରେ ଦୁଇଟି ସୁନ୍ଦର କଲମ (ଫାଉଣ୍ଟେନ-ପେନ୍) ଥୁଆହୋଇଛି । ସେଥିରୁ ଗୋଟିଏ ନେବାପାଇଁ ତାଙ୍କ ମନରେ ଲୋଭ ଜାତହେଲା । ସେ ମନେ ମନେ ଚିନ୍ତାକରି ଠିକ୍ କରିନେଲେ ଯେ, ବାପାଙ୍କର ଏକାବେଳେ ଦୁଇଟି କଲମ ଦରକାର ହେବନାହିଁ । ଏଣୁ ସେ ସେଥିରୁ ଗୋଟିଏ ନେଇ ଗଲେ । ହଜିଥିବା କଲମ ଖୋଜାହେଲା । ହେଲେ କେଉଁଠି ମିଳିଲା ନାହିଁ । ବାଳକ ଜବାହାର ଜାଣିଲେ ଯେ ପିତା ତାଙ୍କ କଲମ ଖୋଜୁଛନ୍ତି । ଏଣୁ ସେ ମନେ ମନେ ବହୁତ ଭୟ ପାଇଲେ । କଲମଟି ମୁଁ ନେଇଛି ବୋଲି ସେ ଭୟରେ ପ୍ରକାଶ କରି ପାରିଲେ ନାହିଁ । କିନ୍ତୁ ବହୁତ ଖୋଜା ଖୋଜି ପରେ କଲମଟି ତାଙ୍କଠାରୁ ବାହାରିଲା । ତାଙ୍କ ପିତା ସେଦିନ ତାଙ୍କୁ ଖୁବ୍ ଜୋରରେ ପ୍ରହାର କଲେ । ସେ ମାଡ଼ ଖାଇ ଦୌଡ଼ି ପଳାଇଆସି ମା'ଙ୍କ ପଣତ କାନି ତଳେ ଆଶ୍ରୟ ନେଲେ । ତାଙ୍କ ପିତା ତାଙ୍କୁ ଏପରି ପ୍ରହାର କରିଥିଲେ ଯେ, ତାଙ୍କ ଶରୀରରେ ବହୁ କ୍ଷତ ହେବା ସଙ୍ଗେ ସଙ୍ଗେ ସାରା ଶରୀରରେ ସେ ଭୀଷଣ ଦରଜ ଓ କଷ୍ଟ ଅନୁଭବ କଲେ । କ୍ଷତ ଶୁଖିବା ତଥା ଦରଜ ଉପଶମ ନିମନ୍ତେ ନାନା ପ୍ରକାର ମଲମ ମାଲିସ କରାଗଲା । ବହୁତ ଦିନ ପରେ ସେ ଉପଶମ ଲାଭକଲେ । କଲମ ଚୋରି ଯୋଗୁଁ ସେ ପିତାଙ୍କଠାରୁ ମନେମନେ ଭାବିଲେ, 'ଦୋଷପାଇଁ ଦଣ୍ଡ ପାଇଛି ଏଥିରେ ଦୁଃଖ କରିବା ଉଚିତ ନୁହେଁ, ହେଲେ ଦୋଷ ତୁଳନାରେ ଦଣ୍ଡର ପରିମାଣ ଅଧିକ ହୋଇଗଲା' । ଜୀବନରେ ଆଉ ଏପରି ଭୁଲ କରିବେ ନାହିଁ ବୋଲି ବାଳକ ଜବାହରଲାଲ ମନେ ମନେ ଠିକ୍ କରିନେଲେ ।

ତାଙ୍କ ପରିବାରରେ ତାଙ୍କ ସହ ଜଣେ ମୁନ୍‌ସି ରହୁଥିଲେ । ତାଙ୍କ ନାମ ମୁନ୍‌ସି ମୁବାରକ ଅଲି । ୧୮୫୭ ମସିହା ସିପାହୀ ବିଦ୍ରୋହରେ ତାଙ୍କ ପରିବାର ଆଂଶିକ କ୍ଷତିଗ୍ରସ୍ତ ହୋଇ ଥିବାରୁ ମୋତିଲାଲ ତାଙ୍କୁ ଆଣି ନିଜ ଗୃହରେ ସ୍ଥାନଦେଇ ନିଜ ପରିବାରର ଜଣେ ସଭ୍ୟ ଭଳି ଭଲପାଉଥିଲେ । ମୁନ୍‌ସି ମୁବାରକଙ୍କୁ ଅନ୍ୟମାନେ ମଧ୍ୟ ଆଦର କରୁଥିଲେ । ସେ ନେହେରୁ ପରିବାରର ପିଲାମାନଙ୍କ ସହ ମିଶି ଖୁବ୍ ମିଠା ମିଠା କହୁଥିଲେ । ଜବାହରଲାଲ ପିଲାଦିନେ ତାଙ୍କ ପାଖରେ ବସି ଆରବ କାହାଣୀ, ୧୮୫୭ ମସିହା ବିଦ୍ରୋହ କାହାଣୀ ଆଦି ବହୁ ଉପାଦେୟ କଥା ଶୁଣୁଥିଲେ । ଜବାହାରଲାଲ, ତାଙ୍କ ମା ଓ ବଡ଼ ମା'ଙ୍କଠାରୁ ରାମାୟଣ, ମହାଭାରତ ତଥା ଭାରତୀୟ ପୁରାଣ ଶାସ୍ତ୍ରର ନୀତି କାହାଣୀମାନ ମନଦେଇ

ଶୁଣୁଥିଲେ । ସେମାନଙ୍କ ସଂଗେ ଯାଇ ଏଲ୍ଲାହାବାଦ ଓ ବନାରସରେ ଥିବା ବହୁ ହିନ୍ଦୁ ଦେବାଦେବୀ ଓ ସନ୍ୟାସୀମାନଙ୍କ ଦର୍ଶନ ଲାଭ କରି ଅଶେଷ ଆନନ୍ଦ ଲାଭ କରୁଥିଲେ । ତାଙ୍କ ପରିବାରରେ ରକ୍ଷା ବନ୍ଧନ, ଭାତୃଦ୍ୱିତୀୟା, ଜନ୍ମାଷ୍ଟମୀ, ହୋଲି, ଦଶହରା ଆଦି ବହୁ ଉତ୍ସବ ଖୁବ୍ ସମାରୋହରେ ପାଳିତ ହେଉଥିଲା । 'ନାଓରୋଜ ବୋଲି ଏକ ସ୍ୱତନ୍ତ୍ର ପର୍ବ ତାଙ୍କ ପରିବାରରେ ପାଳିତ ହୁଏ । 'ନାଓରୋଜ' କେବଳ କାଶ୍ମୀରୀୟ ବ୍ରାହ୍ମଣମାନଙ୍କ ପରିବାରରେ ପାଳିତ ହୁଏ । ସ୍ମୃତ୍ ଅନୁସାରେ ନୂତନ ବର୍ଷର ପ୍ରଥମ ଦିବସରେ ଏହି ପର୍ବ ପାଳନ ହୁଏ । ଏହି ଦିନ ପରିବାରର ସମସ୍ତେ ନୂଆ ଲୁଗା ପିନ୍ଧନ୍ତି । ଘରର ଛୋଟଛୋଟ ପିଲାମାନଙ୍କୁ ଉପହାର ସ୍ୱରୂପ କିଛି କିଛି ପଇସା ଖର୍ଚ୍ଚ କରିବା ପାଇଁ ଦିଆଯାଏ । ତାଙ୍କ ପରିବାରରେ ଯେତେ ପର୍ବ ପାଳନ ହୁଏ, 'ତାଙ୍କ ଜନ୍ମ ଦିନ ଉତ୍ସବ' ଜବାହାରଲାଲଙ୍କୁ ଖୁବ୍ ଭଲ ଲାଗେ । ବେଳେ ବେଳେ ସେ ଜିଦ୍ ଧରି ବସନ୍ତି ବର୍ଷକୁ ଥରେ କାହିଁକି ମୋ ଜନ୍ମଦିନ ଉତ୍ସବ ପାଳନ ହେଉଛି, ଆଉ ଦୁଇ ଚାରିଥର କାହିଁକି ପାଳନ କରାଯାଉନାହିଁ ?"

ତାଙ୍କ ଜନ୍ମଦିନରେ ପ୍ରଥମେ ବଡ଼ି ଭୋରରୁ ଖୋଟିଏ ପାଖରେ ତାଙ୍କୁ ଓ ଅନ୍ୟ ପାଖରେ ଗହମ ଇତ୍ୟାଦି ନାନା ପ୍ରକାର ଖାଦ୍ୟ ଦ୍ରବ୍ୟ ରଖାଯାଇ ଓଜନ୍ କରାଯାଏ ଓ ସେହି ଖାଦ୍ୟ-ଦ୍ରବ୍ୟକୁ ଗରିବ ଲୋକମାନଙ୍କ ମଧ୍ୟରେ ବଣ୍ଟନ କରାଯାଏ । ସେଦିନ ବୀର ଭାବରେ ତାଙ୍କୁ ପୂଜା କରାଯାଏ । ସେ ଜ୍ଞାତି, କୁଟୁମ୍ବ, ବନ୍ଧୁବାନ୍ଧବମାନଙ୍କ ହାତରୁ ଉପହାର ଗ୍ରହଣ କରନ୍ତି । ତାଙ୍କ ପରିବାର ବିରାଟ ଧନଶାଳୀ ତଥା ଖ୍ୟାତି ସମ୍ପନ୍ନ ପରିବାର ହୋଇଥିଲେ ମଧ୍ୟ ସମୟ ସମୟରେ ତାଙ୍କ ପରିବାରରେ ଅଶାନ୍ତି ସୃଷ୍ଟି ହେଉଥିଲା । ଏପରି ଅଶାନ୍ତି ବେଳେବେଳେ ବଡ଼ ଲୋକଙ୍କ ପରିବାରରେ ଘଟିଥାଏ । ସାମାନ୍ୟ ସାମାନ୍ୟ କାରଣରୁ ବିରାଟ ଅଶାନ୍ତି ସୃଷ୍ଟି ହୋଇ ତାଙ୍କ ପିତାଙ୍କ କାନକୁ ଯାଏ । ମୋତିଲାଲଜୀ ସବୁ ଶୁଣନ୍ତି ଓ ଏହା ମାଇପିମାନଙ୍କ କାରବାର ବୋଲି କହି ସେଥିରେ ଆଦୌ ଗୁରୁତ୍ୱ ଦିଅନ୍ତି ନାହିଁ ।

ଜବାହାର ଲାଲଙ୍କ ବାଲ୍ୟକାଳରେ ମହାନ୍ ଆଇରିସ୍ ମହିଳା ଶ୍ରୀମତୀ ଆନି ବେସାନ୍ତ ଭାରତକୁ ନିଜର ଜନ୍ମଭୂମି ଭାବରେ ଆଦରି ନେଇଥାଆନ୍ତି । ସେତେବେଳେ ଆନିବେସାନ୍ତ ଥିଲେ ଜଣେ ପ୍ରସିଦ୍ଧ ନେତ୍ରୀ । ବକ୍ତା ଭାବରେ ସାରା ଭାରତରେ ତାଙ୍କର ସୁଖ୍ୟାତି ଥିଲା । ବାଲ୍ୟକାଳରେ ଜବାହାରଲାଲ ତାଙ୍କ ସମ୍ପର୍କରେ ଆସି ତାଙ୍କଦ୍ୱାରା ପରିଚାଳିତ ଥିଓ-ସୋଫିକାଲ ସୋସାଇଟିରେ ଯୋଗଦାନ କଲେ । ଏହି ସୋସାଇଟି ବିଭିନ୍ନ ଧାର୍ମିକ ଚିନ୍ତା ଚେତନା ଉପରେ କାର୍ଯ୍ୟ-କରୁଥିଲା । ପ୍ରାଚୀନ ଭାରତୀୟ ଶିକ୍ଷା, ସଂସ୍କୃତି ଧର୍ମ ଓ ଚେତନା ସମ୍ପର୍କରେ ଶିକ୍ଷାଦାନ କରୁଥିଲା । ଥିଓସଫିକାଲ ସୋସାଇଟିରେ ଯୋଗଦାନ କରି ବାଳକ ଜବାହାରଲାଲ ଭାରତୀୟ ପ୍ରାଚୀନ ସଂସ୍କୃତି ଉପରେ ଗଭୀର ଜ୍ଞାନ ଅର୍ଜନ କରିଥିଲେ ।

ଏଲ୍ଲାହାବାଦରୁ ବାଲ୍ୟ ଓ ପ୍ରାଥମିକ ଶିକ୍ଷା ସମାପନକରି ମାତ୍ର ପନ୍ଦର ବର୍ଷ ବୟସରେ ୧୯୦୫ ମସିହା ମଇ ମାସରେ ଜବାହାରଲାଲ ତାଙ୍କ ପିତା, ମାତା ସାନ ଭଉଣୀ ସହ ଲଣ୍ଡନରେ ଯାଇ ପହଞ୍ଚିଲେ । ସେ ହାରୋ ପବ୍ଲିକ୍ ସ୍କୁଲରେ ନାମ ଲେଖାଇଲେ । ୧୯୦୫ ଖ୍ରୀଷ୍ଟାବ୍ଦ ଶେଷ ଆଡକୁ ଲଣ୍ଡନର ସାଧାରଣ ନିର୍ବାଚନ ହୋଇଥାଏ । ଏଥିରେ ଲିବେରାଲ ଦଳ ବିପୁଳ ସଂଖ୍ୟା ଗରିଷ୍ଠତା ସହ ବିଜୟ ଲାଭ କରିଥାଏ । ଏ ସମ୍ପର୍କରେ ବିଶେଷ ତଥ୍ୟ ପ୍ରଦାନ କରିବା ପାଇଁ ଶିକ୍ଷକ ପିଲାମାନଙ୍କୁ ପଚାରିଲେ । କିନ୍ତୁ ଏହି ନିର୍ବାଚନ ସମ୍ପର୍କରେ ଜବାହାରଲାଲଙ୍କ ବ୍ୟତିତ କୌଣସି ପିଲା କିଛି କହି ପାରିଲେ ନାହିଁ । ଜବାହାରଲାଲ ଏହି ନିର୍ବାଚନ ସମ୍ପର୍କରେ ପ୍ରାଞ୍ଜଳ ଭାବରେ ବୁଝାଇ ଦେଇ ଗୋଟି ଗୋଟି କରି ମନ୍ତ୍ରୀମାନଙ୍କ ନାମ ତାଲିକା ଓ ବିଭାଗ ଶିକ୍ଷକଙ୍କ ଆଗରେ ପ୍ରକାଶ କରିଥିଲେ । ୧୯୦୭ ମସିହାରେ ସେ କେମ୍ବ୍ରିଜର ଟ୍ରିନିଟି କଲେଜରେ ନାମ ଲେଖାଇଲେ । ସେଠାରେ ସେ ପ୍ରାକୃତିକ ବିଜ୍ଞାନ (Natural Scinece) ଅଧ୍ୟୟ କଲେ । ରସାୟନ ବିଦ୍ୟା, ଉଦ୍ଭିଦ ବିଜ୍ଞାନ ଓ ଭୂତତ୍ତ୍ୱ ଥିଲା ତାଙ୍କ ପଠନର ମୁଖ୍ୟ ବିଷୟ । କିନ୍ତୁ ପରେ ସେ ଲଣ୍ଡନର ବହୁ ବ୍ୟକ୍ତିଙ୍କ ସମ୍ପର୍କରେ ଆସି ସାହିତ୍ୟ, ଇତିହାସ ରାଜନୀତି ଓ ଅର୍ଥନୀତି ସମ୍ପର୍କରେ ଗଭୀର ଆଲୋଚନା କରି ସେ ସମ୍ବନ୍ଧରେ ଅଜସ୍ର ପୁସ୍ତକ ଅଧ୍ୟୟନ କଲେ । ଏଠାରେ ସେ ନିଜକୁ ଆଉ ପିଲା ବୋଲି ମନେ ନକରି ଜଣେ ପ୍ରାପ୍ତ ବୟସ ବ୍ୟକ୍ତିଭାବରେ ଦାୟିତ୍ୱଶୀଳ ହେଲେ । ୧୯୧୦ ମସିହାରେ ବିଜ୍ଞାନ 'ଟ୍ରାଇପ୍ରୋସ' ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀ ଅନର୍ସ ଉପାଧି ପାଇ କେମ୍ବ୍ରିଜ ତ୍ୟାଗ କଲେ । ତାପରେ ସେ ଦୁଇ ବର୍ଷ ଆଇନ ଅଧ୍ୟୟନ କଲେ । ଆଇନ ପରୀକ୍ଷାରେ ପାଶ୍ କରିବା ପାଇଁ ତାଙ୍କୁ ବେଶୀ କଷ୍ଟ ହେଉନଥିଲା । ସୁବିଧାରେ ଅଳ୍ପ ପରିଶ୍ରମରେ ସେ ଗୋଟିକ ପରେ ଗୋଟିଏ ପରୀକ୍ଷା ଦେଇ ସୁରୁଖୁରୁରେ ପାଶ୍ କରିଯାଉଥିଲେ । ୧୯୧୨ ମସିହାରେ ସେ ଆଇନ୍ ପାଶ୍ କରି ଘରକୁ ଫେରିଲେ । ବମ୍ବେରେ ପହଞ୍ଚିବା ବେଳେ ସେ ଅନୁଭବ କଲେ ଯେ, ସେ ନିଜେ ଗୋଟିଏ ଅବୋଧ ବାଳକ, ପ୍ରଶଂସା ପାଇଲା ଭଳି ଯେମିତି ତାଙ୍କଠାରେ କିଛି ନାହିଁ । ତା ପରେ ସେ ଭାରତ ବର୍ଷରେ ରହି ଆଇନ୍ ବ୍ୟବସାୟ କରିବାକୁ ଚିନ୍ତା କଲେ । ଏଠାରେ ତାଙ୍କ କର୍ମମୟ ଜୀବନର ସାମାନ୍ୟ କିଛି ଅଂଶ ପ୍ରକାଶ ନକଲେ ଯେପରି ତାଙ୍କ ବାଲ୍ୟ ଜୀବନର କାହାଣୀର ସଂଯୋଗ ରକ୍ଷା ହୋଇ ପାରିବ ନାହିଁ । କିନ୍ତୁ ଭାରତର ତତ୍କାଳୀନ ପରିସ୍ଥିତି ତାଙ୍କୁ ଆଇନ୍ ବ୍ୟବସାୟରେ ବାନ୍ଧି ରଖି ପାରିଲା ନାହିଁ । ସେ କ୍ରମେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ପ୍ରତି ଆକୃଷ୍ଟ ହେଲେ । ଗାନ୍ଧୀଜୀଙ୍କ ସମ୍ପର୍କରେ ଆସିଲେ । ୧୯୧୬ ମସିହା ବସନ୍ତ ପଞ୍ଚମୀ ତିଥିରେ 'କମଳା'ଙ୍କ ସହ ତାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା ।

ସେ ଦେଶ ମାତୃକା ବିଷୟ ଚିନ୍ତା କଲେ । ମାତୃଭୂମିର କଲ୍ୟାଣ ସାଧନ ପାଇଁ ବ୍ରତୀ ହେଲେ । ସ୍ୱାଧିନତା ସଂଗ୍ରାମରେ ଯୋଗଦାନକରି ପିତା ଓ ସ୍ତ୍ରୀଙ୍କ ସମେତ କାରାଗାର ଜେଲ ଭୋଗିଲେ । ତାଙ୍କ ଘର 'ଆନନ୍ଦ ଭବନ' ସ୍ୱାଧିନତା ସଂଗ୍ରାମର ପେଣ୍ଠସ୍ଥଳୀ ଭାବରେ ପରିଗଣିତ ହେଲା । ସେ ସ୍ୱାଧିନତା ଆନ୍ଦୋଳନରେ ଯୋଗଦାନକରି ସମୁଦାୟ ୩୨୬୨ ଦିନ ଜେଲ ଭୋଗିଥିଲେ । ୧୯୪୨ ମସିହା ଅଗଷ୍ଟ ମାସ ୮ ତାରିଖରୁ ୧୯୪୫ ମସିହା ଜୁନ୍ ୧୫ ତାରିଖ ପର୍ଯ୍ୟନ୍ତ ସେ ଅହମ୍ମଦ ନଗର ଫୋର୍ଟ ଜେଲରେ ବନ୍ଦୀଥିଲେ । ତାଙ୍କର ଏହି ବନ୍ଦୀ ଜୀବନ ସବୁଠାରୁ ଦୀର୍ଘତମ । ତାପରେ ଭାରତବର୍ଷ ସ୍ୱାଧିନ ହେଲା । ସେ ହେଲେ ସ୍ୱାଧିନ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ । ଭାଗ୍ୟବିଧାତା ଭାରତ

ବର୍ଷର ସମୂହ ଉନ୍ନତି କରିବା ଥିଲା ତାଙ୍କ ଜୀବନର ମହାନ୍ ଲକ୍ଷ୍ୟ । ବିଶ୍ୱରେ ଯୁଦ୍ଧର ଅବସାନ ଘଟି ଶାନ୍ତି ପ୍ରତିଷ୍ଠା ହେଉ, ଏହା ଥିଲା ତାଙ୍କ ଜୀବନର ମହାନ୍ ବ୍ରତ । ବିଶ୍ୱ ଜନମନରେ ସେ ଶାନ୍ତିର ସନ୍ଦେଶ ସୃଷ୍ଟି କରିବା ପାଇଁ ବାଣୀ ଶୁଣାଇଲେ । ସେ ଏକ ବିଭବଶାଳୀ ଧନାଢ୍ୟ ପରିବାରରେ ଜନ୍ମ ଲାଭକରି ବାଲ୍ୟକାଳରେ ଭୋଗବିଳାସ ଓ ପ୍ରାଚୁର୍ଯ୍ୟ ମଧ୍ୟରେ ପରିବର୍ଦ୍ଧିତ ହୋଇ ପରବର୍ତ୍ତୀକାଳରେ କ୍ଷଣ ଭଙ୍ଗୁର ଭୋଗବିଳାସ ଓ ଧନ ସମ୍ପଦକୁ ତୁଚ୍ଛ ମନେ କରି ଭାରତୀୟ ସ୍ୱାଧିନତା ସଂଗ୍ରାମରେ ଯୋଗଦାନ କରି, ଦୀର୍ଘ ଦିନ ଜେଲ ଭୋଗି, ଯେଉଁ ମହନୀୟ କୀର୍ତ୍ତିସ୍ତମ୍ଭ ସ୍ଥାପନ କରି ଯାଇଛନ୍ତି ତାହା ଚିରଦିନ ଭାରତ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିବ । ଏହାହିଁ ତାଙ୍କ ଜୀବନର ମହାନ୍ ଆଦର୍ଶ । ଭାରତବାସୀଙ୍କ ପାଇଁ ମହାନ୍ ଦାନ ।

ତାଙ୍କ କର୍ମମୟ ଜୀବନରେ ସେ ମାତ୍ର ଦିନକୁ ଘରିଘଣ୍ଟା ବିଶ୍ରାମ ନେଉଥିଲେ । ଅବ୍ୟଶିଷ୍ଟ ସମୟରେ ଭାରତର ବିକାଶ ନିମନ୍ତେ ଗଭୀର ଚିନ୍ତାମଗ୍ନ ରହୁଥିଲେ । ଏହିପରି କର୍ମମୁଖର ଜୀବନର ୧୭ ବର୍ଷ କାଳ ଭାରତର ଶାସନ ଦାୟିତ୍ୱ ବହନକରି ୧୯୬୪ ମସିହା ମଇ ମାସ ୨୭ ତାରିଖ ଦିନ ସେ ଇହଲୀଳା ସାଙ୍ଗ କଲେ । ତାଙ୍କ ନଶ୍ୱର ଶରୀରର ବିନାଶ ଘଟିଲା । କିନ୍ତୁ ମୃତ୍ୟୁ ବେଳକୁ ତାଙ୍କ ଟେବୁଲ ତଳେ ଥିବା କାଗଜରେ 'ରବର୍ଟ ଫ୍ରଷ୍ଟଙ୍କ'ର ମହାନ ବାଣୀ ଲେଖା ଥିଲା–

The woods are lovely, dark and deep, but I have promises to keep, and miles to go before I sleep and miles to go before I sleep,

ମୁକ୍ତିକା ସଂରକ୍ଷଣ ବିଭାଗ, ନଅମହଲା,
ଭୁବନେଶ୍ୱର---୭୫୧୦୦୧.

"ସୁନ୍ଦର ଯେତିକି ଅନ୍ଧାରସେତିକି
ଏହି ଯେ ଗହନ ବନ,
ତେଣୁ ତୁ ଆପଣା ସଂକଳ୍ପେ ଅଟଳ
ଅଚଳ ରହରେ ମନ !
ଆଗରେ ପଡ଼ିଛି ପଥ ବହୁଦୂର
ଅଛୁରି କେତେ ଯେ ବାକି
ଚାଲିବି ଚାଲିବି ନପଡ଼ିବି ଥକି
ମୁଦିବା ଆଗରୁ ଆଖି ।

# ତପେ ବର କି କୋପେ ବର

ଶ୍ରୀ ବଳରାମ ମହାନ୍ତି

ବନ୍ୟା ଓ ମରୁଡ଼ି ଓଡ଼ିଶାବାସୀଙ୍କ ଚିର ସହଚର । ତା' ସାଙ୍ଗକୁ ବେଳେ ବେଳେ ବାତ୍ୟାଯୋଗ ଦେଇ ଅବସ୍ଥାକୁ ଶୋଚନୀୟ କରି ଦିଏ । ବନ୍ୟା ଓ ମରୁଡ଼ି ଆଗପଛ ହୋଇ ଆସନ୍ତି । କେତେବେଳେ ବର୍ଷା ଅଭାବରୁ ମରୁଡ଼ି ଅବସ୍ଥା ଦେଖା ଦେଇଥାଏ । ଫସଲ ଆଉ ବଢ଼ି ପାରେ ନାହିଁ । ଜଳି ଯିବା ଭଳି ଅବସ୍ଥା ହୁଏ । ତାପରେ ହୁଏ ଘୋର ବର୍ଷା । ଆସେ ପ୍ରବଳ ବନ୍ୟା । ଘର ଦ୍ୱାର ଭସାଇ ନିଏ । ଗୋରୁଗାଈ ଭସାଇ ନିଏ । ସମୟ ସମୟରେ ମନୁଷ୍ୟ ମଧ୍ୟ ଭାସି ଯାଆନ୍ତି । ଗଛ ବା ଘର ଖୁଣ୍ଟରେ ଲାଗି ରହି ଯାଆନ୍ତି ବା ମରି ଯାଆନ୍ତି । ମଝିରେ ମଝିରେ ବାତ୍ୟା ହୁଏ ଅସ୍ୱାଭାବିକ ଭାବରେ । ଘରଦ୍ୱାର, ଗଛ ଓପାଡ଼ି ନେଇଯାଏ । ମଝିରେ ମାତ୍ର କେତେ କେତେ ବର୍ଷ ଛାଡ଼ି ଏହିଭଳି ବନ୍ୟା, ବାତ୍ୟା ଓ ମରୁଡ଼ି କେଉଁ ଅତୀତ କାଳରୁ ଓଡ଼ିଶାର ଜନଜୀବନକୁ ଅସ୍ତବ୍ୟସ୍ତ କରି ଅର୍ଥନୈତିକ ଅବସ୍ଥାକୁ ଦୋହଲାଇ ଦେଇ ଆସିଛି । ଏହିଭଳି ପ୍ରାକୃତିକ ବିପର୍ଯ୍ୟୟ କେତେକ ଅଞ୍ଚଳ, ବିଶେଷ କରି ଉପକୂଳ ଅଞ୍ଚଳ ଲୋକଙ୍କର ଦେହସହା ହୋଇ ଗଲାଣି । ବନ୍ୟା ହେଉ, ବାତ୍ୟା ହେଉ ବା ମରୁଡ଼ି ହେଉ ଯେଉଁ ଅଞ୍ଚଳରେ ଏହି ପ୍ରାକୃତିକ ବିପର୍ଯ୍ୟୟ ଘଟେ ସେଠାରେ ଜନଜୀବନ ବିପର୍ଯ୍ୟସ୍ତ କରିଦିଏ ମାତ୍ର ସମୟରେ ପ୍ରକୃତିର ଏହି କୋପ ବର ଦେଇଥାଏ, ଏହିବର ମଙ୍ଗଳଦାୟକ ହୁଏ । ମାତ୍ର ଅତୀତରେ ଓଡ଼ିଶାରେ ଘଟିଥିବା କେତେକ ଭୟାବହ ମରୁଡ଼ି କିପରି କୋପରେ ମଧ୍ୟ ଶୁଭ ବରଦାନ କରିଛି ଏଠାରେ ତାର ସୂଚନା ଦିଆଯାଇ ପାରେ ।

ଓଡ଼ିଶାରେ ବହୁ ଅତୀତ କାଳରୁ ମରୁଡ଼ି, ବନ୍ୟା ଓ ବାତ୍ୟା ଲାଗି ରହିଥିଲେ ମଧ୍ୟ କେତେକ ମରୁଡ଼ି ଓ ବନ୍ୟା ଏପରି ଭୟାବହ ଆକାର ଧାରଣ କରିଛି ଯାହାକୁ ଲୋକେ ବହୁକାଳ ପର୍ଯ୍ୟନ୍ତ ମନେ ରଖିଛନ୍ତି । ଅନ୍ୟଗୁଡ଼ିକର ସ୍ଥାନୀୟ ଗୁରୁତ୍ୱ ହିଁ ରହିଛି । ୧୮୬୬ ମସିହାର ଭୟାବହ ମରୁଡ଼ି ଯାହାକୁ ନଅଙ୍କ ଦୁର୍ଭିକ୍ଷ ବୋଲି କୁହାଯାଏ ତାହା ମନେ ପଡ଼ିଲେ ଦେହ ଶିହରି ଉଠିଥାଏ । ଏକଥା କଳ୍ପନା କରାଯାଇ ପାରିବ ନାହିଁ ଯେ ସେତେବେଳର କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାକୁ ନେଇ ଗଠିତ ଓଡ଼ିଶା ଡିଭିଜନର ଦଶଲକ୍ଷ ଲୋକ ଏହି ଦୁର୍ଭିକ୍ଷରେ ପ୍ରାଣ ହରାଇ ଥିଲେ । ସେତେବେଳେ ଏହି ତିନୋଟି ଜିଲ୍ଲାର ଲୋକ ସଂଖ୍ୟା ଥିଲା ୩୦ ଲକ୍ଷରୁ କିଛି ଅଧିକ । ତେଣୁ ପ୍ରାୟ ଏକ ତୃତୀୟାଂଶ ଲୋକ ଏହି ଦୁର୍ଭିକ୍ଷରେ ପ୍ରାଣ ହରାଇ ଥିଲେ । ଏଥିରୁ ସେତେବେଳେ ଓଡ଼ିଶା ଡିଭିଜନର ଜନଜୀବନ କିପରି ବିପର୍ଯ୍ୟସ୍ତ ହୋଇଥିଲା ତାହା ସହଜରେ ଅନୁମାନ କରାଯାଇ ପାରେ । ସେତେବେଳେ ବିରାଟ ଓଡ଼ିଶା ରାଜ୍ୟ ଖଣ୍ଡ ବିଖଣ୍ଡିତ ହୋଇ ଚାରୋଟି ପଡ଼ୋଶୀ ରାଜ୍ୟ ସହିତ ୬୩ ବର୍ଷ ଧରି ରହି ଥାଏ । ଓଡ଼ିଶା ଡିଭିଜନ ବଙ୍ଗ ପ୍ରଦେଶ ସହିତ ରହିଥାଏ । ୬୩ ବର୍ଷ ବ୍ରିଟିଶ ଶାସନ ଭିତରେ ଓଡ଼ିଶା ଡିଭିଜନରେ ମାଇଲିଏ ରେଳରାସ୍ତା ବା ଗୋଟିଏ ହେଲେ ଜଳସେଚନ ଯୋଜନା କାର୍ଯ୍ୟକାରୀ ହୋଇ ନଥିଲା । ୧୮୬୫ ମସିହାରେ ବର୍ଷାଭାବରୁ ମରୁଡ଼ି ହେଲା, ଧାନ ଫସଲ ସଂପୂର୍ଣ୍ଣ ନଷ୍ଟ ହୋଇଗଲା । ଲୋକେ କେବଳ ଧାନ ଫସଲ ଉପରେ ନିର୍ଭର କରୁଥିବାରୁ ଅଧିକାଂଶ ଲୋକଙ୍କର ଚାଉଳ କୌଣସିମତେ ବର୍ଷଟିଏ ଯାଏ । ଚାଉଳ ସରିଗଲା । ତେଣେ ମରୁଡ଼ି ଯୋଗୁଁ ଧାନ ଫସଲ ନଷ୍ଟ ହୋଇଗଲା । ସେଥିପାଇଁ ଲୋକେ ଚାଉଳ କିଣି ଖାଇବାକୁ ଚାହିଁଲେ ମଧ୍ୟ ଚାଉଳ ମିଳିଲା ନାହିଁ । ଯେଉଁ ଅଳ୍ପ କେତେକ ବଡ଼ ବଡ଼ ଜମି ମାଲିକଙ୍କ ପାଖରେ ଚାଉଳ ଥିଲା ତାହା ସେମାନେ ଭବିଷ୍ୟତରେ ବହୁ ଅଧିକ ମୂଲ୍ୟରେ ବିକ୍ରି କରିବା ପାଇଁ ଲୁଚାଇ ରଖିଲେ । ଏହି ଅବସ୍ଥା କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ତତ୍କାଳୀନ ସାହେବ କଲେକ୍ଟରମାନେ ଓଡ଼ିଶା ଡିଭିଜନ କମିଶନର ରେଭେନ୍‌ସା ସାହେବଙ୍କୁ ଜଣାଇଲେ ମଧ୍ୟ ସେ ସେଥିପ୍ରତି ପ୍ରଥମେ ଗୁରୁତ୍ୱ ଦେଲେ ନାହିଁ । ଯେତେବେଳେ ଜେଲରେ ବନ୍ଦୀମାନଙ୍କ ପାଇଁ ତଥା ପୋଲିସ କର୍ମଚାରୀଙ୍କ ପାଇଁ ଚାଉଳ ମିଳିଲା ନାହିଁ ସେତେବେଳେ ଯାଇ ରାଜସ୍ୱ କମିସନର ଅବସ୍ଥାର ଗୁରୁତ୍ୱ ଉପଲବ୍ଧି କରି ବଙ୍ଗ ପ୍ରଦେଶ ସରକାରଙ୍କୁ ଜଣେଇଲେ । ସେତେବେଳକୁ ଲୋକେ ପୋକମାଛି ପରି ମରୁଥାନ୍ତି । ମୁଣ୍ଡତଳେ କିନ୍ତୁ ଟଙ୍କା ଥାଏ । ଓଡ଼ିଶା ଡିଭିଜନ କମିସନରଙ୍କଠାରୁ ଚାଉଳ ପଠାଇବା ପାଇଁ ଜରୁରୀ ବାର୍ତ୍ତା ପାଇଁ ବଙ୍ଗ ପ୍ରଦେଶ ସରକାର ଷ୍ଟିମର ଯୋଗେ ଚାନ୍ଦବାଲି ବନ୍ଦରକୁ ଚାଉଳ ପଠାଇଲେ । ଚାନ୍ଦବାଲି ବନ୍ଦରରେ ଚାଉଳ ପହଞ୍ଚିଲା ବେଳକୁ ଘୋର ବର୍ଷା ଆରମ୍ଭ ହୋଇଗଲା । ସେ ବର୍ଷାଟା କୌଣସି କାମରେ ଆସିଲା ନାହିଁ ବରଂ ବର୍ଷା ଯୋଗୁଁ ଦୁଇମାସ କାଳ ବନ୍ଦରରୁ ଚାଉଳ ଖଲାସ ହୋଇ ପାରିଲା ନାହିଁ । ତେଣୁ ଅନାହାରରେ ମୃତ୍ୟୁ ସଂଖ୍ୟା ବଢ଼ିବାରେ ଲାଗିଲା ।

ଓଡ଼ିଶା ଡିଭିଜନର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଏହି ଦୁର୍ଭିକ୍ଷରେ ଅଗଣିତ ମୃତ୍ୟୁ ବ୍ରିଟିଶ ସରକାରଙ୍କୁ ପ୍ରମାଭୂତ କରି ଦେଇଥିଲା । ଦୁଇହଜାର ବର୍ଷତଳେ କଳିଙ୍ଗ ଯୁଦ୍ଧରେ ଏକଲକ୍ଷ ଲୋକଙ୍କର ଜୀବନ ଦାନ ଏହିପରି ଦିନେ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କୁ ପ୍ରମାଭୂତ କରି ଦେଇଥିଲା ଏବଂ ବିଜୟୀ ସମ୍ରାଟ ଅଶୋକ କଳିଙ୍ଗବାସୀଙ୍କ ଜୀବନ ଦାନରେ ପରାସ୍ତ ହୋଇ ଧର୍ମାଶୋକ ହୋଇଥିଲେ । ସେହିପରି ସେହି କଳିଙ୍ଗବାସୀଙ୍କ ଦଶଲକ୍ଷ ଦାୟାଦଙ୍କ ଅନାହାର ମୃତ୍ୟୁ ବ୍ରିଟିଶ ଶାସନକୁ ବିଚଳିତ କରି ଦେଇଥିଲା । ୬୩ ବର୍ଷ ନିର୍ମମ ଅବହେଳା ପରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଓଡ଼ିଶାର ଭୟାବହ ନଅଙ୍କ ଦୁର୍ଭିକ୍ଷ ପାଇଁ

ସମାଲୋଚନାର ଉତ୍ତର ଦେଇ ତତ୍କାଳୀନ ଭାରତମନ୍ତ୍ରୀ ୧୮୬୬ ମସିହାରେ ପ୍ରଥମଥର ପାଇଁ ମତ ପ୍ରକାଶ କଲେ ଯେ ଓଡ଼ିଶା ବଙ୍ଗ ପ୍ରଦେଶରେ ଯୋଡ଼ି ହୋଇ ରହିଥିବା ଯୋଗୁଁ ଓଡ଼ିଶାବାସୀଙ୍କର ଏହି ଦୁର୍ଦ୍ଦଶା ଘଟିଲା, ତେଣୁ ଓଡ଼ିଶା ଡ଼ିଭିଜନ ବଙ୍ଗ ପ୍ରଦେଶରୁ ଅଲଗା ହେବା ଉଚିତ । ଏହି ଘୋଷଣାରେ ଓଡ଼ିଶାବାସୀଙ୍କ ଭିତରେ ଆଶାର ସଂଚାର ହୋଇଥିଲା ଏବଂ ଓଡ଼ିଆଭାଷୀ ଅଞ୍ଚଳରେ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଏହି ଭୟାବହ ଦୁର୍ଭିକ୍ଷ ଓଡ଼ିଆଭାଷୀମାନଙ୍କ ପାଇଁ ଏକ ଚେତାବନୀ ସ୍ୱରୂପ ଥିଲା । ଓଡ଼ିଆ ବୁଦ୍ଧିଜୀବୀମାନେ ଏହାପରେ ଅନୁଭବ କରିଥିଲେ ଯେ ସଂଗଠିତ ଆନ୍ଦୋଳନ ଅଭାବରୁ ହିଁ ସେମାନେ ବ୍ରିଟିଶ ଶାସନାଧୀନରେ ଦୀର୍ଘକାଳ ଅବହେଳିତ ହୋଇ ଚରମ ଦୁର୍ଦ୍ଦଶା ଭୋଗିଥିଲେ । ତେଣୁ ସଂଗଠିତ ଭାବରେ ନିଜର ଦାବୀ ଉପସ୍ଥାପିତ କରିବା ପାଇଁ ତା'ପରଠାରୁ ଉଦ୍ୟମ ଆରମ୍ଭ ହେଲା । ନଅଙ୍କ ଦୁର୍ଭିକ୍ଷ ବର୍ଷ ହିଁ କର୍ମବୀର ଗୌରୀ ଶଙ୍କର ରାୟଙ୍କ ଉଦ୍ୟମରେ "ଉତ୍କଳ ଦୀପିକା" ସାପ୍ତାହିକ ପତ୍ରିକା ପ୍ରକାଶ ପାଇଲା ଏବଂ ସେହି ପତ୍ରିକା ଜରିଆରେ ଓଡ଼ିଆ ବୁଦ୍ଧିଜୀବୀମାନେ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା ମୋଚନ ପାଇଁ ଆନ୍ଦୋଳନ ଚଳେଇଲେ । ଏହାର ୧୬ ବର୍ଷ ପରେ କର୍ମବୀର ଗୌରୀଶଙ୍କର ଓ ଉତ୍କଳ ଗୌରବ ମଧୁସୂଦନଙ୍କ ଉଦ୍ୟମରେ ଓଡ଼ିଆଭାଷୀ ବୁଦ୍ଧିଜୀବୀଙ୍କର ପ୍ରଥମ ସଂଗଠିତ ଅନୁଷ୍ଠାନ "ଉତ୍କଳସଭା" ପ୍ରତିଷ୍ଠିତ ହେଲା ୧୮୮୨ ମସିହାରେ ।

ଶେଷରେ ନଅଙ୍କ ଦୁର୍ଭିକ୍ଷର ପ୍ରଥ ମାବସ୍ଥାରେ ଲୋକଙ୍କ ଦୁର୍ଦ୍ଦଶା ପ୍ରତି ନିର୍ଦ୍ଦୟ ଉଦାସୀନତା ପ୍ରଦର୍ଶନ କରି ସେତେବେଳର ଓଡ଼ିଶା ଡ଼ିଭିଜନର ରାଜସ୍ୱ କମିସନର ରେଭେନ୍‌ସା ସାହେବ ଯେଉଁ ଅନ୍ୟାୟ କରିଥିଲେ ତାହାପରେ ଉପଲବ୍ଧି କରି ଓଡ଼ିଶାରେ ଶିକ୍ଷା ପ୍ରସାର ଓ ଉନ୍ନୟନ କାର୍ଯ୍ୟରେ ତାଙ୍କର ଅବଶିଷ୍ଟ କାର୍ଯ୍ୟକାଳ ଅତିବାହିତ କରିଥିଲେ । ତାଙ୍କର ଉଦ୍ୟମରେ ନଅଙ୍କ ଦୁର୍ଭିକ୍ଷର ତିନିବର୍ଷ ପରେ କଟକରେ ପ୍ରଥମ ମେଡ଼ିକାଲ ସ୍କୁଲ, ପ୍ରଥମ ଶିକ୍ଷକ ଟ୍ରେନିଂସ୍କୁଲ, ପ୍ରଥମ ସର୍ଭେସ୍କୁଲ ଓ ପ୍ରଥମ ଆଇନ ବିଦ୍ୟାଳୟ ସ୍ଥାପନ କରିଥଲେ ଏବଂ ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାରେ କେନାଲ ଖୋଳା କାମକୁ ତ୍ୱରାନ୍ୱିତ କରିଥିଲେ । ଏହା ୧୮୮୩ ମସିହାରେ ସଂପୂର୍ଣ୍ଣ ହୋଇଥିଲା । ଏହି ସମୟରେ କେତେକ ବଙ୍ଗୀୟ ବୁଦ୍ଧିଜୀବୀଙ୍କ ଚକ୍ରାନ୍ତରେ ଓଡ଼ିଶାର ସ୍କୁଲମାନଙ୍କରୁ ଓଡ଼ିଆ ଭାଷା ଉଠାଇ ଦେଇ କେବଳ ବଙ୍ଗଳା ଭାଷା ମାଧ୍ୟମରେ ଶିକ୍ଷା ଦେବା ପାଇଁ ଅପକୌଶଳ ହୋଇଥିଲା । ଏହି ହୀନ କୌଶଳକୁ ପଣ୍ଡ କରି କର୍ମବୀର ଗୌରୀଶଙ୍କର, ରାମ ଶଙ୍କର, ବ୍ୟାସକବି ଫକୀର ମୋହନ, କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନ ପ୍ରମୁଖ ମନିଷୀମାନେ ଓଡ଼ିଆ ଭାଷାକୁ ରକ୍ଷା କରି ଆଧୁନିକ ଓଡ଼ିଆ ସାହିତ୍ୟ ପ୍ରତିଷ୍ଠା କଲେ । ରେଭେନ୍‌ସା ସାହେବ ଓ ତତ୍କାଳୀନ ବାଲେଶ୍ୱର ଜିଲ୍ଲା କଲେକ୍ଟର ବିମ୍ସ ସାହେବ ସେମାନଙ୍କୁ ସବୁମତେ ସାହାଯ୍ୟ ଓ ସହଯୋଗ କରିଥିଲେ । ପଣ୍ଡିତ ମୃତ୍ୟୁଞ୍ଜୟ ରଥ କର୍ମବୀର ଗୌରୀଶଙ୍କରଙ୍କ ଜୀବନୀ ପୁସ୍ତକରେ ଯଥାର୍ଥରେ ଲେଖିଛନ୍ତି ଯେ ନଅଙ୍କ ଦୁର୍ଭିକ୍ଷର ତିନିବର୍ଷ ପରେ "୧୮୬୯ ମସିହାରୁ ଉତ୍କଳରେ ନବଯୁଗର ଉପକ୍ରମ ହୋଇଛି" ।

ଏହାପରେ କିଛି କିଛି ବର୍ଷ ଅନ୍ତରରେ ବନ୍ୟା, ବାତ୍ୟା ଓ ମରୁଡ଼ି ଭଳି ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାର ଜନଜୀବନକୁ ବିପର୍ଯ୍ୟସ୍ତ କରିଛି କିନ୍ତୁ ନଅଙ୍କ ଦୁର୍ଭିକ୍ଷ ପରେ ୧୯୨୦ ମସିହାର ଭୟାବହ ମରୁଡ଼ିର କରାଳ ଦୃଶ୍ୟ ଓଡ଼ିଶାବାସୀ ବିଶେଷକରି ପୁରୀବାସୀ ବହୁକାଳ ପର୍ଯ୍ୟନ୍ତ ଭୁଲି ପାରି ନଥିଲେ । ୧୯୧୮ରେ ପୁରୀ ଜିଲ୍ଲାର ବହୁ ଅଞ୍ଚଳରେ ପ୍ରଥମେ ଭୀଷଣ ମରୁଡ଼ି ହୋଇ ପରେ ବନ୍ୟା ହେଲା । ଏହି ମରୁଡ଼ି ପୁରୀ ଜିଲ୍ଲାର ଚୋର ଅଞ୍ଚଳରେ ଭୟାବହ ହୋଇ ଉଠିଥିଲା । ଏହି ମରୁଡ଼ି ଦୁର୍ଭିକ୍ଷରେ ପରିଣତ ହୋଇ ଲୋକେ ପୋକମାଛି ପରି ମଲେ । ସତ୍ୟବାଦୀ ବନବିଦ୍ୟାଳୟର ପ୍ରତିଷ୍ଠାତା ଉତ୍କଳମଣି ଗୋପବନ୍ଧୁ ତାଙ୍କ ସହକର୍ମୀଙ୍କ ସହ ଚୋର ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ ଲୋକଙ୍କୁ ରକ୍ଷା କରିବା ଦିଗରେ ସମସ୍ତ ଶକ୍ତି ନିୟୋଜିତ କରିଥିଲେ । ସେହି ସମୟରେ ମହାତ୍ମାଗାନ୍ଧୀ ପୁରୀଜିଲ୍ଲାର ଏହି ଦୁର୍ଭିକ୍ଷର ଭୟାବହ ସମ୍ବାଦ ପାଇ ଏ ଅଞ୍ଚଳର ଲୋକଙ୍କୁ ସାହାଯ୍ୟ କରିବା ନିମନ୍ତେ ଠକ୍କରବାପାଙ୍କୁ ପଠାଇଥିଲେ । ଠକ୍କରବାପା, ସି.ଏଫ୍.ଆଣ୍ଡ୍ରୁଜ, ଲାଲା ଲଜପତରାୟ ଓ ମୋହନ ଲାଲ ପ୍ରମୁଖ ଚୋର ଅଞ୍ଚଳକୁ ଆସି ସାହାଯ୍ୟ ବ୍ୟବସ୍ଥା କଲେ, ସେମାନେ ଏ ଅଞ୍ଚଳରେ କାର୍ଯ୍ୟ କରୁଥିବା ବେଳେ ଉତ୍କଳମଣି ଗୋପବନ୍ଧୁଙ୍କ ନିଃସ୍ୱାର୍ଥ ସେବା, ନିଷ୍ଠା ଓ ସଂଗଠନ ଶକ୍ତିର ପରିଚୟ ପାଇ ମୁଗ୍ଧ ହୋଇ ମହାତ୍ମାଗାନ୍ଧୀଙ୍କୁ ଜଣାଇଥିଲେ, ଏହାର ବର୍ଷକ ପରେ ୧୯୨୦ ମସିହାରେ ଯେତେବେଳେ ମହାତ୍ମା ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ ସେ ଉତ୍କଳମଣି ଗୋପବନ୍ଧୁଙ୍କୁ ଏହି ଆନ୍ଦୋଳନର ସେନାପତି ରୂପେ ମନୋନୀତ କରିଥିଲେ । ୧୯୧୮-୨୦ ମସିହା ଦୁର୍ଭିକ୍ଷର ଏହାହିଁ ବରଦାନ ।

ଏସବୁ ଉତ୍କଟ ମରୁଡ଼ି ପରାଧୀନତା ବେଳର ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ପୂର୍ବର କଥା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେବା ପରେ ଏବଂ ସ୍ୱାଧୀନତା ପରେ ଯେପରି ଲୋକଙ୍କୁ ଖାଦ୍ୟ ପଦାର୍ଥ ବଦଳରେ କାମଧନ୍ଦା ଯୋଗାଇ ଦେବାପାଇଁ ବ୍ୟବସ୍ଥା ହେଉଛି, ନିୟନ୍ତ୍ରିତ ମୂଲ୍ୟରେ ଖାଦ୍ୟ ପଦାର୍ଥ ଯୋଗାଇ ଦିଆଯାଉଛି, ସଘନ ରବି ଫସଲ ଉତ୍ପାଦନ କରି ଖାଦ୍ୟାଭାବ କେତେକ ପରିମାଣରେ ପୂରଣ କରି ଦିଆଯାଉଛି, ମରୁଡ଼ି ଅବସ୍ଥାର ସମ୍ମୁଖୀନ ହେବା ପାଇଁ କେନ୍ଦ୍ର ସରକାର ତତ୍ପରତା ପ୍ରକାଶ କରୁଛନ୍ତି, ତାହା ପରାଧୀନ ଭାରତରେ ନଥିଲା । ସେଥିପାଇଁ ସେତେବେଳେ ଅତି ଉତ୍କଟ ଅବସ୍ଥା ଦେଖାଦେଉଥିଲା । ସ୍ୱାଧୀନତା ପରେ ଓଡ଼ିଶାରେ ଯେଉଁସବୁ ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାର ଜନଜୀବନକୁ ବିପର୍ଯ୍ୟସ୍ତ କରିଛି ସେଥିଭିତରୁ ୧୯୫୫-୫୬ ମସିହାର ପ୍ରଳୟଙ୍କରୀ ବନ୍ୟା, ୧୯୬୫-୬୬ ମସିହାର ଉତ୍କଟ ମରୁଡ଼ି, ୧୯୭୨ ମସିହାର ପ୍ରଳୟଙ୍କରୀ ବାତ୍ୟା, ୧୯୭୯-୮୦ ମସିହାର ମରୁଡ଼ି ଓ ୧୯୮୨-୮୩ ମସିହାର ବାତ୍ୟା, ବନ୍ୟା ଓ ମରୁଡ଼ି ଓଡ଼ିଶାବାସୀଙ୍କୁ ଦୁର୍ଦ୍ଦଶାଗ୍ରସ୍ତ କରିଛି, ତଦ୍ୱାରା ଓଡ଼ିଶାର କୃଷି ଉତ୍ପାଦନ ହ୍ରାସ ପାଇବା ଫଳରେ ଅର୍ଥନୈତିକ ଦୁର୍ଗତି ଘଟିଛି । ମାତ୍ର ପୂର୍ବରୁ ଅବହେଳା ଜନିତ ଶୋଚନୀୟ ଅବସ୍ଥା ଦେଖାଦେଇ ନାହିଁ ।

୧୯୬୫-୬୬ ମସିହାରେ ସମଗ୍ର ଓଡ଼ିଶାରେ କେତେକ ଅଞ୍ଚଳ ମରୁଡ଼ିଗ୍ରସ୍ତ ହୋଇଥିଲେ ମଧ୍ୟ କଳାହାଣ୍ଡି ଜିଲ୍ଲାର ଖଡ଼ିଆଳ, ସିନାପାଲି ଓ ଯୋଡେନ୍‌ଓବଲାଙ୍ଗୀର ଜିଲ୍ଲାର ବଙ୍ଗମୁଣ୍ଡା ପଞ୍ଚାୟତ ସମିତି ଅଞ୍ଚଳର ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଥିଲା, ସେଠାରେ ଖାଦ୍ୟାଭାବ ସାଙ୍ଗକୁ ଜଳାଭାବରେ ଲୋକେ ହନ୍ତସନ୍ତ ହୋଇଥିଲେ । ମାତ୍ର ଏହି ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କ ସାହାଯ୍ୟାର୍ଥେ ସରକାରୀ ଓ ବେସରକାରୀ ସାହାଯ୍ୟ ବିଧିବଦ୍ଧ ଭାବରେ ପହଞ୍ଚୁଥାଇଥିଲା । ତଥାପି ସେତେବେଳେ ଆଦିବାସୀ ଓ ଅନ୍ୟାନ୍ୟ ଦରିଦ୍ର ଶ୍ରେଣୀର ଲୋକେ ହାଟରେ କଂସାବାସନ ଓ ଗହଣା ବିକ୍ରିକରି ଦେଉଥିବା ଓ ଲୋକେ ଗାଁ ଛାଡ଼ି ପଳାଉଥିବା ଆଦି ପ୍ରତ୍ୟକ୍ଷଦର୍ଶୀଙ୍କ ବିବରଣୀ ପ୍ରକାଶ ପାଉଥିଲା । ଏହି ମରୁଡ଼ିରେ ସମଗ୍ର ଓଡ଼ିଶାର ୧୮ ଲକ୍ଷରୁ ଅଧିକ ଏକର ଜମିରେ ଫସଲ ନଷ୍ଟ ହୋଇଥିଲା ଏବଂ ଏହା ଫଳରେ ୭୦ କୋଟି ଟଙ୍କା ମୂଲ୍ୟର ଫସଲ ନଷ୍ଟ ହୋଇଥିବା ଅନୁମାନ କରାଯାଉଥିଲା । ଏହି ମରୁଡ଼ି ଭାରତ ସରକାର ତଥା ଓଡ଼ିଶା ସରକାରଙ୍କ ପାଇଁ ଥିଲା ଏକ ଚେତାବନୀ । ଏହାପରେ କୃଷି ସମ୍ବନ୍ଧୀୟ ନୂତନ ପଦ୍ଧତି ଅନୁସରଣ କରାଗଲା । ସେହିପରି ୧୯୭୯-୮୦ ମସିହାରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଉତ୍କଟ ମରୁଡ଼ି ଯୋଗେ ଓଡ଼ିଶାର କୃଷି ଉତ୍ପାଦନ ପୂର୍ବବର୍ଷ ଅପେକ୍ଷା ୧୫ ଲକ୍ଷଟନ କମିଯାଇଥିଲା । ଯାହା ଫଳରେ ରାଜ୍ୟର ଆୟ ୨୩୧ କୋଟି ହ୍ରାସ ପାଇଲା । ସେହିପରି ୧୯୮୨-୮୩ ମସିହାର ପ୍ରଳୟଙ୍କରୀ ବାତ୍ୟାରେ ଓଡ଼ିଶାର ଉପକୂଳ ଅଞ୍ଚଳ ତଥା ଢେଙ୍କାନାଳ, ସମ୍ବଲପୁର ଓ ମୟୂରଭଞ୍ଜ ଜିଲ୍ଲାର ୨୫ ହଜାର ବର୍ଗ କିଲୋମିଟର ଅଞ୍ଚଳ କ୍ଷତିଗ୍ରସ୍ତ ହୋଇଥିଲା । ୨୪୫ ଜଣ ଲୋକଙ୍କର ମୃତ୍ୟୁ ଘଟିଥିଲା ଓ ୧୨ ହଜାର ଗୋରୁଗାଈଙ୍କର ମୃତ୍ୟୁ ଘଟିଥିବା ସରକାରୀ ହିସାବରୁ ଜଣାଯାଏ । ଏହିସବୁ ମରୁଡ଼ି ପ୍ରତିଥର ଚେତାବନୀ ଦେଇଯାଉଛି ଯେ ଜଳସେଚନ ଯୋଜନାକୁ ତ୍ୱରାନ୍ୱିତ କରିବାକୁ ହେବ, ନୂତନ କୃଷି ପଦ୍ଧତି ଅନୁସରଣ କରିବାକୁ, ଶୁଷ୍କ ଚାଷ ପଦ୍ଧତି ଆଦି ଅନୁସରଣ କରି କୃଷି ଉତ୍ପାଦନ ବୃଦ୍ଧି କରିବାକୁ ହେବ । ◻◻

# ମରୁଡ଼ି ପରିସ୍ଥିତି ଏକ ଆହ୍ୱାନ

ଶ୍ରୀ କେ.ସି.ସାମଲ

ପ୍ରକୃତିର ବୈଚିତ୍ର୍ୟ ମଧ୍ୟରେ ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ଭାରତବର୍ଷ ଅନେକ ସମୟରେ ବନ୍ୟା, ବାତ୍ୟା ଓ ମରୁଡ଼ି ଭଳି ପ୍ରାକୃତିକ ଦୁର୍ବିପାକର ସମ୍ମୁଖୀନ ହୋଇଥାଏ । ଏହିସବୁ ଦୁର୍ବିପାକର ପ୍ରଭାବ ଦେଶର କୃଷି ବ୍ୟବସ୍ଥା ଉପରେ ଅନେକ ସମୟରେ ପଡୁଥିବାରୁ ଦେଶ ଖାଦ୍ୟଶସ୍ୟ ଜନିତ ସମସ୍ୟାର ସମ୍ମୁଖୀନ ହୋଇଥାଏ ।

ଦେଶର ଅଧିକାଂଶ ସ୍ଥାନ ଚାଷ ଜମି ବର୍ଷା ଜଳ ଉପରେ ନିର୍ଭର କରୁଥିବାରୁ ମୌସୁମୀ ପ୍ରବାହ ଓ ତତ୍‌ଜନିତ ବୃଷ୍ଟିପାତ ଉପରେ ଦେଶର କୃଷି ଉତ୍ପାଦନ ନିର୍ଭର କରିଥାଏ । ଚଳିତବର୍ଷ ମୌସୁମୀ ପ୍ରବାହର ଅନିଶ୍ଚିତତା ହେତୁ ଦେଶ ଏକ ଅଭୂତପୂର୍ବ ମରୁଡ଼ି ପରିସ୍ଥିତିର ସମ୍ମୁଖୀନ ହୋଇଛି । ଏହାଫଳରେ ରାଜସ୍ଥାନ, ଗୁଜୁରାଟ, ମହାରାଷ୍ଟ୍ର, କର୍ଣ୍ଣାଟକ ଓ ମଧ୍ୟପ୍ରଦେଶ ଭଳି କେତେକ ଚିର ମରୁଡ଼ି ପ୍ରପୀଡ଼ିତ ରାଜ୍ୟରେ କ୍ରମାଗତଭାବେ ଏକାଧିକ ବର୍ଷ ଧରି ଭୟାନକ ମରୁଡ଼ି ପରିସ୍ଥିତି ସୃଷ୍ଟି ହୋଇଛି । ପୂର୍ବାଞ୍ଚଳର କେତେକ ରାଜ୍ୟକୁ ଛାଡ଼ି ଦେଲେ ସମଗ୍ର ଦେଶରେ ଏହି ମରୁଡ଼ି ପରିସ୍ଥିତି ଦେଖାଦେଇଛି । ୧୯୬୫ ମସିହାରେ ଦେଶରେ ଯେଉଁ ମରୁଡ଼ି ପରିସ୍ଥିତି ସୃଷ୍ଟି ହୋଇଥିଲା, ଚଳିତ ବର୍ଷର ମରୁଡ଼ି ତାହାକୁ ବଳିଯିବ ବୋଲି ଆଶଙ୍କା କରାଯାଉଛି ।

ଗତମାସ ତିନି ତାରିଖ ଦିନ ନୂଆଦିଲ୍ଲୀଠାରେ ଆୟୋଜିତ ମୁଖ୍ୟମନ୍ତ୍ରୀ ସମ୍ମିଳନୀରେ ଭାଷଣ ଦେଇ ମରୁଡ଼ିର ମୁକାବିଲା କରିବା ପାଇଁ ମିଳିତ ପଦକ୍ଷେପ ଗ୍ରହଣ ଓ କୌଶଳ ପ୍ରୟୋଗ ଉପରେ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଗୁରୁତ୍ୱ ଆରୋପ କରିଥିଲେ । ସେ କହିଲେ ଯେ ଦେଶର କେତେକ ରାଜ୍ୟ ପାଇଁ ମରୁଡ଼ି ଓ ବନ୍ୟା ସମସ୍ୟା ନୂଆ ନୁହେଁ । କିନ୍ତୁ ଏବର୍ଷ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଛି ତାହା ଅନ୍ୟାନ୍ୟ ବର୍ଷ ତୁଳନାରେ ସଂପୂର୍ଣ୍ଣ ନିଆରା । ସାଧାରଣ ପ୍ରତିକାର ବ୍ୟବସ୍ଥା ଦ୍ୱାରା ଏହାର ମୁକାବିଲା କରିବା କଷ୍ଟ । ଚଳିତବର୍ଷ ମରୁଡ଼ି ପରିସ୍ଥିତି ମୁକାବିଲା ପାଇଁ ଜାତୀୟ ସ୍ତରରେ ଗୁରୁତ୍ୱର ସହ ଏହାର ପ୍ରତିକାର ବ୍ୟବସ୍ଥା ସହ ଉତ୍ସର୍ଗୀକୃତ ମନୋଭାବ ନେଇ କାର୍ଯ୍ୟ କରିବାକୁ ପଡ଼ିବ ବୋଲି ଶ୍ରୀ ଗାନ୍ଧୀ ମତ ଦେଇଛନ୍ତି ।

ଏଥିପାଇଁ କେନ୍ଦ୍ର ଓ ରାଜ୍ୟ ସରକାରଗୁଡ଼ିକ ମଧ୍ୟରେ ପୂର୍ଣ୍ଣ ସହଯୋଗ ରହିବା ଆବଶ୍ୟକ ବୋଲି ସେ ଗୁରୁତ୍ୱ ଆରୋପ କରିଛନ୍ତି ।

ମରୁଡ଼ି ଜନିତ ପରିସ୍ଥିତିରେ ଖାଦ୍ୟାଭାବ ଯୋଗୁଁ କେହି ଯେପରି ପ୍ରାଣ ନହରାନ୍ତି ସେଥିପ୍ରତି ବିଶେଷ ଯତ୍ନବାନ ହେବାକୁ ସରକାରୀ କଳକୁ ତାଗିଦ୍ କରି ଦିଆଯାଇଛି । ଗରିବ ଓ ସମାଜର ଅନ୍ୟାନ୍ୟ ଦୁର୍ବଳ ଶ୍ରେଣୀର ଲୋକଙ୍କ ଉପରେ ମରୁଡ଼ିର ପ୍ରଭାବ ବିଶେଷ ଭାବରେ ଅନୁଭୂତ ହେବାର ସମ୍ଭାବନା ଥିବାରୁ ସେମାନଙ୍କର ସର୍ବନିମ୍ନ ଖାଦ୍ୟ ଓ ପାନୀୟ ଆବଶ୍ୟକତା ମେଣ୍ଟାଇବାକୁ ସରକାର ବିଶେଷ ଗୁରୁତ୍ୱ ଦେଇଛନ୍ତି ।

**କ୍ରିୟାନୁଷ୍ଠାନ ଯୋଜନା**

ଦେଶରେ ଦେଖାଦେଇଥିବା ଯୁଗପତ୍ ବନ୍ୟା ଓ ମରୁଡ଼ି ଜନିତ କ୍ଷୟକ୍ଷତିର ସାହାଯ୍ୟ ପାଇଁ ଲୋକଙ୍କୁ ପର୍ଯ୍ୟାପ୍ତ ପରିମାଣର ରିଲିଫ ଯୋଗାଇ ଦେବାକୁ କେନ୍ଦ୍ର ସରକାର ଏକ କ୍ରିୟାନୁଷ୍ଠାନ ଯୋଜନା ପ୍ରସ୍ତୁତ କରିଛନ୍ତି । ଚଳିତ ବର୍ଷ ବର୍ଷା ଋତୁ ଆରମ୍ଭ ପୂର୍ବରୁ ଦେଶର ଜରୁରୀ ପାଣ୍ଠିରୁ ଦରକାର ପଡ଼ିଲେ ବନ୍ୟା ଓ ମରୁଡ଼ି ସାହାଯ୍ୟ ବାବଦରେ ଖର୍ଚ୍ଚ କରାଯିବ ବୋଲି କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା ।

ଏହା ବ୍ୟତୀତ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଆଗାମୀ ବର୍ଷା ଋତୁ ପର୍ଯ୍ୟନ୍ତ ପାନୀୟ ଜଳର ବ୍ୟବସ୍ଥା କରିବାକୁ ବିଭିନ୍ନ କାର୍ଯ୍ୟକ୍ରମମାନ ହାତକୁ ନେବା ପାଇଁ ରାଜ୍ୟ ସରକାରମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଏଥିପାଇଁ ଆବଶ୍ୟକ ହେଉଥିବା ଅର୍ଥ ରାଜ୍ୟମାନଙ୍କୁ କେନ୍ଦ୍ରୀୟ ଅନୁଦାନ ଆକାରରେ ଯୋଗାଇ ଦିଆଯିବ ବୋଲି ବ୍ୟବସ୍ଥା ଗ୍ରହଣ କରାଯାଇଛି ।

ମରୁଡ଼ି ଅଞ୍ଚଳରେ ପଶୁମାନେ ଯେପରି ଖାଦ୍ୟାଭାବ ଜନିତ ପରିସ୍ଥିତିର ଶିକାର ନହୁଅନ୍ତି ସେଥିପାଇଁ ପର୍ଯ୍ୟାପ୍ତ ଗୋଖାଦ୍ୟ ଯୋଗାଣ ସମେତ ପଶୁଶାଳା ଖୋଲିବା ପାଇଁ ରାଜ୍ୟମାନଙ୍କୁ ପରାମର୍ଶ ଦିଆଯାଇଛି । ପାନୀୟ ଜଳର ଆବଶ୍ୟକତା ମେଣ୍ଟାଇବା ପାଇଁ କେନ୍ଦ୍ର ସରକାର ଏଥିମଧ୍ୟରେ ନ'ଟି କ୍ଷତିଗ୍ରସ୍ତ ରାଜ୍ୟଙ୍କୁ ୫.୪୦ କୋଟି ଟଙ୍କା ସାହାଯ୍ୟ ଆକାରରେ ଯୋଗାଇ ଦେଇ ସାରିଲେଣି ।

ସବୁଠାରୁ ବେଶୀ କ୍ଷତିଗ୍ରସ୍ତ ରାଜ୍ୟ ରାଜସ୍ଥାନକୁ ମରୁଡ଼ି ସାହାଯ୍ୟ ବାବଦରେ ଏପର୍ଯ୍ୟନ୍ତ ୧୧୨ କୋଟି ୮୯ ଲକ୍ଷ ଟଙ୍କା ଯୋଗାଇ ଦିଆଗଲାଣି । ଏଥିମଧ୍ୟରୁ ୬୬ କୋଟି ଟଙ୍କା ବିଭିନ୍ନ କର୍ମନିଯୁକ୍ତିର ସୁଯୋଗ ସୃଷ୍ଟି କରିବା ପାଇଁ ଉଦ୍ଦିଷ୍ଟ । ଆସନ୍ତା ରବିଋତୁରେ ଅଧିକ ଫସଲ ଉତ୍ପାଦନ କରି ଖରିଫ ଶସ୍ୟ ହାନୀକୁ ଭରଣା କରିବା ପାଇଁ ଚାଷୀମାନଙ୍କୁ ସମସ୍ତ ପ୍ରକାର କୃଷିଭିତ୍ତିକ ସାହାଯ୍ୟ ଯୋଗାଇ ଦେବା ଉପରେ ମଧ୍ୟ ପ୍ରଧାନମନ୍ତ୍ରୀ ଗୁରୁତ୍ୱ ଆରୋପ କରିଛନ୍ତି । ନଭେମ୍ବର ପରଠାରୁ ଜଳବିଦ୍ୟୁତ ଉତ୍ପାଦନ ହ୍ରାସ ପାଇବାର ଯଥେଷ୍ଟ ସମ୍ଭାବନା ଥିବାରୁ ଶକ୍ତି ଯୋଗାଣ ଅବ୍ୟାହତ ରଖିବାକୁ ତାପଜ ଓ ଆଣବିକ ବିଦ୍ୟୁତ ଶକ୍ତି ଉତ୍ପାଦନ ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି ।

### ସାଧାରଣ ବଣ୍ଟନ ବ୍ୟବସ୍ଥା

ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ଦେଶ ପାଖରେ ପର୍ଯ୍ୟାପ୍ତ ପରିମାଣର ଖାଦ୍ୟଶସ୍ୟ ମହଜୁତ ଅଛି । କିନ୍ତୁ ଏହି ଖାଦ୍ୟ ଶସ୍ୟ ଦୂରଦୂରାନ୍ତର ନିଅଣ୍ଟିଆ ଅଞ୍ଚଳକୁ ପଠାଇବା ପାଇଁ ସାଧାରଣ ବଣ୍ଟନ ବ୍ୟବସ୍ଥା ଉପରେ ବିଶେଷ ଭାବେ ନିର୍ଭର କରିବାକୁ ପଡ଼ିବ । ଏଥିପାଇଁ ପ୍ରଚଳିତ ବ୍ୟବସ୍ଥାକୁ ଅଧିକ ସୁସଂହତ କରିବାକୁ ହେବ ।

କଳାବଜାରୀ ଓ ମହଜୁଦକାରୀଙ୍କ ବିରୋଧରେ ତୀକ୍ଷ୍ଣ ଦୃଷ୍ଟି ରଖିବା ପାଇଁ ସରକାରୀ କଳକୁ ତାଗିଦ କରି ଦିଆଯାଇଛି । ଦେଶରେ ଥିବା ସୁଲଭ ମୂଲ୍ୟ ଦୋକାନଗୁଡ଼ିକର ସଂଖ୍ୟା ବୃଦ୍ଧି କରାଯାଇଛି । ଏପର୍ଯ୍ୟନ୍ତ ୩୧୧,୦୦୦ ଟି ସୁଲଭ ମୂଲ୍ୟର ଦୋକାନ ଖୋଲାଯାଇଛି । ଆବଶ୍ୟକସ୍ଥଳେ ଅଭାବଗ୍ରସ୍ତ ଅଞ୍ଚଳରେ ଅଧିକ ସଂଖ୍ୟକ ସୁଲଭ ମୂଲ୍ୟର ଦୋକାନ ଖୋଲାଯିବ ବୋଲି ସଂପ୍ରତି କେନ୍ଦ୍ର ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ହରକିଷନ୍ ଲାଲ ଭଗତ ଘୋଷଣା କରିଛନ୍ତି ।

ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ନିଆଯାଇଥିବା ଉପରୋକ୍ତ ପଦକ୍ଷେପଗୁଡ଼ିକ ସଂକ୍ରାନ୍ତରେ ରାଜ୍ୟ ସରକାରମାନଙ୍କ ସହ କେନ୍ଦ୍ର କର୍ତ୍ତୃପକ୍ଷ ବିସ୍ତୃତ ଆଲୋଚନା କରି ସାରିଲେଣି । କୃଷିଋଣ ଯୋଗାଣ, ଗ୍ରାମ୍ୟ କର୍ମନିଯୁକ୍ତି ପାଇଁ ଋଣ ତଥା ଖାଇବା ତେଲ ଆମଦାନୀ ପାଇଁ ଅର୍ଥ ବ୍ୟବସ୍ଥା ଯଥେଷ୍ଟ ପୂର୍ବରୁ କରାଗଲାଣି ।

ମରୁଡ଼ି ଅବସ୍ଥାର ମୁକାବିଲା ପାଇଁ ଯେଉଁ ପରିଚାଳନାଗତ ଆବଶ୍ୟକତା ରହିଛି ତାହା ବସ୍ତୁତଃ ସଂପୃକ୍ତ ରାଜ୍ୟମାନଙ୍କ ଉପରେ ନିର୍ଭର କରୁଛି । ଅବଶ୍ୟ ପରିସ୍ଥିତି ଦୃଷ୍ଟିରୁ ଆବଶ୍ୟକୀୟ ଅର୍ଥ ଓ ଦିଗ୍‌ଦର୍ଶନ ଯୋଗାଇ ଦେବାକୁ କେନ୍ଦ୍ର ସରକାର ଆଗେଇ ଆସିବେ । କିନ୍ତୁ ଉଦ୍ଦିଷ୍ଟ ଅର୍ଥ ଲୋକମାନଙ୍କ ନିକଟରେ କିପରି ପହଞ୍ଚିବ ଏବଂ ସେଥିପାଇଁ କିପ୍ରକାର ବ୍ୟବସ୍ଥା ଗ୍ରହଣ କରାଯିବ ସେ କାର୍ଯ୍ୟ ମୁଖ୍ୟତଃ ରାଜ୍ୟ ସରକାରମାନଙ୍କ ଉପରେ ନିର୍ଭର କରୁଛି । ତଥାପି ମରୁଡ଼ିର ମୁକାବିଲା ପାଇଁ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରମାନଙ୍କ ମଧ୍ୟରେ ସହଯୋଗ ପ୍ରତିଷ୍ଠା ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼ିଛି ।

ବନ୍ୟା ଓ ମରୁଡ଼ି ସାହାଯ୍ୟ ପାଇଁ ଚଳିତବର୍ଷ ୬୦୦ କୋଟି ଟଙ୍କାର ଯେଉଁ କେନ୍ଦ୍ରୀୟ ବରାଦ ରହିଛି ତାହା ଆବଶ୍ୟକତାଠାରୁ କମ୍ । ଏକ୍ଷେତ୍ରରେ ଯେଉଁ ନିଅଣ୍ଟ ସୃଷ୍ଟି ହେବ ତା'ପାଇଁ ସରକାରଙ୍କୁ ଅତିରିକ୍ତ ସମ୍ବଳ ସଂଗ୍ରହ କରିବାକୁ ପଡ଼ିବ । ଏହାଛଡ଼ା ସରକାରୀ ଖର୍ଚ୍ଚରେ ମିତବ୍ୟୟିତା ଅବଲମ୍ବନ କରି ବହୁ ଅଯଥା ଖର୍ଚ୍ଚ କାଟ କରିବା ପାଇଁ ମଧ୍ୟ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରମାନେ ନିଷ୍ପତ୍ତି ନେଇଛନ୍ତି ।

ମରୁଡ଼ିର ମୁକାବିଲା ପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କ ଠାରୁ ଯେଉଁ ସାହାଯ୍ୟ ସହଯୋଗ ଆଶା କରାଯାଉଥିଲା ତାହା ସନ୍ତୋଷଜନକ ଭାବେ ମିଳିଛି । ଏହି ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷ କ୍ଷତିଗ୍ରସ୍ତ ଅଞ୍ଚଳରେ ଉଲ୍ଲେଖନୀୟ ସାହାଯ୍ୟ କାର୍ଯ୍ୟମାନ ହାତକୁ ନେଇଛନ୍ତି । ବିଭିନ୍ନ ଅଞ୍ଚଳରେ ପାନୀୟଜଳ ଯୋଗାଣ ବ୍ୟବସ୍ଥା ଖୋଲିବା ଓ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ଥିବା ତ୍ରୁଟି ବିଚ୍ୟୁତି ରୋକିବା ଆଦି ଉଲ୍ଲେଖନୀୟ କାର୍ଯ୍ୟ କରି ପ୍ରଶଂସାଭାଜନ ହୋଇଛନ୍ତି ।

### ଜାତୀୟ ଆହ୍ୱାନ

ଚଳିତବର୍ଷ ଭୟାନକ ମରୁଡ଼ିର ମୁକାବିଲା ପାଇଁ ଜାତୀୟ ସ୍ତରରେ ଏକ ଆହ୍ୱାନ ଆସିଛି । ସୌଭାଗ୍ୟବଶତଃ ଏବର୍ଷ କେନ୍ଦ୍ରୀୟ ଭଣ୍ଡାରରେ ପର୍ଯ୍ୟାପ୍ତ ପରିମାଣର ଖାଦ୍ୟଶସ୍ୟ ମହଜୁଦ ଥିବାରୁ ପରିସ୍ଥିତିକୁ ସମାଳି ନେବାରେ ବିଶେଷ କିଛି ଅସୁବିଧା ହେବ ନାହିଁ । ତେବେ ମରୁଡ଼ିଜନିତ ଅନ୍ୟାନ୍ୟ ପରିସ୍ଥିତି ତଥା ଆଗାମୀ ବର୍ଷର ଖାଦ୍ୟ ଉତ୍ପାଦନ ପରିମାଣ ଯେପରି ଧାର୍ଯ୍ୟ ଲକ୍ଷ୍ୟ ମୁତାବକ ହୋଇପାରିବ, ସେଥିପ୍ରତି ଆମକୁ ସତର୍କ ରହିବାକୁ ପଡ଼ିବ । ସେଥିପାଇଁ ଆମକୁ ମଧ୍ୟ ଉପଯୁକ୍ତ ପଦକ୍ଷେପ ନେବାକୁ ପଡ଼ିବ ।

ଦେଶର ମରୁଡ଼ି ଓ ବନ୍ୟାଜନିତ ପରିସ୍ଥିତିରୁ ଉଦ୍ଧାର ପାଇବା ପାଇଁ ଯଥେଷ୍ଟ ଆତ୍ମବିଶ୍ୱାସର ସହ ଆମକୁ ବିଭିନ୍ନ ଯୋଜନା କାର୍ଯ୍ୟକାରୀ କରିବାକୁ ପଡ଼ିବ । ପାରସ୍ପରିକ ସହଯୋଗ ଓ ସହାୟତା ସହ ଏହି ଦୁର୍ଦ୍ଦିନରୁ ରକ୍ଷା ପାଇବା ପାଇଁ ଲଢୁଆ ମନୋବୃତ୍ତି ଓ ଆତ୍ମବିଶ୍ୱାସର ସହ କାର୍ଯ୍ୟ କରିବାକୁ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଯେଉଁ ଆହ୍ୱାନ ଦେଇଛନ୍ତି ତଦନୁଯାୟୀ ସମସ୍ତେ ଆଚରଣ ପ୍ରଦର୍ଶନ କରିବା ଉଚିତ ।

(ପି.ଆଇ.ବି.)

କଠିନ ପରିଶ୍ରମ, ଅକ୍ଳାନ୍ତ ଉଦ୍ୟମ ବ୍ୟକ୍ତିଗତ ଜୀବନର ସାଫଲ୍ୟ ପାଇଁ ଯେତିକି ଆବଶ୍ୟକ, ଜାତୀୟ ଜୀବନର ସାଫଲ୍ୟ ପାଇଁ ସେତିକି ଆବଶ୍ୟକ । ଭାରତର ସମସ୍ତ ନୀତିଶାସ୍ତ୍ରର ଗୋଟିଏ ଉପଦେଶ—ଯତ୍ନ କର । ପରିଶ୍ରମ କର । ଶୋଇଲା ପୁଅର ଭାଗ ନାହିଁ, ଶୋଇଥିବା ସିଂହର ମୁହଁରେ ମୃଗ ଆସି ପଶିଯାଏ ନାହିଁ ।

ଜାନକୀ ବଲ୍ଲଭ ପଟ୍ଟନାୟକ

# କାଳୀ ରୂପ ଧାରଣର ରହସ୍ୟ ଓ କାଳୀପୂଜା

ଶ୍ରୀ କସ୍ତୁରୀ ଚରଣ ମହାନ୍ତ

ଆମ୍ଭମାନଙ୍କର ଏହି ହିନ୍ଦୁ ସମାଜରେ ପରିଲକ୍ଷିତ ହୁଅନ୍ତି ବହୁ ସଂପ୍ରଦାୟର ପୂଜକ । ସେମାନଙ୍କ ମଧ୍ୟରେ ପ୍ରାଧାନ୍ୟ ଲାଭ କରିଛନ୍ତି ବୈଷ୍ଣବ, ଶୈବ, ଶାକ୍ତ ଓ ଗାଣପତ୍ୟ ଆଦି କେତେକ ସଂପ୍ରଦାୟ । ଶକ୍ତି ଉପାସକମାନଙ୍କୁ ବୁଝାଯାଏ ଶାକ୍ତ । ବହୁ ପୂର୍ବକାଳରୁ ଆମ୍ଭମାନଙ୍କର ଏହି ଉତ୍କଳଖଣ୍ଡରେ ପ୍ରଚଳିତ ହୋଇ ଆସୁଛି ଶକ୍ତିପୂଜା । ବଣ ଜଙ୍ଗଲରେ ବାସକରୁଥିବା ଆଦିବାସୀମାନେ ପଥରମାନଙ୍କରେ ବା ବଡ଼ ବଡ଼ ବୃକ୍ଷର ଗଣ୍ଡିଦେଶରେ ଭିନ୍ନ ଆକାରରେ ଦେବୀମୂର୍ତ୍ତି ଖୋଦାଇ ପୂଜା ଅର୍ଚ୍ଚନା କରୁଥିଲେ ଐକାନ୍ତିକ ଭକ୍ତି ସହକାରେ । ପରେ ତାନ୍ତ୍ରିକ ବା କାପାଳିକମାନେ ରଣଚଣ୍ଡି ମୁଣ୍ଡମାଳିନୀ କରାଳବଦନୀ ମା କାଳୀଙ୍କର ମୂର୍ତ୍ତି ମୃତ୍ତିକାରେ ଗଢ଼ି ଆରମ୍ଭ କଲେ ଦେବୀଙ୍କର ପୂଜା । ସେମାନଙ୍କ ମଧ୍ୟରୁ କାପାଳିକମାନେ ନିର୍ଜ୍ଜନ ଶ୍ମଶାନରେ ଶବ ଆସନରେ ବସି ମା କାଳୀଙ୍କର ପୂଜା କରୁଥିଲେ ପଶୁ ବା ମନୁଷ୍ୟ ବଳି ଦାନକରି । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ପୂଜା କରାଯାଉଛି ମା କାଳୀଙ୍କୁ ତନ୍ତ୍ରସାଧନାର ପ୍ରଧାନ ଅଧିଷ୍ଠାତ୍ରୀ ଦେବୀରୂପରେ ।

ପୁରାଣରେ ବର୍ଣ୍ଣିତ ଅଛିଯେ କୌଣସି ଏକସମୟରେ ବ୍ରହ୍ମା, ବିଷ୍ଣୁ ଓ ମହେଶ ନିର୍ଜ୍ଜନ ଏକ ଜଙ୍ଗଲରେ ଧ୍ୟାନରତ ଥିଲେ ଏକ ନଦୀକୂଳରେ । ମହାମାୟା ସେମାନଙ୍କ ଅନ୍ତରର ମହତ୍ତ୍ୱଗୁଣର ପରିଚୟ ପାଇବା ପାଇଁ ଏକ ଗଳିତ ନାରୀ ଶବରୂପେ ଭାସି ଭାସି ସେ ନଦୀସ୍ରୋତରେ ବ୍ରହ୍ମାଙ୍କ ଧ୍ୟାନ ସ୍ଥାନରେ ନିକଟବର୍ତ୍ତୀ ହୁଅନ୍ତେ ସେ ମୁହଁ ଫେରାଇନେଲେ ଦୁର୍ଗନ୍ଧରେ ଅଧୀର ହୋଇ । ପରେ ବିଷ୍ଣୁଙ୍କ ଦୃଷ୍ଟିପଥକୁ ଆସନ୍ତେ ସେ ନିଜ ଧ୍ୟାନସ୍ଥ ସ୍ଥାନରୁ ଅପସରି ଗଲେ ଘୃଣାରେ । ଶେଷରେ ଶିବ ନଦୀମଧ୍ୟରୁ ସେ ଦୁର୍ଗନ୍ଧପୂର୍ଣ୍ଣ ଶବଟିକୁ ଆଣି ଗଭୀର ଧ୍ୟାନରେ ମଗ୍ନ ହେଲେ ସେ ଶବଟିକୁ ଆସନ କରି । ଜଗତଜନନୀ ମା ମହାମାୟା ତାଙ୍କ ଧ୍ୟାନରେ ସନ୍ତୁଷ୍ଟ ହୋଇ ତାଙ୍କୁ ଦେଲେ ତାଙ୍କର ଇପ୍ସିତ ବର । ସେହିଦିନୁ ସେ ପରିଚିତ ହେଲେ ଦେବ ଦେବ ମହାଦେବ ରୂପରେ ଏ ଧରାରେ ।

ସ୍ୱତଃ ମନର ପ୍ରଶ୍ନଉଠେ ଶକ୍ତି ସାଧନା କରିବାକୁ ହେଲେ କେଉଁ ଦେବୀଙ୍କର ପୂଜା କରଣୀୟ । ଉତ୍ତରରେ ଏତିକିମାତ୍ର କୁହାଯାଇ ପାରେ ଯେ 'ଶକ୍ତି' କହିଲେ ବୁଝାଏ ମହାଶକ୍ତିରୂପିଣୀ ଜଗଦଜନନୀ ମହାମାୟାଙ୍କୁ । ସ୍ୱୟଂ ମହାଦେବ ସିଦ୍ଧିଲାଭ କରିଛନ୍ତି ତାହାଙ୍କୁ ପୂଜା କରି । ପରିଶେଷରେ ତାଙ୍କ ଅନୁଗ୍ରହ ଲାଭକରି ତାଙ୍କୁ ପାଇଲେ ନିଜ ପତ୍ନୀରୂପେ । ଗୋଟିଏ ଉଦ୍ଦେଶ୍ୟଥିଲା ଦେବୀଙ୍କର ଶିବଙ୍କୁ ଏହିବର ପ୍ରଦାନ କରିବାରେ । ପ୍ରବଳ ପରାକ୍ରମୀ ପାପାଗ୍ରହୀ ଦକ୍ଷର ଧ୍ୱଂସ ସାଧନ ନିମିତ୍ତ ଜନ୍ମ ଗ୍ରହଣକଲେ ତାଙ୍କର କନ୍ୟା ସତୀରୂପେ । ବିବାହଯୋଗ୍ୟା ହୁଅନ୍ତେ ନାରଦଙ୍କ ପରାମର୍ଶ ନେଇ ଦକ୍ଷ ପ୍ରଜାପତି ବିବାହ ଦେଲେ ସତୀଙ୍କୁ ଶିବଙ୍କ ସହିତ । ଶିବ ତୁଷ୍ଟ ହେଲେ ସତୀଙ୍କର ଗଭୀର ନିଷ୍ଠା ଓ ଅଚଳା ଭକ୍ତିଦେଖି ।

କେତେଦିନ ପରେ ଏକ ବଡ଼ ଧରଣର ଯଜ୍ଞ ଆୟୋଜନ କଲେ ଦକ୍ଷ ପ୍ରଜାପତି । ବହୁ ଦେବ ଦେବୀ, ବହୁ ସାଧୁ ସନ୍ୟାସୀ ନିମନ୍ତ୍ରିତ ହୋଇଥିଲେ ସେହି ଯଜ୍ଞକୁ । ଶିବ ତାଙ୍କୁ ଶ୍ୱଶୁର ହିସାବରେ ସମ୍ମାନ ନଦେଉଥିବାରୁ ସେ ଜାଣିଶୁଣି ନିମନ୍ତ୍ରଣ କଲେନାହିଁ ହରଙ୍କୁ । ଫଳରେ ସତୀଙ୍କର ସେଠାକୁ ଯିବାକୁ ଆପତ୍ତି ଉଠାଇଲେ ଧୂର୍ଜଟି । ବହୁ ପ୍ରକାରେ ଅନୁନୟ ବିନୟ କଲେ ସତୀ ଯଜ୍ଞକୁ ଯିବାପାଇଁ । ଶେଷରେ ଉତ୍ତେଜନାରେ କଂପି ଉଠିଲା ତାଙ୍କ ସମସ୍ତ ଶରୀର । ଦେଖୁ, ଦେଖୁ ସତୀଙ୍କର ଦେହର ରଙ୍ଗ ପରିଣତ ହେଲା କୃଷ୍ଣ ବର୍ଣ୍ଣରେ । ଚକ୍ଷୁର ତାରକାଦ୍ୱୟ ଗୋଲାକାର ହୋଇ ଅଗ୍ନିପିଣ୍ଡୁଳା ତୁଲ୍ୟ ଘୁରିବାକୁ ଲାଗିଲା । ମୁଖଟି ପରିଣତ ହେଲା ଏକ ବିରାଟ ଗହ୍ୱରରେ । ସେହି ଭୟଙ୍କରୀ ମୂର୍ତ୍ତି ବଡ଼ ବଡ଼ ଦାନ୍ତ ଦେଖାଇ ହସି ଉଠିଲେ । ସେହି ବିକଟ ହସରେ ଭୀତତ୍ରସ୍ତ ହେଲେ ଦେବ ଦେବ ମହାଦେବ । ସେହି ଭୀଷଣ ଦର୍ଶନା ମୂର୍ତ୍ତିକୁ ଦେଖି ପଳାୟନ କଲେ ଶିବ ଗୃହର ଉତ୍ତର କୋଣକୁ, ମାତ୍ର ଦେଖିଲେ ସମ୍ମୁଖରେ ଦକ୍ଷିଣମୁଖ କରି ଠିଆହୋଇଥିବା ଏକ କୃଷ୍ଣବର୍ଣ୍ଣା ବିବସନା ନାରୀମୂର୍ତ୍ତି । ତାଙ୍କର ଷୋଳଗୋଟି ହାତ ଏବଂ ଗଳାରେ ମୁଣ୍ଡମାଳ । ହର ଭୟରେ ଚିତ୍କାର କରି ଉଠିଲେ ଏବଂ ମାଗିଲେ ତାଙ୍କର ପ୍ରକୃତ ପରିଚୟ । ଦେବୀ ଉତ୍ତରରେ କହିଲେ ସେ ତାଙ୍କର ଅତି ପରିଚିତା ଆଦରଣୀୟା ସ୍ତ୍ରୀ ସତୀ– ଦକ୍ଷିଣକାଳୀ ।

ଏ ପ୍ରକାର ପ୍ରଳୟଙ୍କରୀ ରୂପ ଧାରଣ କରିବାର କାରଣ ଶିବ ପଚ୍ଚରନ୍ତେ ଦେବୀ ଉତ୍ତର ଦେଲେ ଯେ ଏହି ହେଉଛି ତାଙ୍କର ପ୍ରକୃତ

ରୂପ । ସେ ମହାଶକ୍ତି ମହାମାୟା । ସ୍ମରଣ କରାଇଦେଲେ କିପରି ସେ ତାଙ୍କର ଯୋଗ ସାଧନାରେ ପ୍ରୀତ ହୋଇ ବରଣ କରିଥିଲେ ତାଙ୍କୁ ସ୍ୱାମୀରୂପେ ଅତ୍ୟାଚାରୀ ଦକ୍ଷର ଧ୍ୱଂସ ସାଧନ ନିମିତ୍ତ । ସେ କହିଲେ ସେ ଆଦିମାତା ସୃଷ୍ଟିକାରିଣୀ ଜଗତଜନନୀ । ମାତ୍ର ଦୁଷ୍ଟ-ଦଳନ ପାଇଁ ଧାରଣ କରନ୍ତି ସଂହାରମୂର୍ତ୍ତି କରାଳ ବଦନୀ କାଳୀରୂପ । ସେ ବିବସନା ଆଲୁଳିତ କେଶା, ଉନ୍ନତବକ୍ଷା ସ୍ତନଦାର୍ଢ୍ୟୀ, ସଦ୍ୟଜାତ ପାଳିନୀ, ମୁଣ୍ଡମାଳିନୀ—ଲୟମାନ ଜୀବ ଜଗତର ପ୍ରତୀକ ।

ସେ ପଞ୍ଚାଶଟି ବ୍ରହ୍ମାଣ୍ଡ ଲୟକରି ଗଳାରେ ଧାରଣ କରିଛନ୍ତି ପଞ୍ଚାଶଟି ମୁଣ୍ଡର ମାଳା । ତାଙ୍କ ରୂପର ସୀମା ନାହିଁ । ସେ ମନ ଓ ଭାବର ଅଗୋଚର । ତାଙ୍କର ଏସବୁ ବିଭିନ୍ନ ରୂପ ବିଭୂତି ନାମରେ ଖ୍ୟାତ । ସେମାନଙ୍କ ମଧ୍ୟରେ ଦଶ-ଗୋଟି ପ୍ରଧାନ । ତାଙ୍କ ସମକ୍ଷରେ ବିକଟାଳ ରୂପ ଧାରଣ କରିଥିବା କାଳୀରୂପୀ ମହାବିଦ୍ୟା ତାରା । ଡାହାଣ ପାଶ୍ୱେ ଛିନ୍ନମସ୍ତା ଏବଂ ବାମପାଶ୍ୱେ ଭୁବନ ମୋହିନୀ ଭୁବନେଶ୍ୱରୀ । ପଶ୍ଚାତେ ଶତ୍ରୁ ଦର୍ପଦଳିନୀ ବିମଳାମୁଖୀ । ଦକ୍ଷିଣ-ପୂର୍ବ କୋଣରେ ଭୀଷଣ ଦଶନା ବିଧବାରୂପୀ ମହାବିଦ୍ୟା ଧୂମାବତୀ । ଦକ୍ଷିଣ-ପଶ୍ଚିମରେ ତ୍ରିପୁରା ସୁନ୍ଦରୀ ଜଗତପାଳିନୀ କମଳା । ଉତ୍ତର-ପଶ୍ଚିମରେ ମାତଙ୍ଗୀ ଓ ଉତ୍ତର-ପୂର୍ବ କୋଣରେ ଷୋଡ଼ଶୀ । ଏମାନଙ୍କର କ୍ଷମତା ବିଷୟରେ ଶିବ ପଶ୍ଚରଲେ ଦେବୀ ଉତ୍ତରଦେଲେ ଚତୁର୍ବର୍ଗ ଫଳପ୍ରାପ୍ତ ହୁଏ ଐକାନ୍ତିକ ଭକ୍ତିସହକାରେ ଏମାନଙ୍କୁ ପୂଜା ଅର୍ଚ୍ଚନା କଲେ । ମାରଣ, ତାରଣ, ସ୍ତମ୍ଭନ, ମୋହନ, ଉଚ୍ଚାଟନ ଇତ୍ୟାଦି ସମସ୍ତ ବିଦ୍ୟା ଆୟତ୍ତ କରାଯାଏ, ଏହି ଦେବୀମାନଙ୍କୁ ଭକ୍ତିସହକାରେ ପୂଜା କରି ସେମାନଙ୍କର ସନ୍ତୋଷବିଧାନ କରି ପାରିଲେ ।

ଏସବୁ ଶୁଣି ତ୍ରିଲୋଚନ ବୁଝିପାରିଲେ କେଡେ ବଡ଼ ଭୁଲ ସେ କରିଛନ୍ତି ସତୀଙ୍କର ଦକ୍ଷାଳୟ ଯିବାର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି । ଅନୁତପ୍ତ ହୋଇ ସେ କରଯୋଡ଼ି କ୍ଷମା ମାଗିଲେ ଦେବୀଙ୍କ ନିକଟରେ । ଲଜ୍ଜିତା ହୋଇ କାଳୀ ଜିଭ କାମୁଡ଼ି କହିଲେ, "ଛି କଥଣ କରୁଛ ଏପରି । ଯେତେ ହେଲେ ତୁମେ ମୋର ସ୍ୱାମୀ, ଇହ ଓ ପରକାଳର ଦେବତା, ମୋତେ ଆଉ ଅଧିକ ଲଜ୍ୟା ଦିଅନାହିଁ । ତୁମେ ବିକାରଶୂନ୍ୟ ମହାସାଧକ ଭୋଳାନାଥ । ତୁମର ମହିମା ଅପାର । ତୁମେ ଯୋଗୀମାନଙ୍କର ପରମ ଆରାଧ୍ୟମହାଯୋଗୀ ମହେଶ୍ୱର । ଆଜିଠାରୁ ତୁମ୍ଭ ମୁଖ ନିସୃତ ଆଗମ ଶାସ୍ତ୍ର ହେବ ଜଗତର ପରିତ୍ରାଣ ଶାସ୍ତ୍ର । ଆଗମ ନିଗମ ଯୋଗର ପରିପୂରକ" ଏହାକହି ଦେବୀ ଶାନ୍ତମୂର୍ତ୍ତି ଧାରଣକରି ସତୀରୂପରେ ଦେବ ଦେବ ମହାଦେବଙ୍କର ପଦବନ୍ଦନା କଲେ ।

ମହାମହିମାମୟୀ ମାହେଶ୍ୱରୀଙ୍କ ସାଧନା ଅତୀବ କଷ୍ଟସାଧ୍ୟ । ଏହି ସାଧନାପଥରେ ସାଧକ ବ୍ରତୀ ହେଲେ "ସୋହଂ" ଅର୍ଥାତ୍ ନିଜକୁ ମନେକରିବାକୁ ପଡ଼ିବ ବିକାରଶୂନ୍ୟ ଶିବ ତୁଲ୍ୟ ବା ମହାଶକ୍ତିମୟୀ ଆଦିମାତା ଈଶ୍ୱରୀରୂପରେ । ସେଥିପାଇଁ କୌଣସି ଦେବୀ ବା ଦେବତାଙ୍କୁ ପୂଜା କରିବାକୁ ହେଲେ ପୂଜା ସମୟରେ ପୂଜକ ବା ପୁରୋହିତଙ୍କୁ ମନେ-କରିବାକୁ ପଡ଼ିବ ସେହି ଆରାଧ୍ୟ ଦେବ ବା ଦେବୀରୂପରେ ।

ଦେବତା ରହିଅଛନ୍ତି ଅନ୍ତର ମଧ୍ୟରେ ହୃଦମନ୍ଦିରରେ । ଏହିତ ପାର୍ଥକ୍ୟ ଯାହା ପରିଲକ୍ଷିତ ହୁଏ ଜୀବ ଏବଂ ଈଶ୍ୱର ମଧ୍ୟରେ । ମାୟାଦ୍ୱାରା ପ୍ରଭାବିତ ହୁଏ ଜୀବ, ମାୟା ନିଜେ ଯାହାଦ୍ୱାରା ପ୍ରଭାବିତ ବା ବଶୀଭୂତ ସେହି ହେଉଛନ୍ତି ସାକ୍ଷୀସ୍ୱରୂପ ନିର୍ବିକାର ପରଂବ୍ରହ୍ମ ଈଶ୍ୱର ।

ତାଙ୍କର ରହିଛି ଐଶ୍ୱରୀକ କ୍ଷମତା ଯାହା ଜୀବ ପକ୍ଷରେ ଉପଲବ୍ଧି କରିବା ବିଶେଷ କଷ୍ଟସାଧ୍ୟ । ଅଣିମା, ଲଘିମା, ମହିମା, ପ୍ରାପ୍ତି ପ୍ରାକାମ୍ୟ ଓ ଦୂରଶ୍ରବଣ ଇତ୍ୟାଦି ତାଙ୍କର ଅଛି ଅଷ୍ଟଦଶ ସିଦ୍ଧି । ଏମାନଙ୍କ ମଧ୍ୟରେ ଆଠଗୋଟି ସିଦ୍ଧି ହେଉଛି ପ୍ରଧାନ ।

"ସିଦ୍ଧିଙ୍କ ମଧ୍ୟେ ଅଷ୍ଟସାର
ତେଣୁ ସେ ବୋଲାନ୍ତି ଈଶ୍ୱର" ।

ଏହି ସିଦ୍ଧିବଳରେ ଅସାଧ୍ୟ ସାଧିତ ହୋଇପାରେ । ଏହି ସବୁ ସିଦ୍ଧିଲାଭ କରିଛନ୍ତି ମହାମାୟା ପରମେଶ୍ୱରୀ ମା କାଳୀ । ଏଣୁ ଦରକାର ଅନୁଯାୟୀ ଜଗତର ମଙ୍ଗଳସାଧନାର୍ଥେ ସେ ବିଭିନ୍ନ ସମୟରେ ଭିନ୍ନଭିନ୍ନରୂପ ଧାରଣ କରନ୍ତି । ସତୀ ହେଉଛନ୍ତି [illegible] ଆଦିମାତା ମହାମାୟା ମାହେଶ୍ୱରୀ । ଏହି ପ୍ରକାରେ [illegible] ଜଗତଜନନୀ କରାଳବଦନୀ ମୁଣ୍ଡମାଳିନୀ ମା କାଳୀଙ୍କର ଏ ଧରାଧାମରେ ଆବିର୍ଭାବ ।

ତାହାପରେ ଦେବୀ ଯାଇଥିଲେ ଦକ୍ଷଯଜ୍ଞକୁ ଭଗିନୀ-ମାନଙ୍କ ସହିତ ପତିପରାୟଣା ସତୀ ସ୍ୱାମୀଙ୍କ ନିନ୍ଦା ସହି ନ ପାରି ଡେଇଁ ପଡ଼ିଥିଲେ ଯଜ୍ଞକୁଣ୍ଡକୁ । ଶେଷରେ ଅତ୍ୟାଚାରୀ ଦକ୍ଷର ଶିରଚ୍ଛେଦନ କଲେ ତ୍ରିଲୋଚନ । ଏହି ପ୍ରକାରେ ସତୀଙ୍କର ଇଚ୍ଛା ପୂର୍ଣ୍ଣତା ଲଭିଲା ।

କେତେକ ପୁରାଣରୁ ଜଣାଯାଏ ଯେ ମହିଷାସୁର ଓ ଅନ୍ୟାନ୍ୟ ଅସୁରମାନଙ୍କୁ ଯୁଦ୍ଧରେ ସଂହାରକରି ମ୍ରିୟମାଣ ହୋଇ ପଡ଼ିଥିଲେ ଦେବୀ । ଅସୁରମାନଙ୍କ ରକ୍ତରେ ପ୍ଲାବିତ ହେଲା ବସୁନ୍ଧରା । ମନରେ ବିଶେଷ କ୍ରୋଧ ଜାତ ହେବାରୁ ବିଶ୍ୱ ସୃଷ୍ଟିର ଧ୍ୱଂସ ସାଧନ ପାଇଁ ଧାରଣ କଲେ ମହାପ୍ରଳୟଙ୍କରୀ ଉଗ୍ରରୂପ । ଭାଳେଣୀ ପଡ଼ିଲା ଦେବତାଙ୍କ ମଧ୍ୟରେ । ଶେଷରେ ଶାନ୍ତ ହେଲେ ଦେବୀ ଶିବଙ୍କ ଆକୁଳ ପ୍ରାର୍ଥନାରେ । ଚଣ୍ଡୀ ପୁରାଣରେ ଅଛିଯେ ମହିଷାସୁର ସେନାପତି ରକ୍ତବୀଜ ସହିତ ଦୁର୍ଗା ଯୁଦ୍ଧ କରୁଥିବା ସମୟରେ କପାଳରୁ ଜାତ କଲେ ଏକ ଦେବୀ । କେତେକ ତାଙ୍କୁ ଚାମୁଣ୍ଡା କହନ୍ତି । ସପ୍ତଶତୀ ଚଣ୍ଡୀରେ ଉଲ୍ଲେଖ ଅଛି ଦେବୀଙ୍କ ସ୍ତୋତ୍ର ଏହି ପ୍ରକାରେ ।

"ଦଂଷ୍ଟ୍ରା କରାଳ ବଦନେ ଶିରୋମାଳା ବିଭୂଷଣେ
ଚାମୁଣ୍ଡେ ମୁଣ୍ଡ ମଥନେ ନାରାୟଣୀ ନମସ୍ତୁତେ ।

ସୁଲୋଚନା ଭବନ
କାଛି ବଜାର
କଟକ ୭୫୩୦୦୧

# ଜିଲ୍ଲା ପରିକ୍ରମା : ପୁରୀ

ଶ୍ରୀ ବ୍ରଜ କିଶୋର ଦାସ

ଚଳିତ ବର୍ଷ ଅନିୟମିତ ତଥା ସ୍ୱଳ୍ପ ବୃଷ୍ଟି ଫଳରେ ରାଜ୍ୟର ଅନ୍ୟାନ୍ୟ କେତେକ ଜିଲା ପରି ପୁରୀ ଜିଲାରେ ମଧ୍ୟ ମରୁଡ଼ି ପରିସ୍ଥିତି ଦେଖାଦେଇଛି ଓ ଜିଲ୍ଲାର ୨୯ଟି ବ୍ଲକ୍ ଭଣା ଅଧିକେ କ୍ଷତିଗ୍ରସ୍ତ ହୋଇଛି । ମେ ମାସରେ ସାଧାରଣତଃ୬୭ ମିଲି-ମିଟର ବର୍ଷା ହେଉଥିବା ବେଳେ ଚଳିତ ବର୍ଷ ମାତ ୩୯ ମି. ମି. ବର୍ଷା ହୋଇଛି । ଜୁନ୍ ଓ ଜୁଲାଇ ମାସରେ ସାଧାରଣତଃ ୨୦୭ ମି- ମି. ଓ ୩୧୦ ମି.ମି. ବର୍ଷା ହେବା ସ୍ଥଳେ ମାତ୍ର ଯଥାକ୍ରମେ ୮୩ ମି. ମି. ଓ ୨୧୬ ମି- ମି ବର୍ଷା ହୋଇଛି । ଏଥିରୁ ଜିଲ୍ଲାର ବର୍ଷା ଅଭାବଜନିତ ପରିସ୍ଥିତି ଅନୁମାନ କରିହେବ । ଅବଶ୍ୟ ଜୁଲାଇ ମାସରେ ହୋଇଥିବା ବର୍ଷା ଚାଷୀମାନଙ୍କୁ ବିଶେଷ ସହାୟକ ହୋଇଥିଲେ ମଧ୍ୟ ପରିସ୍ଥିତିର ବିଶେଷ ଉନ୍ନତି ହୋଇ ପାରିଲା ନାହିଁ । କାରଣ ଅଗଷ୍ଟ ମାସରେ ୩୦୦ ମି- ମି. ବର୍ଷା ହେବା ବେଳେ ଚଳିତ ବର୍ଷ ମାତ୍ର ୧୮୪ ମି- ମି. ବର୍ଷା ହେଲା । ମୋଟା ମୋଟି ଭାବେ ଦେଖିବାକୁ ଗଲେ ଜିଲାରେ ସେପ୍ଟେମ୍ବର ମାସ ଶେଷ ସୁଦ୍ଧା ୧୨୧୫.୯ ମି- ମି- ବର୍ଷା ହେଉଥିବା ବେଳେ ଚଳିତ ବର୍ଷ ମାତ ୬୧୪.୪ ମି- ମି. ବର୍ଷା ହୋଇଛି । ଏହା ଫଳରେ ଜିଲ୍ଲାର ୩୯୭ଟି ଗ୍ରାମ ପଞ୍ଚାୟତ ମଧ୍ୟରୁ ୨୯୮ଟି ପଞ୍ଚାୟତରେ ଫସଲହାନି ଘଟିଛି ଓ ବିଶେଷ ଭାବରେ ଖରିଫ ଫସଲ ନଷ୍ଟ ହୋଇଛି ।

ଚଳିତ ବର୍ଷ ଖରିଫ୍ ଋତୁରେ ଜିଲ୍ଲାରେ ୩ ଲକ୍ଷ ୮୨ ହଜାର ୯୯୫ ହେକ୍ଟର ଜମିରେ ଧାନ ଚାଷ ପାଇଁ ଲକ୍ଷ ରଖା ଯାଇଥିଲା ଓ ପ୍ରାୟ ୩ ଲକ୍ଷ ୭୭ ହଜାର ୧୬୯ ହେକ୍ଟର ଜମିରେ ଧାନଚାଷ କରାଯାଇଥିଲା ବୋଲି କୃଷି ବିଭାଗ ସୂତ୍ରରୁ ଜଣାଯାଇଛି । ଏଥି ମଧ୍ୟରୁ ୨ ଲକ୍ଷ ୧୮ ହଜାର ୧୨୦ ହେକ୍ଟର ଜମିର ଧାନ ଫସଲ କ୍ଷତି ହୋଇଥିବାର ଜଣାଯାଇଛି । ସେଥିମଧ୍ୟରୁ ଡିପ ଜମି ପରିମାଣ ୮୯୭୫୨, ମଝିଆଳି ଜମି ୭୯୬୩୨ ଓ ଖାଲଜମି ୪୮୭୩୬ ହେକ୍ଟର ହେବ । ସେହିପରି ଅଣଧାନ ଜମିରେ ମକା, ମାଣ୍ଡିଆ, ଚିନାବାଦାମ୍, ବିରି, ମୁଗ ଓ ପନି ପରିବା ପ୍ରଭୃତି ଅନ୍ୟାନ୍ୟ ଫସଲ ପାଇଁ ୮୨୩୨୩ ହେକ୍ଟର ଲକ୍ଷ ରଖାଯାଇଥିବା ସ୍ଥଳେ ୭୧୨୬୦ ହେକ୍ଟରରେ ଏ ସବୁ ଫସଲ କରାଯାଇଥିଲା ମାତ୍ର ବର୍ଷାଭାବଜନିତ ପରିସ୍ଥିତିରେ ପ୍ରାୟ ୨୦୮୬୯ ହେକ୍ଟର ଜମିରେ ଏହି ଫସଲ ନଷ୍ଟ ହୋଇଥିବାର ଜଣାଯାଇଛି ।

ଖରିଫ୍ ଫସଲର କ୍ଷତି ଦୃଷ୍ଟିରୁ ବ୍ୟାପକ ରବିଚାଷ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି। ଗତ ବର୍ଷ ରବି ଋତୁରେ ୩ ଲକ୍ଷ୍ୟ ୪୫ ହଜାର ହେକ୍ଟର ଜମିରେ ରବିଚାଷ ପାଇଁ ଲକ୍ଷ୍ୟଥିବା ସ୍ଥଳେ ୩ଲକ୍ଷ ୪୬ ହଜାର ୩୩୭ ହେକ୍ଟରରେ ଏହା କରାଯାଇଥିଲା । କିନ୍ତୁ ଚଳିତ ବର୍ଷ ୩ ଲକ୍ଷ ୪୯ ହଜାର ୬୦୦ ହେକ୍ଟରରେ ରବି ଚାଷ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିବା ସ୍ଥଳେ ରବିଋତୁ ଆରମ୍ଭ ହେବାର ଅଳ୍ପ ଦିନମଧ୍ୟରେ ପ୍ରାପ ୪୫ ହଜାର ହେକ୍ଟରରେ ରବିଚାଷ କରାଯାଇ ପାରିଲଣି । ଚଳିତ ରବି ଋତୁରେ ଧାର୍ଯ୍ୟ ଲକ୍ଷ୍ୟ ପୂରଣ ହୋଇ ପାରିବ ଓ ପରବର୍ତ୍ତୀ ସମୟର ବର୍ଷା ଜନିତ ପରିସ୍ଥିତି ରବି ଚାଷ ପାଇଁ ଅନେକ କ୍ଷେତ୍ରରେ ଅନୁକୂଳ କ୍ଷେତ୍ର ସୃଷ୍ଟି କରିବ ବୋଲି ଆଶା କରାଯାଉଛି ।

ମରୁଡ଼ିଗ୍ରସ୍ତ ଚାଷୀମାନଙ୍କୁ ବିଭିନ୍ନ ଉପାୟରେ ସାହାଯ୍ୟ ଦେବା ପାଇଁ ବ୍ୟବସ୍ଥା କରାଯାଉଛି । ଯେଉଁପରି କ୍ଷୁଦ୍ର ଗରିବ ଓ ନାମମାତ୍ର ଚାଷୀଙ୍କର ଉଚ୍ଚ ଜମିମାନଙ୍କରେ ଦୁଇ ତୃତୀୟାଂଶ ଫସଲ ନଷ୍ଟ ହୋଇଛି ସେମାନଙ୍କୁ ମିନିକିଟ୍ ଯୋଗାଇ ଦେବା ପାଇଁ ପଦକ୍ଷେପ ନିଆଯାଉଛି । ଚାରି କିଲୋଗ୍ରାମ ମୁଗ ବିହନ ପ୍ୟାକେଟ୍ ୩୮୨୦, ଚାରି କେ. ଜି. ବିରି ୮୪୮୦ ପ୍ୟାକେଟ୍ ଓ ଦୁଇ କିଲୋଗ୍ରାମ ରାଶି ବିହନ ୨୧୦ ପ୍ୟାକେଟ୍, ସହିତ ଦଶ-କିଲୋଗାମର ୧୨୩୦୦ ପ୍ୟାକେଟ୍ ସାର ଓ ପାଞ୍ଚ କିଲୋଗ୍ରାମର ୨୧୦ ପ୍ୟାକେଟ୍ ସାର ବଣ୍ଟନ କରାଯାଇଛି । ଏହା ଫଳରେ ୧୨୫୧୦ କ୍ଷୁଦ୍ର ଓ ନାମମାତ୍ର ଚାଷୀଉପକୃତ ହୋଇ ପାରିଛନ୍ତି । ଏ ସବୁ ବ୍ୟତୀତ ଚାଷୀ ମାନଙ୍କୁ ଉନ୍ନତ ବିହନ ଯୋଗାଇବା ପାଇଁ ୪୫୦ କୁଇଣ୍ଟାଲ ଗହମ, ୬,୮୨୦ କୁଇଣ୍ଟାଲ ଚିନାବାଦାମ, ମୁଗ ୫୧ କୁଇଣ୍ଟାଲ, ବିରି ୧୫୦ କୁଇଣ୍ଟାଲ ଓ ଆବଶ୍ୟକୀୟ ପରିମାଣରେ ହରଡ଼ ଓ ସୋରିଷ ପ୍ରଭୃତିର ବିହନ ଯୋଗାଇବା ପାଇଁ ବିହନ ନିଗମକୁ ବରାଦ କରାଯାଇଛି । ଏଥି ମଧ୍ୟରେ ପ୍ରାୟ ୨୯୦ କୁଇଣ୍ଟାଲ ଗହମ ଓ ୨,୪୦୦ କୁଇଣ୍ଟାଲ ଚିନାବାଦାମ ବିହନ ବଣ୍ଟନ କରାଯାଇ ସାରିଲଣି ।

ଅନିୟମିତ ବର୍ଷାଫଳରେ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ବିଶେଷ ଭାବରେ ନୟାଗଡ଼ ଓ ଖୋର୍ଦ୍ଧା ଉପଖଣ୍ଡର ଅନେକ ଅଞ୍ଚଳରେ ଫସଲ ଅବସ୍ଥାରେ ଅନିଶ୍ଚୟତା ଦେଖା ଦେଇଛି । ପ୍ରବାହିତ ଜଳଧାରା ମାଧ୍ୟମରେ ଜଳସେଚନର ବ୍ୟବସ୍ଥା କରିବା ପାଇଁ ଜିଲ୍ଲାର ୨୯ଟି ବ୍ଲକ୍ ମଧ୍ୟରୁ ମାତ୍ର ୭ ଗୋଟିବ୍ଲକ୍‌ରେ ଏହି ସୁଯୋଗ ରହିଛି । ଏଣୁ କ୍ଷୁଦ୍ର ଜଳସେଚନର ଆବଶ୍ୟକତା ବିଶେଷଭାବେ ଉପଲବ୍ଧି କରାଯାଉଛି । ସେଚକୂପ, ସେଚକୂପ ବିଦ୍ୟୁତ୍‌କରଣ କାର୍ଯ୍ୟ ଓ ଉଠା ଜଳସେଚନ କାର୍ଯ୍ୟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଛି । ନୟାଗଡ଼ ଓ ଖୋର୍ଦ୍ଧା ଉପଖଣ୍ଡରେ ସେଚକୂପର ଚାହିଦା ବଢି ଯାଇଛି । ଉଠା ଜଳସେଚନ ପଏଣ୍ଟ ଗୁଡ଼ିକ ସକ୍ରିୟ ରଖିବାକୁ ଉଦ୍ୟମ କରାଯାଉଛି । ଜିଲ୍ଲାରେ ଥିବା ୩୯୮ଟି ଉଠାଜଳସେଚନ ପଏଣ୍ଟରୁ ୩୪୨ଟି ବର୍ତ୍ତମାନ କାର୍ଯ୍ୟକାରୀ ହେଉଛି ବୋଲି ବିଭାଗୀୟ ସୂତ୍ରରୁ ଜଣାଯାଉଛି । ଇତି ମଧ୍ୟରେ ୧୧ଟି ଅଚଳ ପଏଣ୍ଟକୁ କାର୍ଯ୍ୟକ୍ଷମ କରାଯାଇ ଥିବାର ଜଣାଯାଉଛି । କ୍ଷୁଦ୍ର ଜଳସେଚନର ଗୁରୁତ୍ୱ ଉପଲବ୍ଧି କରାଯାଉଥିବାରୁ ଆଗାମୀ ଆର୍ଥିକ ବର୍ଷର ଯୋଜନା ବ୍ୟୟ ପାଇଁ ପ୍ରାୟ ୬ କୋଟି ୩୬ ଲକ୍ଷ ଟଙ୍କା ବ୍ୟୟ କରିବାକୁ ଜିଲ୍ଲା ଯୋଜନା ବୋର୍ଡ ସୁପାରିଶ୍ କରିଛନ୍ତି । ମରୁଡ଼ି ପରିସ୍ଥିତିର ମୁକାବିଲା କରିବା ପାଇଁ ୨୧୩ଟି ଆଡ଼ିବନ୍ଧ ନିର୍ମାଣ ପାଇଁ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି ।

ଗ୍ରାମାଞ୍ଚଳରେ କାମଧନ୍ଦା ଯୋଗାଇବା ବିଶେଷ ଭାବରେ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଲୋକମାନଙ୍କୁ କାମ ଦେବା ପାଇଁ ବ୍ୟାପକ ବ୍ୟବସ୍ଥା କରାଯାଉଛି । ଜାତୀୟ ଗ୍ରାମ୍ୟ ନିଯୁକ୍ତି କାର୍ଯ୍ୟକ୍ରମ ଅନୁଯାୟୀ ଚଳିତ ବର୍ଷ ୧୬୭.୧୬ଲକ୍ଷ ଟଙ୍କାରୁ ଗତ ସେପ୍‌ଟେମ୍ବର ମାସ ଶେଷ ସୁଦ୍ଧା ଏକ କୋଟି ୨୭ ଲକ୍ଷ ୫୫ ହଜାର ଟଙ୍କା ଖର୍ଚ୍ଚ କରା ଯାଇଛି । ଏହା ଫଳରେ ୬'୨୨ ଲକ୍ଷ ଶ୍ରମ ଦିବସର କାର୍ଯ୍ୟ ସୃଷ୍ଟି କରା ଯାଇଛି । ଏହା ବ୍ୟତୀତ ଦ୍ୱିତୀୟ ଦଫାରେ ୩୫ ଲକ୍ଷ ଟଙ୍କା ୪୬୭'୭ ମେଟ୍ରିକ ଟନ୍ ଗହମ ଓ ସମ ପରିମାଣ ଚାଉଳ ମଧ୍ୟ ମିଳିଛି । ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ଶ୍ରମଭିତ୍ତିକ କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ ୧୦୯୧ଟି କାର୍ଯ୍ୟ ପାଇଁ ୨୪ ଲକ୍ଷ ଟଙ୍କା ଦିଆଯାଇଛି । ଆବଶ୍ୟକତାକୁ ଚାହିଁ ଅଧିକ କାର୍ଯ୍ୟ ହାତକୁ ନେବାକୁ ଉଦ୍ୟମ କରାଯାଉଛି । ଏହି ଶ୍ରମଭିତ୍ତିକ କାର୍ଯ୍ୟ ଜରିଆରେ ଗତ ଅକ୍‌ଟୋବର ମାସ ଶେଷ ସୁଦ୍ଧା ୧ ଲକ୍ଷ ୫୩ ହଜାର ୫୦୦ ଶ୍ରମ ଦିବସର କାର୍ଯ୍ୟ କରାଯାଇଛି ।

ଜନ ସାଧାରଣଙ୍କୁ ପାନୀୟ ଜଳ ଯୋଗାଇବା କାର୍ଯ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଚଳିତ ବର୍ଷ ୫୩୨ଟି ନଳକୂପ ଖୋଳିବାର ପ୍ରସ୍ତାବ ଥିଲା ଓ ପୂର୍ବ ବର୍ଷରୁ ୨୭୭ଟି ନଳକୂପ ବାକି ରହିଥିଲା । ଇତି ମଧ୍ୟରେ ୫୫୯ଟି ନଳକୂପ ଖୋଳାଯାଇ ସାରିଛି । ଅବଶିଷ୍ଟ କାର୍ଯ୍ୟ ବିଭିନ୍ନ ପର୍ଯ୍ୟାୟରେ ଚାଲୁ ରହିଛି । ମରୁଡ଼ି ପରିସ୍ଥିତି ପାଇଁ ଅଧିକ ୬୬ଟି ନଳକୂପ ଅନୁମୋଦନ କରାଯାଇଛି ଓ ଏଥି ମଧ୍ୟରୁ ୧୫ଟିର କାର୍ଯ୍ୟ ଶେଷ ହୋଇ ଯାଇଛି ।

ଶତକଡ଼ା ୬୦ ଭାଗରୁ ଊର୍ଦ୍ଧ୍ୱ ଫସଲହାନି ଅଞ୍ଚଳରେ ଚାଲୁ ରହିଥିବା ଗର୍ଭବତୀ ମହିଳା ଓ ଶିଶୁମାନଙ୍କୁ ଖାଦ୍ୟ ଦେବା କାର୍ଯ୍ୟ ବ୍ୟତୀତ ଅଧିକ ପାଞ୍ଚ ହଜାର ବୟସ୍କ ଓ ଶିଶୁମାନଙ୍କୁ ମାଗଣା ଖାଦ୍ୟ ବିତରଣ ପାଇଁ ପଦକ୍ଷେପ ନିଆଯାଇଛି । ବର୍ତ୍ତମାନ ପାଇଁ ଏ ବାବଦରେ ୩ ଲକ୍ଷ ୭୫ ହଜାର ଟଙ୍କା ବ୍ୟୟ କରିବାକୁ ଆବଣ୍ଟନ ମିଳିଛି । ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଥିବା କଂଟ୍ରୋଲ ଦୋକାନ ଗୁଡ଼ିକ ଜରିଆରେ ଚାଉଳ, ଗହମ, ଚିନି ଓ କିରୋସିନି ପ୍ରଭୃତି ଅତ୍ୟାବଶ୍ୟକ ପଦାର୍ଥ ଯୋଗାଇଦେବା ପାଇଁ ଯଥୋଚିତ ଧ୍ୟାନ ଦିଆଯାଉଛି । ସର୍ବୋପରି ମରୁଡ଼ି ପରିସ୍ଥିତିର ମୁକାବିଲା କରିବା ପାଇଁ କୌଣସି ପ୍ରକାର ଶିଥିଳତାକୁ ପ୍ରଶ୍ରୟ ଦିଆଯିବ ନାହିଁ ବୋଲି ଜିଲ୍ଲା ପ୍ରଶାସନ ପକ୍ଷରୁ ସମସ୍ତଙ୍କୁ ସତର୍କ କରି ଦଆ-ଯାଇଛି ।

ଜିଲ୍ଲା ସୂଚନା ଓ ଲୋକସଂପର୍କ ଅଧିକାରୀ,
ପୁରୀ ।

ଶିଳ୍ପରେ ଉନ୍ନତ ନ ହେଲେ କୌଣସି ଦେଶ କୃଷିରେ ଉନ୍ନତ ହୋଇ ପାରିବ ନାହିଁ । ଜାପାନରେ କୃଷିର ଉନ୍ନତିର ମୂଳରେ ତା'ର ଶିଳ୍ପର ବିକାଶ ରହିଚି । ଆମେରିକାରେ ଶିଳ୍ପର ଚରମ ବିକାଶ ହେବା ଯୋଗୁଁ କୃଷିର ଚରମ ଉନ୍ନତି ଘଟିଚି ।

ଜାନକୀ ବଲ୍ଲଭ ପଟ୍ଟନାୟକ

# ସଫଳ କାହାଣୀ

## ବ୍ରଜବନ୍ଧୁଙ୍କ ଭାଗ୍ୟ ବଦଳିଲା

କୋରାପୁଟ ଜିଲ୍ଲା ମାଲକାନଗିରି ଉପଖଣ୍ଡର ମାଥିଲି ବ୍ଲକ୍ ଅନ୍ତର୍ଗତ କାଲିଆଗୁଡ଼ା ଏକ କ୍ଷୁଦ୍ର ଗ୍ରାମ । ଏହି ଗ୍ରାମର ବାସିନ୍ଦା ଶ୍ରୀ ବ୍ରଜବନ୍ଧୁ ରାଉତ, ତାଙ୍କର ବୃଦ୍ଧ ପିତା ଶ୍ରୀ ଭାସ୍କର ରାଉତ । ମୂଲ ଲଗିବା ଉପରେ ଗରିବ ପରିବାରରେ ଜାତ ବ୍ରଜବନ୍ଧୁ ଜୀବନ ଯାପନ ସାଙ୍ଗକୁ ଘୋର ମାନସିକ ଅଶାନ୍ତି ଭିତରେ ବିଚରା ଡହଳ ବିକଳ ହୋଇ ଏଆଡ଼େ ସେଆଡ଼େ ଘୁରି ବୁଲୁଥିଲା । ଏମିତି ବୁଲୁ ବୁଲୁ ଜାଣିବାକୁ ପାଇଲା ଯେ, ଗ୍ରାମାଞ୍ଚଳ ଗରିବ ଲୋକଙ୍କ ଅର୍ଥନୈତିକ ଉତ୍ଥାନ ଯୋଜନାରେ ସରକାରୀ ସାହାଯ୍ୟ ମିଳୁଛି । ବୁଝା ବୁଝି କରି ଆର୍ଥିକ ସାହାଯ୍ୟ ପାଇଁ ବ୍ଲକ୍ କାର୍ଯ୍ୟାଳୟରେ ଦରଖାସ୍ତ କଲା । ଭାଗ୍ୟକୁ ବ୍ୟାଙ୍କରୁ ସରକାରଙ୍କ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା (ଆଇ. ଆର. ଡି. ପି.) ଦ୍ୱାରା ୩,୦୦୦ଟଙ୍କା ପାଇଲା । ସେହି ଟଙ୍କାରେ ତେଜରାତି ଦୋକାନଟିଏ କଲା । କ୍ରମେ ସେ ଟିକିଏ ଆଶ୍ୱସ୍ତି ଲାଭ କଲା । ଦୈନିକ ଯାହା ବିକ୍ରୟ କରେ ସେଥିରୁ କିଛି କିଛି ସଞ୍ଚୟ କରି ବ୍ୟାଙ୍କ ଋଣ ପରିଶୋଧ କରୁଛି । ଏହିପରି ଭାବେ ତାର ଛୋଟିଆ ତେଲ ଲୁଣର ସଂସାରକୁ ଚଳାଇ ଆସୁଛି । ସରକାରଙ୍କ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାକୁ ତାର ବହୁତ ପ୍ରଶଂସା । ବର୍ତ୍ତମାନ ତାଙ୍କର ଆର୍ଥିକ ଅବସ୍ଥାରେ ସ୍ୱଚ୍ଛଳତା ଆସିଛି ଓ ସେ ସୁଖଖୁସିରେ ନିଜର ଗୁଜୁରାଣ ଚଳାଇ ପାରୁଛନ୍ତି ।

## ଦଳପତିଗୁଡାର ଭାଗ୍ୟବାନ ସୀମାନ୍ତରୀ

କୋରାପୁଟ ଜିଲ୍ଲା ମାଲକାନଗିରି ଉପଖଣ୍ଡର ମାଥିଲି ବ୍ଲକ ମଧ୍ୟରେ କୁଟୁନିପାରୀ ଗ୍ରାମ ପଂଚାୟତ ଅନ୍ତର୍ଗତ ଦଳପତିଗୁଡ଼ା ଏକ କ୍ଷୁଦ୍ର ଗ୍ରାମ ଅଟେ । ଏଠାରେ ପ୍ରାୟ ୫୨୮ରୁ ଊର୍ଦ୍ଧ୍ୱ ଲୋକ ବସବାସ କରନ୍ତି, ହେଲେ ସେମାନଂକ ମଧ୍ୟରୁ ଅଧିକାଂଶ ଗରିବ । ଏହି ଗ୍ରାମରେ ସୀମାନ୍ତରୀ ବେହେରାର ଜନ୍ମ । ଚାଷଜମି ତାର ହାତେ ମଧ୍ୟ ନାହିଁ । ଏଣୁ ସଂସାର ଚଳାଇବା ସିମାନ୍ତରୀ ପକ୍ଷରେ ବହୁତ କଷ୍ଟ । ପର ଜମିରେ କାମକରି ଯାହା କିଛି ମୂଲ ମିଳେ ସ୍ତ୍ରୀ ଓ ପିଲାଂକ ତୁଣ୍ଡରେ ଟୋପାଏ ତୋରାଣି ଦିଏ । ବେଳେ ବେଳେ ଉପବାସ ରହିବାକୁ ହୁଏ । ତେଣୁ ନିଜ ପରିବାରର ଭରଣପୋଷଣ ନିମନ୍ତେ ସେ ସଦା ସର୍ବଦା ଚିନ୍ତିତଥାଏ । ପରେ ସେ ଶୁଣିଲା ଯେ, ସରକାର ଦରିଦ୍ର ଲୋକମାନଂକର ଦୁଃଖ ଦୂରପାଇଁ ଅର୍ଥନୈତିକ ଉତ୍ଥାନ ଯୋଜନା କରୁଛନ୍ତି । ଏଥିପାଇଁ ତାଂକ ଗାଁକୁ ମାଥିଲି ବ୍ଲକର କର୍ମଚାରୀ ଯାଇ ତାହାଠାରୁ ଦରଖାସ୍ତ ସଂଗ୍ରହ କଲେ ଏବଂ ଗୋଷ୍ଠୀ ଉନ୍ନୟନ ଅଧିକାରୀଂକୁ ଦେଇ ଋଣ ମଂଜୁରପାଇଁ ସୁପାରିଶ ମଧ୍ୟ କଲେ । ଫଳରେ ତାକୁ ବ୍ୟାଙ୍କରୁ ସରକାରଙ୍କ ଇ. ଆର. ଆର. ପି. ଯୋଜନାରେ ସାମିଲ କରାଯାଇ ୩୦୦୦ ଟଙ୍କା ଋଣ ପ୍ରଦାନ କରାଗଲା । ସେଥିରେ ସେ ତେଜରାତି ଦୋକାନଟିଏ କଲା ଓ ଦୈନିକ ଯାହା ବିକ୍ରୟକରେ ସେଥିରୁ କିଛି କିଛି ସଂଚୟକରି ସେ ଅଳ୍ପ ଦିନରେ ସବୁଯାକ ବ୍ୟାଂକ ଋଣ ପରିଶୋଧ କରିଦେଲା । ପୁନର୍ବାର ସିମାନ୍ତରୀ ଅଧିକ ଋଣ ପାଇବା ଆଶାରେ ଗୋଷ୍ଠୀ ଉନ୍ନୟନ ଅଧିକାରୀଂକୁ ଦରଖାସ୍ତ କଲା । ଯୋଗକୁ ବ୍ୟାଂକରୁ ସରକାରଂକ ସମନ୍ୱିତ ଗ୍ରାମ ଉନ୍ନୟନ ଯୋଜନା (ଆର. ଆର. ଡି. ପି.) ଦ୍ୱାରା ଦ୍ୱିତୀୟ କିସ୍ତି ୩୦୦୦ ଟଂକା ମଞ୍ଜୁର କରାଗଲା । ଏହି ଦ୍ୱିତୀୟ କିସ୍ତି ଋଣ ପାଇ ତାର ଛୋଟିଆ ବ୍ୟବସାୟଟିର ପରିସର ବୃଦ୍ଧି କଲା । ଫଳରେ ଖାଇବା ପିଇବା ଅସୁବିଧା ଦୂରୀଭୂତ ହୋଇପାରିଛି ଏବଂ ପରିବାର ପ୍ରତିପୋଷଣରେ ସେ ଆଶ୍ୱସ୍ତି ଲାଭ କରୁଛନ୍ତି ।

## ମୁକ୍ତେଶ୍ୱର ଓ କାତାପାନା

ଶାଳ, ପିଆଶାଳ, ଶିଶୁ ବୃକ୍ଷରାଜିକୁ ନେଇ ଫୁଲବାଣୀ ଜିଲ୍ଲାର ବେଲଘର ଅଂଚଳ ଏକ ପ୍ରାକୃତିକ ଚିଡ଼ିଆଖାନାର ପରିବେଶ ସୃଷ୍ଟି କରିଛି । ହାତୀ, ହରିଣ, ସମ୍ବର, ବାରାହା

ପଲ୍ଲୀଙ୍କର ଏହା ଚରାଭୂଇଁ । ପ୍ରତିଟି ରାତ୍ରୀର ନିସ୍ତବ୍ଧ ପ୍ରହରକୁ ମଝିରେ ମଝିରେ ଚିତା, ମହାବଳ ବ୍ୟାଘ୍ରର ଗର୍ଜନ ଅଧିକ ରୋମାଞ୍ଚକର କରିଥାଏ । ସେହିପରି ବିଭିନ୍ନ ରଙ୍ଗମଞ୍ଚା ବିଚିତ୍ର ପକ୍ଷୀମାନଙ୍କର କାକଳି ଏବଂ ଗୁଞ୍ଜରଣ ଦିବସର ଶାନ୍ତ ପରିବେଶକୁ ଅଧିକ ଆକର୍ଷଣୀୟ କରେ । ଉଚ୍ଚ ପର୍ବତମାଳା ଘେରା ଏହି ବେଲଘରର ଘଞ୍ଚବନାନୀ କୋଳରେ କୁଟିଆ କନ୍ଧଙ୍କର ପଲ୍ଲୀଗୁଡ଼ିକ ବିଭିନ୍ନ ଘାତ ପ୍ରତିଘାତ ମଧ୍ୟରେ ନିର୍ଭୀକ ଭାବରେ ଠିଆହୋଇ ରହିଛି । ତାହାର ଭିତରେ ନିଜର ପାରଂପରିକ ଜୀବିକା ଓ ସଂସ୍କୃତିକୁ ଜାବୁଡ଼ିଧରି ଆଦିମ ସରଳ କୁଟିଆ, କନ୍ଧଙ୍କର ଜୀବନର ଉଦୟ ଓ ଅସ୍ତହୋଇ ଆସିଛି ।

ଏବେ ଏହି ଅଞ୍ଚଳକୁ ନେଇ ବେଲ୍‌ଘର ଓ ଗୁମା ଗ୍ରାମ-ପଞ୍ଚାୟତର ସୃଷ୍ଟି ହୋଇଛି । ଲୋକମାନଂକୁ ଶିକ୍ଷା ଓ ଚିକିତ୍ସା ସୁବିଧା ଯୋଗାଇ ଦେବାପାଇଁ ଶିକ୍ଷାନୁଷ୍ଠାନ ଏବଂ ଚିକିତ୍ସାଳୟ ସରକାରଙ୍କ ତରଫରୁ ବେଲ୍‌ଘରଠାରେ ପ୍ରତିଷ୍ଠା କରାଯାଇଛି । କୁଟିଆ, କନ୍ଧ ପରିବାରଗୁଡ଼ିକର ଉନ୍ନତିକଳ୍ପେ "କୁଟିଆ କନ୍ଧ ଉନ୍ନୟନ ସଂସ୍ଥା"ର କାର୍ଯ୍ୟାଳୟ ସେଠାରେ ଅବସ୍ଥିତ । ଅତ୍ୟାବଶ୍ୟକ ଦ୍ରବ୍ୟର ବଣ୍ଟନପାଇଁ ସବୁ ବ୍ୟବସ୍ଥା କରାଯାଇଛି ।

ବେଲ୍‌ଘରଠାରୁ ଦୁଇ କିଲୋମିଟର ଦୂରରେ ଉତେଇନଦୀ କୂଳରେ ଅବସ୍ଥିତ 'କାଡ଼ାପାନା' ଗାଁ । ନଦୀକୂଳରୁ ମାଟି ରାସ୍ତାଟିଏ ଅଙ୍କାବାଙ୍କା ଲମ୍ବିଯାଇ ଗାଁ ଦାଣ୍ଡରେ ମିଶିଯାଇଛି । ଏହା କୁଟିଆ ଆଦିବାସୀଙ୍କର ଏକ ପଲ୍ଲୀ । ଗାଁ ଚାରିପାଖର କୋଡ଼ିଏ / ବାଇଶି ଏକର ଖାଲଢିପ ଜମିକୁ ଛାଡ଼ିଦେଲେ ଆଉସବୁ ଶାଳ ପିଆଶାଳର ଜଙ୍ଗଲ । ଗାଁ ଦାଣ୍ଡର ଦୁଇ ଧାରରେ ନୁଆଁଣିଆ ଛୋଟ ଛୋଟ ଖଞ୍ଜଘର ସାଙ୍ଗକୁ ଚାରିଗୋଟି ଖପରଟାଇଲିର ଘର । ସତରଟି ପରିବାରକୁନେଇ ଏଇ ଗାଁ । ମୁକ୍ତେଶ୍ୱର ମାଝି ଏଇ ଗାଁ ର ଜଣେ ଯୁବକ । ବୟସ ତାଙ୍କର ୩୦ ବର୍ଷହେବ । ତାଙ୍କର ବାପା ବିକା ମାଝିଙ୍କର କଥା ସେ କହନ୍ତି । ନିଜର ଜମିବାଡ଼ି କିଛି ନ ଥିଲା । ଅନ୍ୟମାନଙ୍କପରି ପାହାଡ଼ ଉପରେ ପୋଡୁଚାଷକରି ମକା, ମାଣ୍ଡିଆ, ଯାହା ମିଳୁଥିଲା ତା' ସହିତ ପ୍ରତ୍ୟେକ ଦିନ ଜଙ୍ଗଲ ଭିତରେ ଫଳମୂଳ ସଂଗ୍ରହରେ ଅକ୍ଳାନ୍ତ ଶ୍ରମକରି ମଧ୍ୟ ଦୁଇଓଳି ସେମାନଙ୍କପାଇଁ ଆହାର ମିଳୁ ନ ଥିଲା । ସେହି ଦୈନ୍ୟଭିତରୁ ବଢି ମୁକ୍ତେଶ୍ୱର ଯବା ବୟସରେ ବିବାହକଲେ । ବାପା ମାଁଆଙ୍କଠାରୁ ଅଲଗାହୋଇ ପ୍ରଥମେ ପ୍ରଥମେ ସେ ନିଜର ପରିବାରର ଭରଣପୋଷଣ ନିମନ୍ତେ ପୋଡୁଚାଷ, ଜଙ୍ଗଲି ଫଳମୂଳ ସଂଗ୍ରହ ଏବଂ ଦୁଲି ମଜୁରୀ ଉପରେ ନିର୍ଭରକରି ଚଳିବାକୁ ଲାଗିଲେ । କିନ୍ତୁ କୁଟିଆମାନଙ୍କର ପାରମ୍ପରିକ ଜୀବିକା ଉପରେ ତାଙ୍କର ଭରଷା ନ ଥିଲା । ସେଥିପାଇଁ ସବୁବେଳେ ସେ ଏକ ସ୍ଥାୟୀ ଧନ୍ଦାର ଚିନ୍ତା କରୁଥିଲେ କିନ୍ତୁ ହାତରେ ସମ୍ବଳ ନ ଥିବା ଯୋଗୁଁ ତାହା ଫଳବତୀ ହୋଇ-ପାରୁ ନ ଥିଲା ।

ଦିନେ କୁଟିଆ କନ୍ଧ ଉନ୍ନୟନ ସଂସ୍ଥା ବେଲ୍‌ଘରର ସ୍ୱତନ୍ତ୍ର ଅଧିକାରୀ କାଡ଼ାପାନା ଗାଁରେ ପହଂଚିଲେ । ଗ୍ରାମବାସୀଙ୍କୁ ଏକତ୍ରିତ କରାଇ ସରକାର ଦେଉଥିବା ସୁବିଧା ସୁଯୋଗ ଗ୍ରହଣ କରିବାକୁ ସେମାନଙ୍କୁ ବୁଝାଇଲେ । ମୁକ୍ତେଶ୍ୱର ଏହିପରି ଏକ ସୁଯୋଗ ଅପେକ୍ଷାରେ ଥିଲେ । ଗ୍ରାମଦେବୀଙ୍କୁ ପ୍ରଣାମ ଜଣାଇ ପ୍ରଥମେ ସେ ହଳେ କାମିକା ବଳଦ ପାଇବାପାଇଁ ସେଠାରେ ସ୍ୱତନ୍ତ୍ର ଅଧିକାରୀଂକୁ ଆବେଦନ କଲେ । ତେଣୁ ତା-୩-୬-୧୯୮୨ ତାରିଖରେ ମୁକ୍ତେଶ୍ୱରଙ୍କୁ କୁଟିଆ କନ୍ଧ ଉନ୍ନୟନ ସଂସ୍ଥା, ବେଲ୍‌ଘର ତରଫରୁ ୯୫୦ ଟଂକାରେ ହଳେ କାମିକା ବଳଦ ଦିଆଗଲା । ତା'ପରେ ଆବେଦନ କରିବାରୁ ସେହି ସଂସ୍ଥା ତରଫରୁ ଚାରିଗୋଟି ଛେଳି ମଧ୍ୟ ତାଙ୍କୁ ଦିଆଗଲା । ଏହି ବାବଦରେ ଖର୍ଚ୍ଚ କରାଯାଇଥିବା ସବୁଟଙ୍କା ମୁକ୍ତେଶ୍ୱର ଛାଡ଼ପାଇଲେ । ମୁକ୍ତେଶ୍ୱରଙ୍କ ନାମରେ ଦୁଇଏକର ସରକାରୀ ଜମି ମଧ୍ୟ ପଟ୍‌ଟାକରି ଦିଆଗଲା ।

ସେହି ଦିନଠାରୁ ମୁକ୍ତେଶ୍ୱର ନିଜର ଦୁଇ ଏକର ଜମି ସହିତ ଆଉ କେତେକ ଅନାବାଦି ଜମି ଚାଷକରି ଆସୁଛନ୍ତି । ନିଜର ପ୍ରଚେଷ୍ଟାରେ ଜମିରୁ ଯେଉଁ ଧାନ, ମାଣ୍ଡିଆ, ଶୋରିଷ, ଚିନା, ମକା ଇତ୍ୟାଦି ଆଦାୟ କରୁଛନ୍ତି ସେଥିରେ ନିଜ ପରିବାର ସୁଖରେ ଚଳି ବଳକା ଶସ୍ୟର ବିକ୍ରୀଲବ୍ଧ ଅର୍ଥ ପ୍ରତିବର୍ଷ ସଞ୍ଚୟ କରନ୍ତି । ନିଜର ପୁରୁଣା ଖଞ୍ଜଘର ଭାଙ୍ଗି ସେହି ସ୍ଥାନରେ ଏବେ ଖପର ଟାଇଲର ଘରଟିଏ କରିଛନ୍ତି । ତାଙ୍କର ପରିବାର ଏବେ ବଢିଯାଇଛି । ସ୍ୱାମୀ ସ୍ତ୍ରୀ ଏବଂ ତିନିଗୋଟି ପୁଅଙ୍କୁ ନେଇ ତାଙ୍କର ପାଞ୍ଚଜଣିଆ ପରିବାର ଆଉ କେବେ ଆର୍ଥିକ ସଙ୍କଟର ସମ୍ମୁଖୀନ ହୋଇନାହିଁ । ନିଜର ସ୍ୱୀକର ଯତ୍ନ ଯୋଗୁଁ ଛେଳି ପାଳନରୁ ସେ ଦୁଇହଜାର ଟଙ୍କା ଲାଭ ପାଇଛନ୍ତି । ଛେଳି ଅଧିକ ରଖି ହେଉନି, କାରଣ ଦିନ ଦ୍ୱିପ୍ରହରରେ ମଧ୍ୟ ବାଡ଼ିପଟୁ ଚରୁଥିବା ଛେଳିମାନଙ୍କୁ ବଳିଆ କୁକୁରମାନେ ଟାଣି ନେଇ ଖାଇ ଯାଉଛନ୍ତି । ସେଥିପାଇଁ ସେ ବର୍ତ୍ତମାନ ଚାରିଗୋଟି ଛେଳି ରଖିଛନ୍ତି । ବନ୍ୟ ହିଂସ୍ରଜନ୍ତୁଙ୍କ ହାତରୁ ନିଜର ପାଳିତ ପଶୁ ଏବଂ ଆତ୍ମରକ୍ଷାପାଇଁ ସେ ଗୋଟିଏ ବନ୍ଧୁକ ମଧ୍ୟ କିଣିଛନ୍ତି । ନିଜର ଗ୍ରାମ ବିଦ୍ୟାଳୟରେ ବଡପୁଅକୁ ମୁକ୍ତେଶ୍ୱର ପାଠ ପଢ଼ାଉଛନ୍ତି । ତାଙ୍କର ଉଦ୍ଦେଶ୍ୟ—ପିଲାମାନେ ପାଠ ପଢି ବଡ଼ ଲୋକ ହେବେ । ବାପଅଜା ସମୟର ଅଜ୍ଞତା ଓ ଦୈନ୍ୟତାର ଅନ୍ଧାର ଆଡକୁ ଯେପରି ସେମାନେ ଆଉ ମୁହାଁଇବେନି । କାଡ଼ାପାନା ଗ୍ରାମବାସୀଙ୍କର ପାରଂପରିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣି ସେମାନଙ୍କୁ ଅଧିକ ସଭ୍ୟ ଏବଂ ସମର୍ଥ କରିବା ନିମନ୍ତେ କାଡ଼ାପାନା ଗାଁରେ "ଜ୍ଞାନ ମନ୍ଦିର" ପ୍ରତିଷ୍ଠା କରାଯାଇଛି । ମୁକ୍ତେଶ୍ୱର ହେଉଛନ୍ତି ଏହାର ପରିଚାଳକ । ନିଶାପାନ ସମସ୍ତ ଅନ୍ତେବାସୀ ତ୍ୟାଗ କରିଛନ୍ତି ଏବଂ ପିଲାମାନଙ୍କୁ ବିଦ୍ୟାଳୟରେ ପାଠ ପଢାଇବାକୁ ସମସ୍ତେ ପଠାଉଛନ୍ତି । ସରକାରଙ୍କ ତରଫରୁ ମାଗଣାରେ ଯୋଗାଇ ଦିଆଯାଉଥିବା ଅମୃତଭଣ୍ଡା, ସଜନା, ପିଜୁଳି, ଲେମ୍ବୁଗଛ ପ୍ରତ୍ୟେକଙ୍କ ବାଡ଼ିରେ ରୋପଣ କରାଯାଇଛି । ଝରଣା ଓ ନଦୀର ଜଳ ବଦଳରେ ଗାଁରେ ସରକାରଙ୍କ ତରଫରୁ ବସା-ଯାଇଥିବା ନଳ କୂପର ଜଳ ସମସ୍ତେ ବ୍ୟବହାର କରନ୍ତି ।

ପୁରୁଷ ପୁରୁଷ ଧରି ଅଗମ୍ୟ ଗିରି କନ୍ଦରରେ ବାସକରି କେବଳ ବଞ୍ଚିବା ପାଇଁ ଖାଦ୍ୟର ସନ୍ଧାନୀ, ନିଷ୍ପେସିତ ଆଦିମ ଆଦିବାସୀମାନଙ୍କୁ ସରକାରୀ ଆର୍ଥିକ ସହାୟତା ଓ ସାମାଜିକ ନ୍ୟାୟ ଯେ କେବଳ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣି ଦେଇଛି ତାହାନୁହେଁ, ବରଂ ସେମାନଙ୍କୁ ଆତ୍ମନିର୍ଭରଶୀଳ କରିବାରେ ପାଥେୟ ଯୋଗାଇ ଦେଇ ସମୟର ପ୍ରଗତିର ସ୍ରୋତରେ ସାମିଲ କରାଇ ପାରିଛି । ସେଥିପାଇଁ ଏହି କୁଟିଆ ପଲ୍ଲୀରେ ପ୍ରାଚୀନ ରୂପ ଆଜି ବଦଳିଯାଇଛି ।

## ହିଞ୍ଜଳି ବ୍ଲକ୍‌ର ଗୋବିନ୍ଦ

ଛତ୍ରପୁର ସବ୍‌ଡ଼ିଭିଜନ ଅନ୍ତର୍ଗତ ହିଞ୍ଜିଳି ବ୍ଲକର ଦୁର୍ବନ୍ଧ ଗ୍ରାମଟି ଗୋଟିଏ ତୈଳିକ ଜାତିବହୁଳ ଗ୍ରାମ । ଗ୍ରାମର ଅଧିକାଂଶ ଲୋକ କୃଷି ଓ ତୈଳ ବ୍ୟବସାୟକରି ଜୀବିକା ନିର୍ବାହ କରନ୍ତି ।

ଗୋବିନ୍ଦ ନାୟକ ଜମିବାଡ଼ି ଶୂନ୍ୟ ଗୋ-ପାଳକ ସଂପ୍ରଦାୟର ଗରିବ ପ୍ରଜା । ଅନ୍ୟର ମୂଲଲାଗି ଛୋଟ ପରିବାରକୁ ବହୁ କଷ୍ଟରେ ଗୋବିନ୍ଦ ପୋଷଣକରେ । ସରକାରଙ୍କ ବିଭିନ୍ନ ଯୋଜନା ଦ୍ୱାରା ଗରିବ ଲୋକଙ୍କର ଅର୍ଥନୈତିକ ଉନ୍ନତି କଥା ଗ୍ରାମପଞ୍ଚାୟତ ସେକ୍ରେଟାରୀଙ୍କଠାରୁ ଶୁଣିଲା ଗୋବିନ୍ଦ । ଇ. ଆର. ଆର. ପି. ଯୋଜନାରେ ପ୍ରଥମ କିସ୍ତିରେ ଟ୩୦୦୦-୦୦ ଓ ଦ୍ୱିତୀୟ କିସ୍ତିରେ ଟ୩୦୦୦-୦୦ ଶତକଡ଼ା ୭୫ ଭାଗ ରିହାତି ଋଣରେ ୨ଟି ମଇଁଷି ଗୋଟିଏ ଛୁଆ ପାଇଥିଲେ ।

ବର୍ତ୍ତମାନ ଗୋବିନ୍ଦର ୨ଟି ବଡ଼ ମଇଁଷି ଓ ୩ଟି ଛୁଆ ଅଛନ୍ତି । ଗୋଟିଏ ଛୁଆ କୌଣସି କାରଣ ବଶତଃ ମରି-ଯାଇଛି । ମଇଁଷିଟିର ରକ୍ଷଣାବେକ୍ଷଣ ଗୋବିନ୍ଦ ଓ ତାର ସ୍ତ୍ରୀ କରନ୍ତି । କ୍ଷୀର ଲିଟର ପ୍ରତି ଟ୩.୫୦ ପଇସାରେ ବିକ୍ରି କରି ଗୋବିନ୍ଦ ଆଜି ଦୁର୍ବନ୍ଧ ଗ୍ରାମରେ ମହା ଖୁସିରେ ଚଳୁଛି ଏବଂ କିଛି ଅର୍ଥ ଜମାକରି ରଖିପାରିଛି । ଜମା ଟଙ୍କାରୁ ଟ୮୦୦.୦୦ ଦେଇ ସେ ଗୋଟିଏ ମଇଁଷି କିଣିଛି ଏବଂ ନିଜ ପାଖରେ ଏବଂ ପୋଷ୍ଟ ଅଫିସରେ ପ୍ରାୟ ଟ୪୦୦୦.୦୦ଙ୍କା ସଞ୍ଚୟ କରି ପାରିଛି । ଗୋବିନ୍ଦର ବଡ ପୁଅ ଅନ୍ୟର କାମ ଧନ୍ଦା କରି ଯାହା ରୋଜଗାର କରୁଛି ତାହା ବାପ ମାଙ୍କୁ ଆଣି ଦେଉଛି । ଘରେ ଆଉ ଗୋଟିଏ ଛୋଟ ପୁଅ ଓ ଗୋଟିଏ ଝିଅ ଅଛନ୍ତି ।

ଗୋବିନ୍ଦଙ୍କ ସ୍ତ୍ରୀ ସହିତ ସାକ୍ଷାତ କରିବାରେ ସେ କହନ୍ତି ଯେ, ସରକାରଙ୍କ ଏହି ସାହାଯ୍ୟ ଯୋଗୁଁ ପାଞ୍ଚଜଣିଆ ପରିବାରଟି ଆଜି ମହା ଖୁସିରେ ଚଳୁଛନ୍ତି ଏବଂ ହାତରେ ମଧ୍ୟ ଦୁଇ ପଇସା ରଖି ପାରିଛନ୍ତି । ବ୍ୟାଙ୍କରୁ ମିଳିଥିବା ସମସ୍ତ ଋଣ ଟଙ୍କା ସେ ପରିଶୋଧ କରି ସାରିଲେଣି । ଗୋବିନ୍ଦ ଏବଂ ତାଙ୍କ ସ୍ତ୍ରୀ ଦିନରାତି ଖଟି ମଇଁଷିଗୁଡ଼ିକର ଯତ୍ନ ନେଉଛନ୍ତି । ପରିବାରର ଉନ୍ନତି ପାଇଁ ସ୍ୱାମୀ, ସ୍ତ୍ରୀ ଓ ବଡ଼ ପୁଅ ନିଜ ନିଜ କାମରେ ଲାଗି ପଡ଼ିଛନ୍ତି ।

## ସତ୍ୟମ୍‌ଙ୍କ ସଫଳତା

ଗଞ୍ଜାମ ଜିଲ୍ଲାର ଛତ୍ରପୁର ବ୍ଲକ୍ ଅନ୍ତର୍ଗତ ନରେନ୍ଦ୍ରପୁର ଗ୍ରାମପଞ୍ଚାୟତର ରଘୁନାଥପୁର ଗ୍ରାମରେ "ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ" (I.R.D.P.) ଦ୍ୱାରା ଉପକୃତ ହୋଇଥିବା ଶ୍ରୀ ଏସ୍. ସତ୍ୟମ୍ ରେଡ଼ି ।

ସ୍ୱର୍ଗତ ଲକ୍ଷ୍ମୟା ରେଡ଼ିଙ୍କର ୩୭ ବର୍ଷ ବୟସ ପୁଅ ଶ୍ରୀ ସତ୍ୟମ୍, ରେଡ଼ି ବାଲ୍ୟାବସ୍ଥାରୁ ବହୁ ଦୁଃଖ-କଷ୍ଟରେ ଦିନ ବିତାଇଛନ୍ତି । କୃଷି ପାଇଁ ଜମି ନାହିଁ, ରହିବା ନିମନ୍ତେ ମାତ୍ର ପାଞ୍ଚହାତିଆ ଓସାରର ଛପର କୁଡ଼ିଆ ଘର । ଏ ପରିସ୍ଥିତିରେ ପାଠ ପଢ଼ିବା ତାଙ୍କ ଭାଗ୍ୟରେ ସମ୍ଭବ ହୋଇ-ନାହିଁ । ଅଭାବ-ଅନାଟନ ତଥା ଦାରିଦ୍ର୍ୟ ସହ ସଂଘର୍ଷମୟ ଜୀବନ ବାଲ୍ୟାବସ୍ଥାରୁ ଆରମ୍ଭ ହେଲା । କ୍ରମଶଃ ଅନ୍ୟର ସାଇକେଲ ଦୋକାନରେ ରହି ମରାମତି କାମ ଶିଖିବାରେ ଲାଗିଲେ । ଏଥିରେ ସେ କୁଶଳୀ କାରିଗର ହୋଇ ପାରିଲେ ସୁଦ୍ଧା ସ୍ୱାଧୀନଭାବେ ସ୍ୱାବଲମ୍ବନଶୀଳ ହେବାକୁ ଅର୍ଥାଭାବ ହିମାଳୟ ସଦୃଶ ବିରାଟ ଅନ୍ତରାୟ ସୃଷ୍ଟି କରୁଥାଏ । କିନ୍ତୁ ବୁଦ୍ଧି ଥିଲେ ଉପାୟ ଦିଶେ ଓ କଷ୍ଟ କଲେ କୃଷ୍ଣ ମିଳନ୍ତି-ଉକ୍ତିର ଯଥାର୍ଥତାକୁ ବିଂଶସୂତ୍ରୀ କାର୍ଯ୍ୟକ୍ରମର ଆଇ. ଆର. ଡି. ପି. ସହାୟତାରେ ପ୍ରତିପାଦନ କରି ପାରିଲେ । କଥାରେ ଅଛି-"ଆଲ୍ଲା ଦେଗା ତୋ ଛପର ଫାଡ଼କର ଦେଗା" ଅତଏବ ଆଇ. ଆର. ଡି. ପି. କାର୍ଯ୍ୟକ୍ରମ ଦ୍ୱାରା ଛତ୍ରପୁର ବ୍ଲକ ତରଫରୁ ସତ୍ୟମ୍ ରେଡ଼ିଙ୍କ ନାମକୁ ସୁପାରିଶ କରାଗଲା । ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ଗଞ୍ଜାମର ଅର୍ଥ ଲଗାଣରୁ ଇଣ୍ଡିୟାନ୍ ଓଭରସିଜ୍ ବ୍ୟାଙ୍କ, ନରେନ୍ଦ୍ରପୁର ଶାଖା ମାଧ୍ୟମରେ ୧୯୮୨-୮୩ ଆର୍ଥିକ ବର୍ଷରେ ୩,୦୦୦ ଟଙ୍କାର ଅର୍ଥ ସହାୟତାରେ ପାଞ୍ଚ ଗୋଟି "ହିରୋ" ସାଇକେଲ କିଣାଇ ଦିଆଗଲା । ସେଥିରେ ଭଡ଼ା ଦେଇ ରୋଜଗାର କ୍ଷମତା ବଢ଼ାଇବାରେ ଲାଗିଲେ । ଜାତୀୟ ରାଜପଥ-୫ ନମ୍ବର ରଘୁନାଥପୁର ଗ୍ରାମକୁ ସ୍ପର୍ଶ କରି ଯାଇଛି । ଆଉ ଏହା କଡ଼େ ଆଜି ସତ୍ୟମ୍ ରେଡ଼ିଙ୍କର ସାଇକେଲ ମରାମତି ଦୋକାନ ଗୁଳିଆ ଘରେ ଆରମ୍ଭ ହେଲା ।

୩,୦୦୦ ଟଙ୍କାରୁ ରିହାତି ଯାଇ କ୍ରମଶଃ ଦୈନିକ ରୋଜଗାରରୁ ସଞ୍ଚୟ କରି ପ୍ରତି ମାସରେ ବାକି ଓ ସୁଧ ବାବଦକୁ ଟଙ୍କା ଆଇ. ଓ. ବି. ରେ ପୈଠ ଦେଇ ୨,୨୦୦ ଟଙ୍କା ସମୁଦାୟରେ ସତ୍ୟମ୍ ଋଣମୁକ୍ତ ହୋଇ ପାରିଲେ । ଇତି ମଧ୍ୟରେ ତାଙ୍କର ରୋଜଗାର କ୍ଷମତା ବଢ଼ି ଗଲିସ । ଗୁଳିଆ ଘରକୁ ସଂପ୍ରସାରଣ କରି କାଠର କ୍ୟାବିନ୍ କରି ପାରିଲେ । ପୂର୍ବରୁ ସତ୍ୟମ୍‌ଙ୍କର ଗୋଟିଏ ପୁଅ ଓ ୨ଟି ଝିଅ ଜନ୍ମ ହୋଇଥିଲେ । ସେ ସମୟରେ ସମ୍ବଳ ଅଭାବ ଥିବାରୁ ପୁଅଟି ପଞ୍ଚମ ଶ୍ରେଣୀ ଯାଏଁ ପଢ଼ି ପାଠପଢ଼ା ବନ୍ଦ କରିଦେଲା ଓ ବର୍ତ୍ତମାନ ବାପାଙ୍କର ସାଇକେଲ ଦୋକାନରେ ୧୨ ବର୍ଷର ପୁଅ ବେଶ୍ ଆରାମ୍‌ରେ ରୋଜଗାରର ଉପାୟ ଶିଖିଗଲାଣି । କିନ୍ତୁ ସତ୍ୟମ୍ ଦୁଇ ଝିଅଙ୍କୁ ପଢ଼ାଇବାକୁ ମନସ୍ଥ କରି ବଡ଼ ଝିଅଟିକୁ ବର୍ତ୍ତମାନ ତୃତୀୟ ଶ୍ରେଣୀରେ ପଢ଼ାଉଛନ୍ତି ।

୧୯୮୫ରେ "ଛୋଟ ପରିବାର ସୁଖୀ ପରିବାର" ନୀତି ଦ୍ୱାରା ଅନୁପ୍ରାଣୀତ ହୋଇ ସତ୍ୟମ୍ ପରିବାର ନିୟନ୍ତ୍ରଣ ଅସ୍ତ୍ରୋପଚାର କରାଇ ନେଇଛନ୍ତି । ଆଇ. ଆର. ଡି. ପି. ର ଋଣ ଠିକ୍ ସମୟରେ ନିୟମାନୁଯାୟୀ ପରିଶୋଧ କରି ପାରିଥିବାରୁ ଆଇ. ଓ. ବି. ର ବିଶ୍ୱାସ ସତ୍ୟମ୍‌ଙ୍କ ବ୍ୟବସାୟ ଉପରେ ଜନ୍ମି ଥିଲା । ଗ୍ରାମର ସରପଞ୍ଚ ଶ୍ରୀ ଏସ୍. ସୀତାରାମ ରେଡ଼ିଙ୍କର ମଧ୍ୟସ୍ଥତାରେ ୫,୦୦୦ ଟଙ୍କାର ଋଣ ପୁନର୍ବାର ସତ୍ୟମ୍‌ଙ୍କୁ ବ୍ୟାଙ୍କ ଦେଇଛି । ଏଥିରେ ସାଇକେଲ ମରାମତି ଯନ୍ତ୍ରପାତି ପ୍ରାୟ ୩,୦୦୦ ଟଙ୍କାର କିଣିପାରିଛନ୍ତି । ଆଉ ଅଧିକ କେତୋଟି ସାଇକେଲ କିଣି ଭଡ଼ା ଦେବା ବ୍ୟବସାୟର ପରିସରକୁ ବୃଦ୍ଧି କରି ପାରିଛନ୍ତି । ବର୍ତ୍ତମାନ ସତ୍ୟମ୍‌ଙ୍କର ଦୋକାନରେ ୧୪ଟି ସାଇକେଲ ରହିଛି ।

ଏହି ବ୍ୟବସାୟର ଲାଭାଂଶରେ ପିତୃବ୍ୟଙ୍କର ଭଙ୍ଗା କୁଟୀରକୁ ଭାଙ୍ଗି ଦୁଇ କୋଠରୀର ପକ୍କା ସିମେଣ୍ଟ ଛାତର ଘର କରିପାରିବାରେ ସତ୍ୟମ୍ ସଫଳ ହୋଇଛନ୍ତି । ବୃଦ୍ଧା ମାଙ୍କ

ସ୍ତ୍ରୀ, ୨ ଝିଅ ଓ ପୁଅସହ ସେ ନିଜେ ବର୍ତ୍ତମାନ ଭଲ ପୋଷାକ ପିନ୍ଧି ଚୁଇଁକେଲା ଭଳିଭାବେ ଖାଉପିଉ "କର୍ମ ହିଁ ଧର୍ମ" ନୀତିରେ ଜୀବନ ବିତାଉଛନ୍ତି । ବିଂଶସୂତ୍ରୀର ଅର୍ଥନୈତିକ ଅଭ୍ୟୁତ୍ଥାନ କାର୍ଯ୍ୟକ୍ରମ ସହାୟତାରେ ଦୈନିକ ୪୦ ଟଙ୍କାରୁ ୫୦ ଟଙ୍କା ଯାଏଁ ରୋଜଗାର କରିପାରୁଥିବା ସତ୍ୟମ୍ ରେଡ଼ି ଗର୍ବର ସହ ପ୍ରକାଶ କରି ପାରୁଛନ୍ତି । ଗ୍ରାମ୍ୟ ବେକାରୀଙ୍କୁ କର୍ମର ସନ୍ଧାନ ଥିବାବେଳେ ବର୍ତ୍ତମାନ ସତ୍ୟମ୍ ରେଡ଼ି ସେମାନଙ୍କର ଦିଗ୍‌ଦର୍ଶକ ଭାବେ ନିଜ ସାଇକେଲ୍ ଦୋକାନରେ ରଖି ମରାମତି କାମର ତାଲିମ୍ ଦେଉଛନ୍ତି । ନିଜପୁଅ ସହ ଆଉ ଦୁଇଜଣ ଯୁବକ ଏଠାରେ ସାଇକେଲ ମରାମତି କାମ ଶିଖୁଛନ୍ତି ।

'ସ୍ୱଳ୍ପ ସଞ୍ଚୟ ଯୋଜନା' ଉପରେ ସୂଚନା ଓ ଲୋକ ସଂପର୍କ ବିଭାଗର ପ୍ରଚାର ତଥା ଆକାଶବାଣୀ ମାଧ୍ୟମରେ ପଲ୍ଲୀଶ୍ରୋତା-ମଣ୍ଡଳୀ କାର୍ଯ୍ୟକ୍ରମ ସମୟରେ ସୂଚନା ଶୁଣି ଦୁଇ ଝିଅଙ୍କର ଭବିଷ୍ୟତ ଲାଗି ମାସିକ ୧୦୦ ଟଙ୍କା "କ୍ରମବର୍ଦ୍ଧିଷ୍ଣୁ ସଞ୍ଚୟ ଯୋଜନା"ରେ ଜମା ରଖୁଛନ୍ତି । ବାସ୍ତବରେ ସତ୍ୟମ୍ ରେଡ଼ିଙ୍କର ଏହି ପ୍ରଗତି କାହାଣୀ ପଛରେ ବିଂଶସୂତ୍ରୀର ଅଭୟ ଆଶୀର୍ବାଦ ଭରି ରହିଛି ।

## ଚାକିରି କରିବ ନାହିଁ

ଗୋଟିଏ ଗାଁରେ ଲୋକଟିଏ ଥାଏ । ନାଁ ଟା ତା'ର ଗଣେଶ । କିନ୍ତୁ ସେ ଜନ୍ମରୁ ପାଠ ପଢ଼ିନି । ଏପରିକି ନିଜ ଦସ୍ତଖତ-ଟିଏ କରିବା ମଧ୍ୟ ତାକୁ ଜଣା ନାହିଁ । ତା'ର ଗୋଟିଏ ବୋଲି ପୁଅ । ପୁଅକୁ ଭଣଡାଡ଼ି କରି ବି. ଏ. ପାଠ ପଢ଼ାଇଲା । କିନ୍ତୁ ଆଜିକାଲି ଯୁଗରେ ଚାକିରିଟାଏ ପାଇବା ଏତେ ସହଜ ନୁହେଁ । ତଥାପି ବହୁ ଚେଷ୍ଟା ସତ୍ତ୍ୱେ ଗ୍ରାମସେବକ ଚାକିରିର ସନ୍ଧାନ ପାଇଲା । ପିଅନଟାର ବି ଚାକିରି ଆସରେ ମନ ନାହିଁ । ସବୁବେଳେ ଖାଲି ଚାକିରି ଚାକିରି ହେଉଛି । ଗ୍ରାମସେବକ ଚାକିରି ପାଇବାକୁ ହେଲେ ପୁଣି ଟଙ୍କା ଦରକାର । ଆଜିକାଲି ପକେଟ ଗୁଞ୍ଜା ନ ଦେଲେ କୁଆଡ଼େ ଚାକିରି ମିଳୁ ନାହିଁ ବୋଲି ଗାଁର କେତେଜଣ ଭଦ୍ରଲୋକ ଗଣେଶକୁ କହିଲେ । ସେ ଜମି ଦୁଇ ଏକର ବିକ୍ରୀକରି ପନ୍ଦର ହଜାର ଟଙ୍କା ଜମାକରିବାକୁ ବାହାରିଲା । ସେ ଦିନ ଗାଁକୁ ଜିଲ୍ଲା ଶିଳ୍ପ କେନ୍ଦ୍ରର ଆଇ. ପି. ଓ. ବାବୁ ଆସିଥାନ୍ତି । ଅବଶ୍ୟ ସେ ତାଙ୍କ ଗାଁ ପାଖର ଲୋକ । ସେ କହିଲେ–ଦେଖ ଗଣେଶ ! ତୁମେ ଆମ ନିଜର ଲୋକ । ଚାକିରି ଅବଶ୍ୟ ଭଲ । ଧୋଇ ନାହିଁ କି ମଇଳି ନାହିଁ । କିନ୍ତୁ ଚାକିରି ପାଇଁ ଏତେ-ଗୁଡ଼ିଏ ଟଙ୍କା ଖର୍ଚ୍ଚ କରିବା ଅପେକ୍ଷା ବ୍ୟବସାୟ କରିବା ଭଲ । ପୁଣି ପନ୍ଦର ହଜାର ଟଙ୍କା । ନା ତା' କରନାହିଁ । ଜମି ପରା ସୁନା । ତୁମେ ଯେତେ ମାଡ଼ିବ ସେତେ ଚକ୍ ଚକ୍ କରିବ । ବିକ ନାହିଁ । ବରଂ ପୁଅକୁ କହ ସେ କାଲି ଆମ ଅଫିସକୁ ଆସୁ । ତା' ପାଇଁ ଗୋଟିଏ କୁଟୀରଶିଳ୍ପ ସ୍ଥାପନ କରିବା । ଦେଖିବ ଚାକିରିର ଦଶ ଗୁଣ ଲାଭ ହେବ ।

ଗଣେଶ ଭାରି ଖୁସି ହେଲା । ସରକାର ତେବେ ଏମିତି ସୁବିଧା କଲେଣି । ସରକାରଙ୍କର ଅଶେଷ ମଙ୍ଗଳ ହେଉ ବୋଲି ଭଗବାନଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆ ମାରିଲା । ଜିଲ୍ଲା ଶିଳ୍ପକେନ୍ଦ୍ର ମାଧ୍ୟମରେ କୁକୁଡ଼ା ଚାଷ ପାଇଁ ବ୍ୟାଙ୍କରୁ ଋଣ ଆଣିଲା ।

କୁକୁଡ଼ା ଚାଷ ସଙ୍ଗେ ସଙ୍ଗେ ମିଲ୍‌କ ସୋସାଇଟି ବି ଖୋଲିହେଲା । ବର୍ଷକ ପରେ ପୁଣି ସେହି ଆଇ. ପି. ଓ. ବାବୁ ଆସି ପଚାରିଲେ– "କି ହୋ ଗଣେଶ, ପୁଅ କେମିତି ବ୍ୟବସାୟ ଚଳେଇଛି ?"

ଗଣେଶ ତାଙ୍କୁ ତୋଳିକା ମୁଣ୍ଡିଆଟିଏ ମାରି କହିଲା– "ଯା' ହଉ ବାବୁ, ତିମେ ଏକା ମୋ ପୁଅକୁ କୂଳରେ ଲଗେଇଲ । ଭଗବାନ ତୁମର ମଙ୍ଗଳ କରନ୍ତୁ । ଏବେ ଆମେ ମହା ଖୁସିରେ ଅଛୁ । ଏଇ ଦେଖୁନ ଏଇ ବର୍ଷା ଋତୁରେ ଗୋଟିଏ ଟ୍ରାକ୍ଟର ଆଣିବା ପାଇଁ ବସିଲୁଣି । ପୁଅ କହୁଚି–"ଆଉ ଚାକିରି କରିବି ନାହିଁ ।"

ଶ୍ରୀ କଇଲୁ ସାହୁ
ମାଧବୀ ପବ୍ଲିକେସନ୍ସ, ତରଭା
(ବଲାଙ୍ଗୀର)

## ଟକେଶବର ଆନନ୍ଦ କହିଲେ ନସରେ

ସୁନ୍ଦରଗଡ଼ ଜିଲ୍ଲା ସବ୍‌ଡେଗା ବ୍ଲକ ଅନ୍ତର୍ଗତ କରମଦିହି ବଡ଼ ଗାଁଟିଏ । ଏହି ଗାଁର ବ୍ରାହ୍ମଣ ପରିବାରର ୨୫ ବର୍ଷ ବୟସ ଯୁବକ ଶ୍ରୀ କେଶବ ଚନ୍ଦ୍ର ପଣ୍ଡା । ଘରେ ବାପା, ମା, ସ୍ତ୍ରୀ ଓ ପିଲା ମିଶି ମୋଟ ଛଅ ପ୍ରାଣୀ କୁଟୁମ୍ବ । ଜମିବାଡ଼ି ସେମିତି ବିଶେଷ କିଛି ନାହିଁ । ଯାହା କିଛି ଅଛି–ସେଥିରେ ଛଅ ପ୍ରାଣୀଙ୍କର ବର୍ଷକ ଚଳିବାକୁ ନିଅଣ୍ଟ ହୁଏ । ବର୍ଷକର ଅମଳ ଚାଷଧାନ ୪ମାସ ଖାଇଲେ ଆଉ ୮ ମାସ ଅନ୍ୟପାଖରେ ହାତପତାଇବାକୁ ପଡ଼େ । ପରିବାରର ଏପରି ଆର୍ଥିକ ଅସ୍ୱଚ୍ଛଳତା ଦୃଷ୍ଟିରୁ କେଶବ-ପଣ୍ଡା ମାଟ୍ରିକ୍ ଯାଏ ପାଠ ପଢ଼ି ରହିଲା । କଲେଜରେ ପଢ଼ିବାର ସ୍ୱପ୍ନ ତା'ର ସ୍ୱପ୍ନହୋଇ ରହିଗଲା । ଏମିତି ମନ ଦୁଃଖରେ କିଛିଦିନ ଏଣେତେଣେ ବୁଲିବୁଲି କଲା ।

ଦିନେ ସେ ଜାଣିବାକୁ ପାଇଲା ସରକାରଙ୍କର ଆତ୍ମନିଯୁକ୍ତି ଯୋଜନା ମାଧ୍ୟମରେ ଗରିବ ଶିକ୍ଷିତ ବେକାର ଯୁବକଙ୍କୁ ଆତ୍ମନିର୍ଭରଶୀଳ କରାଯାଉଛି । କିଛିଦିନପରେ ସବ୍‌ଡେଗା ବ୍ଲକ ପକ୍ଷରୁ କରମଦିହି ଗାଁର କେତେକ ଶିକ୍ଷିତ ବେକାର ଯୁବକମାନଙ୍କୁ ଚିହ୍ନଟ କରାଗଲା । ସେମାନଙ୍କ ମଧ୍ୟରେ କେଶବ ପଣ୍ଡା ଗତ ୧୯୮୪-୮୫ ଆର୍ଥିକ ବର୍ଷରେ ଶିକ୍ଷିତ ବେକାର ଯୁବକମାନଙ୍କ ଆତ୍ମନିଯୁକ୍ତି ଯୋଜନା ଜରିଆରେ ଋଣ ପାଇବାକୁ ଯୋଗ୍ୟ ବିବେଚିତ ହେଲା । ଗତ ତା ୨୬-୩-୧୯୮୫ ରିଖ ଦିନ ତାକୁ ସରକାର ଟ ୧୯,୫୦୦ ଙ୍କା ଋଣ ମଞ୍ଜୁର କଲେ– ଏକ ସାଇକେଲ ମରାମତି ଦୋକାନ କରିବାପାଇଁ । ଉକ୍ତ ମଞ୍ଜୁରୀ ଅର୍ଥରୁ ଟ୪,୯୦୦ଙ୍କା ଅନୁଦାନ (ଛାଡ଼) ଓ ୧୪,୬୦୦ଟଙ୍କା ଋଣ ଆକାରରେ ଦିଆଗଲା । ସେହି ଟଙ୍କାରେ ସେ କରମଦିହି ବଜାରସ୍ଥିତ ରାସ୍ତାକଡ଼ରେ ଏକ ଭଡ଼ାଘରେ ସାଇକେଲ ଦୋକାନ ଗତ ୨ବର୍ଷ ହେବ କରି ଆସୁଛି । ସାଇକେଲ ମରାମତି କରିବା ସଙ୍ଗେ ସଙ୍ଗେ ସେ ବିଭିନ୍ନ ପ୍ରକାରର ସାଇକେଲ ସରଞ୍ଜାମମାନ ରାଉରକେଲା ବଜାରରୁ ଆଣି ରଖିବା ବ୍ୟବସ୍ଥା କଲା । ଫଳରେ ତା'ର ପୂର୍ବର ଦୈନିକ ରୋଜଗାର ଠାରୁ ଅଧିକ ପରିମାଣରେ ରୋଜଗାର ହେଲା ।

ଗତ ୨୬-୮-୧୯୮୭ ରିଖ ଦିନ ଓଡ଼ିଶାର ଖଣି ଓ ଭୂତତ୍ତ୍ୱ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ମୋହନ ନାଗ ସବ୍‌ଡେଗା ବ୍ଲକରେ ବିଂଶସୂତ୍ରୀ ଅର୍ଥନୀତି ଅନୁଧ୍ୟାନ ଅବସରରେ ତା'ର ଦୋକାନ ଗୃହ ମଧ୍ୟକୁ ଯାଇ ସୁବିଧା ଅସୁବିଧା ମାନ ପଚାରି ବୁଝିଥିଲେ । ଏହି ପରିପ୍ରେକ୍ଷୀରେ କେଶବଠାରୁ ପ୍ରକାଶ ଯେ, ବର୍ତ୍ତମାନ ତା'ର ଦୋକାନର ବ୍ୟବସାୟିକ ମୂଲ୍ୟ ହାରାହାରି ଏକ ଲକ୍ଷ ଟଙ୍କାରୁ ଅଧିକ ହୋଇଗଲାଣି । ସରକାରଙ୍କଠାରୁ ଋଣବାବଦରେ

ପାଇଥିବା ଅର୍ଥର ଶତକଡ଼ା ୬୦ ଭାଗ ୨୮ଗୋଟି ମାସିକ କିସ୍ତିରେ ପରିଶୋଧ କରି ସାରିଲଣି ।

ତା'କୁ କାମରେ ସାହାଯ୍ୟ କରିବାପାଇଁ ଦୋକାନରେ ଦୁଇଜଣ ପିଲାଙ୍କୁ ମଧ୍ୟ ରଖିଛି । ବର୍ତ୍ତମାନ ତା'ର ଦିନକୁ ସମସ୍ତ ଖର୍ଚ୍ଚ ଯାଇ ହାରାହାରି ୫୦ ଟଙ୍କା ଆୟ ହୋଇ ପାରୁଛି । ଏହା ବ୍ୟତୀତ ସେ ଏହି ଦୋକାନ ଗୃହରେ ରୋଜଗାର କରି ଖଣ୍ଡିଏ ଲଲଘର କରିପାରିଛି । କିଛି ଜମି କିଣିବା ସଙ୍ଗେ ସଙ୍ଗେ ସେ ଓ ତା'ର ପରିବାର ତା' ନିଜର ଏହି ରୋଜଗାର ଉପରେ ସଂପୂର୍ଣ୍ଣ ନିର୍ଭର କରି ମହା ଆନନ୍ଦରେ କାଳାତିପାତ କରୁଛନ୍ତି ।

କେଶବର କର୍ତ୍ତବ୍ୟନିଷ୍ଠା ଯୋଗୁଁ ସ୍ଥାନୀୟ ବି. ଡି. ଓ.ଙ୍କଠାରୁ ଆରମ୍ଭକରି ଜିଲ୍ଲାପାଳ ଓ ଅନ୍ୟାନ୍ୟ କର୍ତ୍ତୃପକ୍ଷ ଖୁସିହୋଇ ତା'ର ଅବସ୍ଥାର ପରିବର୍ତ୍ତନ ଦେଖିବାକୁ ବିଭିନ୍ନ ସମୟରେ ତା'ର ଦୋକାନକୁ ଆସୁଛନ୍ତି ।

ଏଥିରେ "କେଶବର ଆନନ୍ଦ କହିଲେ ନସରେ" ।

**ଶ୍ରୀ ନୃସିଂହ ଚରଣ ଦାସ**
ଜିଲ୍ଲା ସୂଚନା ଓ ଲୋକସଂପର୍କ ଅଧିକାରୀ,
ସୁନ୍ଦରଗଡ଼

## ସ୍ୱପ୍ନ ସାର୍ଥକ ହେଲା

ସାନହୁଲ ଗ୍ରାମପଞ୍ଚାୟତର ବାଲିପାଟ ଗ୍ରାମ, ବହଣ୍ଡା-ଆଠମଲ୍ଲିକ ପ୍ରଧାନ ରାସ୍ତାଠାରୁ ମାତ୍ର ୨ କି. ମି. ଦୂରରେ ଅବସ୍ଥିତ । ବିଭିନ୍ନ ଜାତିର ଲୋକେ ଉକ୍ତ ଗ୍ରାମରେ ବାସ କରନ୍ତି । ଗୋଟିଏ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଉକ୍ତ ଗ୍ରାମରେ ଅଛି । ଗ୍ରାମର ପିଲମାନେ ଉଚ୍ଚ ଶିକ୍ଷା ପାଇଁ ସ୍ଥାନୀୟ ପଞ୍ଚାୟତର ସଦର ମହକୁମାକୁ ଆସନ୍ତି । ଉକ୍ତ ଗ୍ରାମରେ ଶ୍ରୀ କେଶବ କୁଅଁରଙ୍କ ଜନ୍ମ ଏକ ଆଦିବାସୀ ପରିବାରରେ । ପିତା ଶ୍ରୀ ଯୋଗେନ୍ଦ୍ର କୁଅଁରଙ୍କର ବୟସ ୫୦ ବର୍ଷ ହେଲେ ମଧ୍ୟ ଶାରିରୀକ ପରିଶ୍ରମ କରିପାରୁଛନ୍ତି । ୨୫ ବର୍ଷ ବୟସର କେଶବ, ବାପାଙ୍କର ବଡ଼ପୁଅ । ଭାଇ ଭଉଣୀ ମିଶି ପରିବାରର ସଂଖ୍ୟା ୧୧ ଜଣ । ମାତ୍ର, ୫ ଏକର ଡିପ ଜମି ଦ୍ୱାରା ଚଳିବା ବହୁତ କଷ୍ଟ ହୁଏ । କେଶବ, ସ୍କୁଲରେ ପଢ଼ିବାବେଳେ ବାପା ଓ ମା ଉଭୟେ ମଜୁରୀ ଲଗି ଯାହା ଆଣନ୍ତି, ଦୁଃଖ କଷ୍ଟେ ପରିବାରଟି ଚଳେ । କେଶବ ଯେତେବେଳେ ଗ୍ରାମର ନିମ୍ନ ପ୍ରାଥମିକ ସ୍କୁଲରେ ପଢ଼ନ୍ତି, ତାଙ୍କୁ ସରକାରଙ୍କ ତରଫରୁ ମାଗଣାରେ ପଢ଼ିବା ଉପକରଣ ସବୁ ଯୋଗାଇ ଦିଆଯାଉଥିଲା । ସେହି ଦିନଠାରୁ, ତାଙ୍କର ମନରେ ଏକ ଆସ୍ଥା ଆସିଥିଲା ଯେ ବାପା ମା'ଙ୍କ ଭଳି ସରକାର ମଧ୍ୟ, ଗରିବ ଲୋକଙ୍କ କଥା ବୁଝନ୍ତି । ସମୟ ଗଡ଼ି ଚାଲେ, କେଶବ ମାଟ୍ରିକ ଫେଲ୍‌ପରେ ପଢ଼ା ସମାପ୍ତ କରନ୍ତି, କିନ୍ତୁ ତାଙ୍କ ମନରେ ଝଲକିଉଠିଲା ସ୍ୱପ୍ନ ଯେ ସେ ଚାହିଁଲେ ସରକାରଙ୍କ ଠାରୁ କିଛି ଋଣ ଆଣି ବ୍ୟବସାୟ କରି ନିଜର ସାମାଜିକ ସ୍ଥିତି ସୁଦୃଢ଼ କରିବାକୁ । ସମୟ ଆସିଲା ସେ ସ୍ଥାନୀୟ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ସହ ସାକ୍ଷାତ କରି ୨୦ ଦଫା କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ "ଆଇ.ଆର.ଡି.ପି." ଯୋଜନାରେ ୧୯୮୫ ମସିହା ମାର୍ଚ୍ଚ ମାସରେ ଲୁଗା ବ୍ୟବସାୟ ପାଇଁ ଟ୩,୦୦୦ (ତିନିହଜାର ଟଙ୍କା) ଋଣ ନେଲେ । ଉକ୍ତ ଋଣରୁ ତାଙ୍କୁ ଟ୧,୫୦୦ ଛାଡ଼ ଯାଇ ଅବଶିଷ୍ଟ ସୁଝିବାକୁ ପଡ଼ିବ । ଋଣ ବାବଦକୁ ଲୁଗା କିଣାଯାଇ ଯୋଗାଇ ଦିଆଯାଉଥିଲା । ଲୁଗା ପାଇବାପରେ କେଶବଙ୍କର ସ୍ୱପ୍ନ ସତରେ ପରିଣତହେଲା । ସେ ନିଜ ଘରକୁଲଗି ଏକ ଲୁଗା ଦୋକାନ ଖୋଲିଲେ । ନିଜ ପଂଚାୟତ, ତଥା ପାଖ ପଂଚାୟତର ସାପ୍ତାହିକ ହାଟମାନଙ୍କୁ କେଶବ ଲୁଗା ଗଣ୍ଠିନେଇ ସାଇକେଲରେ ଯାଆନ୍ତି । ବୁଢ଼ା ଦିନେ, ବାପା ଆଉ ମଜୁରୀ ଲଗିବାକୁ ନଯାଇ ଦୋକାନରେ ବସନ୍ତି । ବର୍ତ୍ତମାନ କେଶବ ତାଙ୍କର ଋଣ ବାବଦକୁ ଟ ୧,୨୦୦–ସୁଝିସାରିଲେଣି ଓ ଦୋକାନରେ ମଧ୍ୟ ଟ ୪,୦୦୦–(ଚାରିହଜାର ଟଂକା)ରୁ ଉର୍ଦ୍ଧ୍ୱ ଲୁଗା ଏବେ ଗଚ୍ଛିତ ଅଛି । ପ୍ରତିଦିନ ହାରାହାରି ଦୋକାନରେ ଟ୨୦୦–ରୁ ଟ୩୦୦–ଭିତରେ ବିକ୍ରି ହେଉଛି । ଏହା ଭିତରେ କେଶବ ତାଙ୍କର ଗୋଟିଏ ଭଉଣୀର ବିବାହ କାର୍ଯ୍ୟ ସୁରୁଖୁରୁରେ ସାରିଛନ୍ତି ଓ ସେ ଏଥିପାଇଁ କାହାଠାରୁ ଋଣକରି ନାହାଁନ୍ତି । ଉଚ୍ଚ ବିଦ୍ୟାଳୟରେ ୨ ଟି ଭାଇ ଓ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ୪ଟି ଭାଇଙ୍କୁ ପଢ଼ାଉଛନ୍ତି । ଏତଦ୍‌ବ୍ୟତୀତ ଆଉ ଗୋଟିଏ ଭଉଣୀର ଆସନ୍ତାବର୍ଷ ବିଭାଘର ନିମନ୍ତେ ବିଭିନ୍ନ ଆସବାବପତ୍ର ଓ ଅଳଂକାର କିଣିକରି ରଖିଛନ୍ତି । ପୁରୁଣା କାଚିଆ ଘରକୁ ଭାଂଗି ପୁନର୍ବାର ୩ ବଖରା ନୂତନ ଘର ତିଆରି କରିଛନ୍ତି ନିଜଜମି ସହିତ ୪ ଏକର ବଂଧା ଜମି ମଧ୍ୟ ଚାଷ କରୁଛନ୍ତି । ଯଦ୍ୱାରାକି ଖାଇବା ଖର୍ଚ୍ଚ କେତେକାଂଶରେ ଚଳି ଯାଉଛି ଓ ଦୋକାନର ଲାଭାଂଶରେ ଅନ୍ୟାନ୍ୟ କାର୍ଯ୍ୟ କରୁଛନ୍ତି । କେଶବ, ନିଜ ପରିବାରରେ ଏତେ ଗୁଡ଼ିଏ ସନ୍ତାନପାଇଁ, ସମୟ ସମୟେ ଚିନ୍ତା କରନ୍ତି ଓ ତାଂକ ନିଜ ଜୀବନରେ ଏହାର ପୁନରାବୃତ୍ତି ନକରାଇବାକୁ ସଂକଳ୍ପବଦ୍ଧ ହୁଅନ୍ତି । ଯଦ୍ୱାରାକି, ଆଦିବାସୀ ପ୍ରଥାନୁଯାୟୀ ଏପର୍ଯ୍ୟନ୍ତ ବୈବାହିକ ବଂଧନରେ ଆବଦ୍ଧ ହୋଇନାହାଁନ୍ତି । ସରକାରଂକର ନିତୀ ଅନୁଯାୟୀ ସେ ୨୫ବର୍ଷ ପର୍ଯ୍ୟନ୍ତ ଅପେକ୍ଷା କରିଛନ୍ତି ଓ ଚଳିତବର୍ଷ ବିଭାହେବେ ।

କେଶବ ମଧ୍ୟ କୁହନ୍ତି ଆଜି ପର୍ଯ୍ୟନ୍ତ ମୁ ସରକାରର ବିଭିନ୍ନ ଯୋଜନା ଓ ନିୟମ ଦ୍ୱାରା ମୋର ସ୍ୱପ୍ନକୁ ସଫଳ କରିଛି ଓ ଭବିଷ୍ୟତରେ ମୋର ପରିବାରର ସଂଖ୍ୟା ସମୁଦାୟ ୪ ରୁ ଉର୍ଦ୍ଧ୍ୱ କରିବିନାହିଁ ଓ ମୋଭଳିଆ ଶିକ୍ଷିତ ଯୁବକଭାଇମାନେ କେବଳ ଦାସତ୍ୱ ସ୍ୱୀକାର କରିବା ପରିବର୍ତ୍ତେ ନଗୋଡ଼ାଇ ସରକାରଂକର ବିଭିନ୍ନ ଉନ୍ନୟନ ମୂଳକ ଯୋଜନାରେ ନିଜକୁ ସାମିଲକରି ପାରିଲେ ନିଜରକଥା ସମାଜର ଆର୍ଥିକ ମାନଦଣ୍ଡର ନିଶ୍ଚିତ ଉନ୍ନତି ଘଟିବ ।

ଉପଖଣ୍ଡ, ସୂଚନା ଓ ଲୋକସଂପର୍କ ଅଧିକାରୀ ।
ଆଠମଲ୍ଲିକ ।

## ଭୁତଅ-ଟିକରା (ବୁଗୁବୁଗା) ଗ୍ରାମର ବିକାଶ କାହାଣୀ

ସ୍ୱାଧୀନତା ପ୍ରାପ୍ତିପରେ ଭାରତବର୍ଷ ବିକାଶ ପଥରେ ଆଗେଇ ଚାଲିଛି ଦ୍ରୁତ ଗତିରେ । ଆମ ରାଜ୍ୟ ଓଡ଼ିଶା ଭାରତ ବର୍ଷର ପ୍ରଗତିର ମୁଖ୍ୟ ସ୍ରୋତରେ ନିଜକୁ ମିଶାଇ ଦେଇ ରାଜ୍ୟର ପ୍ରଗତି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରି ପାରିଛି । ଗ୍ରାମବାସୀଙ୍କର ଅକୁଣ୍ଠ ସହଯୋଗ, ଉଦ୍ୟମ ଓ ଅଧ୍ୟବସାୟ ଫଳରେ ଓଡ଼ିଶାର ପ୍ରତ୍ୟେକ ପୁରପଲ୍ଲୀରେ ଏକ ନୂତନ ସ୍ପନ୍ଦନ ସୃଷ୍ଟି କରିଛି । ସବୁ ଗାଁରେ ଋଣ ଅଧିକେ ସୃଷ୍ଟି ହୋଇଛି ଉଦ୍ୟମ

ଇଛାହ ଓ ପରସ୍ପରର ମିଳିତ ସହଯୋଗରେ ଏକ ନୂତନ ସମାଜ ଗଢି ଉଠିବ, ଯେଉଁ ସମାଜ ହେବ ଦାରିଦ୍ର୍ୟ ଓ ଅଜ୍ଞତା ମୁକ୍ତ ।

ସମ୍ବଲପୁର ଜିଲ୍ଲାର ୨ ଗୋଟି ପଞ୍ଚାୟତ ସମିତି ଭିତରୁ ଅତାବିରା ପଞ୍ଚାୟତ ସମିତି ଜିଲ୍ଲାର ପଞ୍ଚାୟତ ସମିତିମାନଙ୍କ ଭିତରେ ବିଗତ କେଇ ବର୍ଷ ଭିତରେ ଯେଉଁଳି ବିଭିନ୍ନ କ୍ଷେତ୍ରରେ ପ୍ରଗତି ହାସଲ କରିଛି ତାହା ଉଲ୍ଲେଖନୀୟ ।

ବରଗଡ଼ ସହରର ଅନତି ଦୂରରେ ଅବସ୍ଥିତ ଅତାବିରା ପଞ୍ଚାୟତ ସମିତି ସର୍ବମୋଟ ୧୭ ଗୋଟି ଗ୍ରାମ ପଞ୍ଚାୟତକୁ ନେଇ ଗଠିତ । ଏହି ପଞ୍ଚାୟତ ସମିତିର ମୋଟ ଜନ ସଂଖ୍ୟା ୧,୨୬,୧୦୫ ଭିତରୁ ଶତକଡ଼ା ପ୍ରାୟ ୫୦ ଭାଗ ଲୋକ ଅନୁସୂଚିତ ଜାତି ଓ ଉପଜାତି ଅନ୍ତର୍ଭୁକ୍ତ । ଏହି ବ୍ଲକର ଅଧିବାସୀମାନେ ଜୀବିକା ନିର୍ବାହ ପାଇଁ ମୁଖ୍ୟତଃ କୃଷି ଉପରେ ନିର୍ଭରଶୀଳ । କଠିନ ପରିଶ୍ରମ ଓ ଅଧ୍ୟବସାୟ ବଳରେ ସେମାନେ ଧାନ, ଡାଲି, ତୈଳବୀଜ ଓ ବିଭିନ୍ନ ପନି ପରିବା ଉତ୍ପାଦନରେ ବର୍ଷ ତମାମ ଲାଗିଥାଆନ୍ତି । ବ୍ଲକର ମୋଟ ୨୮,୩୪୦ ହେକ୍ଟର ଚାଷ ଜମି ଭିତରୁ କ୍ଷୁଦ୍ର ବୃହତ ଓ ଉଠାଜଳସେଚନ ମାଧ୍ୟମରେ ପ୍ରାୟ ୧୯,୦୪୬ ହେକ୍ଟର ଜମି ଅର୍ଥାତ୍ ଦୁଇ ତୃତୀୟାଂଶ ଜମି ଜଳସେଚିତ ହୋଇ ପାରିଛି । ୧୩ ଗୋଟି ଉଠାଜଳସେଚନ ଯୋଜନା ସମେତ ଘରୋଇ ଉଦ୍ୟମରେ ମଧ୍ୟ ୪୦ଟି ଉଠାଜଳସେଚନ ପଏଣ୍ଟ ସ୍ଥାପିତ ହୋଇ ଜିଲ୍ଲା ତଥା ରାଜ୍ୟର ସବୁଜ ବିପ୍ଳବକୁ ଆଗେଇ ନେବାରେ ଯତ୍‌ପରୋନାସ୍ତି ସହାୟତା କରିଛନ୍ତି । ଏହାଛଡ଼ା ଏହି ବ୍ଲକରେ ୪୫୦ଟି ସେଚକୂପ ଦ୍ୱାରା ୩୦୦ ହେକ୍ଟର ଜମିରେ ଅତିରିକ୍ତ ଜଳସେଚନର ସୁବିଧା ସଂଭବ ହୋଇ ପାରିଛି ।

ବିଭିନ୍ନ କ୍ଷେତ୍ରରେ ଯୋଜନାର ସୁଫଳ ଅଗଣିତ ଦରିଦ୍ର ଜନସାଧାରଣଙ୍କ ପାଖରେ ପହଞ୍ଚାଇ ସେମାନଙ୍କର ମୌଳିକ ସମସ୍ୟାଗୁଡ଼ିକର ଯଥାଯଥ ସମାଧାନ କରିବା ଦିଗରେ ସ୍ୱର୍ଗୀୟା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ନୂତନ କୋଡ଼ିଏ ସୂତ୍ରୀ କାର୍ଯ୍ୟକ୍ରମ ଥିଲା ଏକ ଯୁଗାନ୍ତକାରୀ ପଦକ୍ଷେପ । ବାସ୍ତବରେ ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ଫଳରେ ବ୍ଲକର ଦରିଦ୍ର ଜନସାଧାରଣ ବହୁଳ ଭାବରେ ଉପକୃତ ହୋଇଛନ୍ତି । ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଓ ଗ୍ରାମାଞ୍ଚଳର ଦରିଦ୍ର ପରିବାରମାନଙ୍କର ଅର୍ଥନୈତିକ ଉତ୍ଥାନ ଲାଗି ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ବ୍ଲକର ପ୍ରତ୍ୟେକ ଗାଁରେ ବିକାଶର କୁହୁକ ସ୍ପର୍ଶ ସ୍ପଷ୍ଟ ଦୃଷ୍ଟି ଗୋଚର ହୁଏ । ଉଦାହରଣ ସ୍ୱରୂପ ଏହି ବ୍ଲକର ଗୋଟିଏ ଗାଁରେ ପ୍ରଗତିର ଚିତ୍ର ନିଜ ଆଖିରେ ଦେଖିବା ।

ସମ୍ବଲପୁର ବରଗଡ଼ ରାସ୍ତାର ଅତାବିରା ବଜାରଠାରୁ ଅନତି ଦୂରରେ ଏହି ପଲ୍ଲୀ ଗ୍ରାମ "ଭୁତଅ-ଟିକିରା" ଅବସ୍ଥିତ । ଏହି ଗାଁଟିର ପ୍ରାକୃତିକ ପରିବେଷ୍ଟନୀ ଅତୀବ ମନୋହର । ଗାଁର ପୂର୍ବ ପାର୍ଶ୍ୱରେ ଏକ ପ୍ରାକୃତିକ ଝରଣା କୁଳୁ କୁଳୁ ନାଦରେ ଏକ ଚମତ୍କାର ଗୁଞ୍ଜରଣ ସୃଷ୍ଟି କରି ବହି ଯାଉଛି । ଏହି ଛୋଟ ପଲ୍ଲୀ ଗାଁଟି ୬୫ ପରିବାର ବିଶିଷ୍ଟ ଜନସଂଖ୍ୟା ୨୬୫ । ବିଭିନ୍ନ ସଂପ୍ରଦାୟ ପରସ୍ପର ସହଯୋଗ, ସହାନୁଭୂତି ଓ ଏକତା ବଳରେ ସେମାନେ ଶାନ୍ତ ଓ ସୌହାର୍ଦ୍ଦ୍ୟ ପୂର୍ଣ୍ଣ ବାତାବରଣ ମଧ୍ୟରେ ଏକାଠି ବସବାସ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ପର୍ବପର୍ବାଣୀ ସମୂହ ଭାବେ ପାଳନ କରନ୍ତି । ଏହି ପଲ୍ଲୀଗ୍ରାମରେ ଗଉଡ଼, କୁମାର, ବ୍ରାହ୍ମଣ, ଚଷା, କୁମ୍ଭାର, ମତ୍ସ୍ୟଜୀବୀ, ହରିଜନ ଓ ଆଦିବାସୀ ସଂପ୍ରଦାୟର ବସତି ଉଲ୍ଲେଖନୀୟ ।

ଏହି ପଲ୍ଲୀଗ୍ରାମର ଲୋକମାନଙ୍କର ମୁଖ୍ୟ ଜୀବିକା କୃଷି ହେଲେହେଁ କେତେକ ପରିବାର ଲୁଗା ବୁଣି, ମାଛଧରି ଓ ହାଣ୍ଡି ମାଠିଆ ଇତ୍ୟାଦି ତିଆରି କରି ନିଜ ଜୀବିକା ନିର୍ବାହ କରନ୍ତି । ଗ୍ରାମର ଚାଷୀମାନେ ବିଭିନ୍ନ ଋତୁରେ ଧାନ, ଆଖୁ, ମୁଗ, ରାଶି, ଚିନାବାଦାମ, ସୋରିଷ, ଆଳୁ, ଡଙ୍କଭୁଜ, ପୋଟଳ, କୋବି, ଟମାଟୋ, ଅମୃତଭଣ୍ଡା ପ୍ରଭୃତି ଅର୍ଥକାରୀ ଫସଲ ଉତ୍ପାଦନ କରି ନିଜର ଚାହିଦା ମେଣ୍ଟାଇବା ସଙ୍ଗେ ସଙ୍ଗେ ନିକଟସ୍ଥ ଅତାବିରା ବଜାରକୁ ଯୋଗାଉ ଥାଆନ୍ତି । ଗ୍ରାମର ଅବସ୍ଥିତି ଦୃଷ୍ଟିରୁ, ହୀରାକୁଦ କେନାଲ ପ୍ରଣାଳୀର ବୁଗ୍‌ବୁଗା ଡିଷ୍ଟ୍ରିବ୍ୟୁଟରର ମଧ୍ୟାଂଶରେ ଥିବାରୁ ଚାଷ ସମୟରେ ଜଳ ଯୋଗାଣରେ ବାଧାପ୍ରାପ୍ତ ଘଟିଥାଏ । ଜଳଯୋଗାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ଉଦ୍ଦେଶ୍ୟରେ ଏଠାରେ ଏକ ଉଠା ଜଳସେଚନର ଆବଶ୍ୟକତା ଦୀର୍ଘଦିନ ଧରି ଅନୁଭୂତ ହେଉଛି ।

ଏହି ପଲ୍ଲୀଗ୍ରାମରେ ୧୯୮୨ ମସିହାରେ ଏକ ପଲ୍ଲୀଶ୍ରୋତାମଣ୍ଡଳୀ ସୂଚନା ଓ ଲୋକସଂପର୍କ ବିଭାଗ ତରଫରୁ ଗଠନ କରାଯାଇଥିଲା । ଉକ୍ତ ପଲ୍ଲୀଶ୍ରୋତାମଣ୍ଡଳୀରେ ଶ୍ରୀ ଫକିର କର୍ଣ୍ଣ ଆବାହକ ଏବଂ ଶ୍ରୀ ଭରତ କର୍ଣ୍ଣ ସଭାପତି ଅଛନ୍ତି । ପଲ୍ଲୀଶ୍ରୋତାମଣ୍ଡଳୀର ସଭ୍ୟମାନେ ପ୍ରତ୍ୟେକ ମଙ୍ଗଳବାର ଓ ଶୁକ୍ରବାର ସନ୍ଧ୍ୟା ୬ଟା-୩୦ ମିନିଟ୍ ସମୟରେ ଏକତ୍ରିତ ହୋଇ ପଲ୍ଲୀଶ୍ରୋତାମଣ୍ଡଳୀ ପାଇଁ ଉଦ୍ଦିଷ୍ଟ ଗୃହରେ ବସି ଆକାଶବାଣୀ, ସମ୍ବଲପୁର କେନ୍ଦ୍ରରୁ ପ୍ରସାରିତ ପଲ୍ଲୀଶ୍ରୋତା ମଣ୍ଡଳୀ ଆଲୋଚନା ବିଷୟରେ ରେଡ଼ିଓରୁ ଶୁଣି ଉପଲବ୍ଧି କରୁଥିବା ଅସୁବିଧା ବିଷୟରେ ପ୍ରଶ୍ନଗୁଡ଼ିକ ପଗ୍ରରି ସେମାନଙ୍କର ସନ୍ଦେହ ମୋଚନ କରିବା ସଙ୍ଗେ ସଙ୍ଗେ ଲବ୍ଧଜ୍ଞାନ କୃଷି ଓ ଆନୁଷଙ୍ଗିକ କାର୍ଯ୍ୟରେ ଲଗାଇ ଉପକୃତ ହୋଇଥାଆନ୍ତି । ଅବସର ସମୟରେ ଏହି ଭୁତଅ ଟିକିରା ଗ୍ରାମର ଲୋକମାନେ ସଂସ୍କୃତ, କୃଷ୍ଣଗୁରୁ ଭଜନ କରି ନିଜ ନିଜ ମଧ୍ୟରେ ଆଧ୍ୟାତ୍ମିକ ଭାବ ଓ ସଦ୍‌ଭାବ ରକ୍ଷିଥାନ୍ତି ।

ସମ୍ବଲପୁର ଜିଲ୍ଲାରେ ମୋଟ ୪୬୮ ଗୋଟି ପଲ୍ଲୀଶ୍ରୋତାମଣ୍ଡଳୀ ମଧ୍ୟରୁ ୨୩୦ ଗୋଟି ପଲ୍ଲୀଶ୍ରୋତା ମଣ୍ଡଳୀ ନିରବଚ୍ଛିନ୍ନ ଭାବରେ କାର୍ଯ୍ୟକରି ଆସୁଅଛି । ଏହି ଭୁତଅଟିକିରା ପଲ୍ଲୀଶ୍ରୋତାମଣ୍ଡଳୀଟି ୧୯୮୩ରୁ ୧୯୮୫ ପର୍ଯ୍ୟନ୍ତ ସମ୍ବଲପୁର ଜିଲ୍ଲାର ପଲ୍ଲୀଶ୍ରୋତାମଣ୍ଡଳୀମାନଙ୍କ ମଧ୍ୟରେ ଦ୍ୱିତୀୟସ୍ଥାନ ଅଧିକାର କରି ଆସୁଅଛି ଓ ୧୯୮୪ ମସିହାରେ ଉତ୍ତମ କାର୍ଯ୍ୟକାରିତା ପାଇଁ ଜିଲ୍ଲାର ଦ୍ୱିତୀୟ ସ୍ଥାନ ଅଧିକାର କରିଥିବାରୁ ସୂଚନା ଓ ଲୋକସଂପର୍କ ବିଭାଗ ତରଫରୁ ଏକ କପ୍ ଏବଂ ପ୍ରଶଂସାପତ୍ରରେ ସମ୍ମାନିତ କରାଯାଇଥିଲା ।

ସମୁଦାୟ ପଞ୍ଚାୟତଟିରେ ଆଇ. ଆର ଡି. ଏବଂ ଇ. ଆର. ପି. ଯୋଜନାରେ ୫୬ଟି ପରିବାର ଉପକୃତ ହୋଇଛନ୍ତି । ଏନ୍. ଆର. ଇ. ପି. ଯୋଜନା ମାଧ୍ୟମରେ ଅତାବିରା ବ୍ଲକ ତରଫରୁ ୪ଟି ଯୋଜନା କାର୍ଯ୍ୟକାରୀ

କରାଯାଇଅଛି । ଏହାଛଡା ୧୦ଟି ଗୋବର ଗ୍ୟାସ ପ୍ଲାଣ୍ଟ, ୩୮ଟି ଡଗ୍ ୱେଲ୍ ସ୍ଥାପିତ ହୋଇଛି । ମୋଟ ଉପରେ କହିବାକୁ ଗଲେ, ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ସମବାୟ ଶିଳ୍ପ ପ୍ରଭୃତି ଯୋଜନାରେ ପଞ୍ଚାୟତଟି ବେଶ୍ ଖ୍ୟାତି ଅର୍ଜନ କରିଛି ।

ଆମ ଭାରତ କୃଷି ପ୍ରଧାନ ଦେଶ ହୋଇଥିବାରୁ କୃଷି ଓ କୃଷିକର ସମ୍ମାନ ସମାଜର ଉଚ୍ଚରେ ରହିବା ଉଚିତ । ତାହାଛଡା ସରକାରଙ୍କର ସମସ୍ତ ଯୋଜନାର ସଫଳ କାର୍ଯ୍ୟକାରୀତାରେ ପଲ୍ଲୀବାସୀ ଅଂଶ ଗ୍ରହଣ କଲେ ଗ୍ରାମାଞ୍ଚଳ ଦାରିଦ୍ର୍ୟରୁ ମୁକ୍ତ ହେବ, ଏଥିରେ ସନ୍ଦେହ ନାହିଁ ।

**ଶ୍ରୀ ରଜନୀକାନ୍ତ ଶବର**
ଆଞ୍ଚଳିକ ସଂଗଠକ ପଲ୍ଲୀଶ୍ରେତାମଣ୍ଡଳୀ ସମୂହ
ସମ୍ବଲପୁର

---

## ଧନ୍ଦାର ପ୍ରଥମ ପାହାଚ

ବାଲିଗୁଡ଼ା ଠାରୁ ଅନତି ଦୂରରେ ଖଜୁରୀ ନାଳଠାରେ ଶିଶିରକାନ୍ତ ବିଷ୍ଵାଣୀଙ୍କର ଛୋଟ ଦୋକାନଟି ପ୍ରତ୍ୟେକ ସନ୍ଧ୍ୟାରେ ବେଶ୍ ସରଗରମ ହୋଇଉଠେ । ଗରିବ ଆଦିବାସୀ ଶ୍ରମିକମାନେ ଦିନର ମଜୁରୀ କରି ସନ୍ଧ୍ୟାରେ ଏଠାରୁ ଗୁଡ଼ଚାଉଳ, ଲୁଣ, ତେଲର ସଉଦା କରନ୍ତି । ରାତି ଅଧ ହେଉ କି ପାହାନ୍ତା ପ୍ରହର ହେଉ ସାଇଭାଇଙ୍କର ସମୟ ଅସମୟରେ ଯାହା ଦରକାର ପଡ଼େ ସେଇ ଦୋକାନରୁ ପାଇ ପାରନ୍ତି । ସେଥିପାଇଁ ଶିଶିରକାନ୍ତଙ୍କ ପ୍ରତି ସାଇଭାଇଙ୍କର ବଡ ଶ୍ରଦ୍ଧା ।

ଶିଶିରକାନ୍ତଙ୍କର ବାପା ତୀର୍ଥ ବିଷ୍ଵାଣୀ ପ୍ରାୟ ତିରିଶି ବର୍ଷତଳେ ବାଲିଗୁଡ଼ାକୁ ଆସି ନିଜର ଲୋହୁରା ଜାତିର କୌଳିକ ପେଶାକୁ ଅବଲମ୍ବନ କରି ଟାଙ୍ଗିଆ କାତି ପ୍ରଭୃତି ତିଆରିକରି ସ୍ଥାନୀୟ ବ୍ୟକ୍ତିମାନଙ୍କୁ ବିକ୍ରୀ କରୁଥିଲେ ଏବଂ ଅନ୍ୟାନ୍ୟ ବରାଦ ମୁତାବକ କାମ ମଧ୍ୟ କରୁଥିଲେ । ଜମିବାଡ଼ି ନିଜର ହୋଇ କିଛି ନ ଥିଲା । ତେଣୁ ସେଇ ସ୍ୱଳ୍ପ ରୋଜଗାରରେ ପରିବାର ପ୍ରତିପାଳିତ ସହିତ ପିଲାମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତର କଳ୍ପନା କରି ସେମାନଙ୍କୁ ପାଠ ମଧ୍ୟ ପଢ଼ାଉଥିଲେ । ତା' ଭିତରେ ଏଇ ଖଜୁରୀ ନାଳଠାରେ ସେ ମଧ୍ୟ ଗୋଟିଏ ଛୋଟଘର ରହିବା ପାଇଁ ତିଆରି କରି ପାରିଥିଲେ । ଶିଶିରକାନ୍ତ ପିଲାବେଳେ ଖୁବ୍ ଅଧ୍ୟବସାୟୀ ଥିଲେ ମଧ୍ୟ ଆର୍ଥିକ ଅଭାବ ଅସୁବିଧା ତାଙ୍କର ପାଠପଢ଼ାରେ ଅନେକ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରୁଥିଲା । ଫଳରେ ସେ ମାଟ୍ରିକ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ପାରିଲେନି । ୧୯୮୪ ମସିହାରେ ମାଟ୍ରିକ୍ ପରୀକ୍ଷାରେ ଅକୃତକାର୍ଯ୍ୟ ହେବା ପରେ ମନ ତାଙ୍କର ଭାଙ୍ଗିପଡ଼ିଲା ଏବଂ ପରିବାରର ଆର୍ଥିକ ସ୍ଥିତି ରୋଜଗାରର ପନ୍ଥା ଅନ୍ୱେଷଣ କରିବାକୁ ତାଙ୍କୁ ବାଧ୍ୟ କଲା । ନିଜ ବାପାଙ୍କର ପରାମର୍ଶକ୍ରମେ ସେ ଗୋଟିଏ ଛୋଟ ଦୋକାନ ଖୋଲିବା ପାଇଁ ଋଣ ଉଦ୍ଦେଶ୍ୟରେ ଗୋଷ୍ଠୀ ଉନ୍ନୟନ ଅଧିକାରୀ, ବାଲିଗୁଡ଼ାଙ୍କୁ ଆବେଦନ କଲେ । ତେଣୁ ସମନ୍ୱିତ ଗ୍ରାମ୍ୟ ବିକାଶ କାର୍ଯ୍ୟକ୍ରମରେ ଗୋଟିଏ ଛୋଟ ଦୋକାନ ଖୋଲିବା ପାଇଁ ଶିଶିରକାନ୍ତଙ୍କୁ ଷ୍ଟେଟ୍‌ବ୍ୟାଙ୍କ ଅଫ୍ ଇଣ୍ଡିଆ, ବାଲିଗୁଡ଼ା ଶାଖା ୨୨-୮-୮୬ ରେ ଟ ୩୦୦୦ (ତିନି ହଜାର ଟଙ୍କା) ଋଣ ପ୍ରଦାନ କଲେ । ଏଥିରୁ ଟ ୧୦୦୦ (ଏକ ହଜାର ଟଙ୍କା) ତାଙ୍କୁ ଛାଡ଼ ମିଳିଲା । ଖଜୁରୀ ନାଳରେ ଥିବା ତାଙ୍କ ଘରର ବାରଣ୍ଡାରେ ସେ ସେହିଦିନ ଠାରୁ ଗୋଟିଏ ଛୋଟ ଦୋକାନ ଖୋଲିଛନ୍ତି । ଡାଲି, ଗୁଡ଼ଚାଉଳ, ତେଲ ଲୁଣ ଠାରୁ ଆରମ୍ଭକରି ସାବୁନ୍ ବିସ୍କୁଟ ପର୍ଯ୍ୟନ୍ତ ପ୍ରତ୍ୟେକଟି ଦରକାରୀ ଜିନିଷ ନିଜର ଛୋଟ ଦୋକାନଟିରେ ସେ ସଜାଇ ରଖିଛନ୍ତି । ଲୋକମାନଙ୍କୁ ଉଚିତ୍ ଦରରେ ଜିନିଷ ବିକ୍ରୀକଲେ ମଧ୍ୟ ତାଙ୍କର ଦୈନିକ ଆୟ ବାରଟଙ୍କାରୁ କମେ ନାହିଁ । ଶିଶିରକାନ୍ତଙ୍କୁ ବର୍ତ୍ତମାନ ବୟସ ୨୪ ବର୍ଷ । ସେ ବିବାହ କରି ସାରିଲେଣି ଏବଂ ଏ ଭିତରେ ମଧ୍ୟ ଝିଅଟିଏ ହୋଇଛି । ବାପା ମାଆଙ୍କ ଠାରୁ ଭିନ୍ନ ହୋଇ ସେ ନିଜ ପରିବାରଧରି ଚଳୁଛନ୍ତି । ତେଣୁ ତାଙ୍କର ଛୋଟ ପରିବାର ଏଇ ରୋଜଗାରରେ ଆରାମରେ ଚଳିଯାଉଛି । ସେ ଟ୯୫୦ (ନଅଶହ ପଚାଶ ଟଙ୍କା) ଋଣ ପରିଶୋଧ କରି ସାରିଛନ୍ତି । ଏହା ବ୍ୟତୀତ ସଞ୍ଚୟ ଅର୍ଥରୁ ସେ ଆଜ୍‌ବେଷ୍ଟସ୍ ପକାଇ ଦୁଇବଖରା ଘର ମଧ୍ୟ ବର୍ତ୍ତମାନ ତିଆରି କରୁଛନ୍ତି । ତାଙ୍କର ଇଚ୍ଛା ଏହି ଋଣ ପରିଶୋଧ କରି ଦୋକାନଟିକୁ ବଡ଼ କରି ନୂଆଘରେ କରିବା ପାଇଁ, ସେ ପୁନର୍ବାର ସମନ୍ୱିତ ଗ୍ରାମ୍ୟ ବିକାଶ କାର୍ଯ୍ୟକ୍ରମରେ ଋଣ ପାଇବା ପାଇଁ ଆବେଦନ କରିବେ ।

ଶିଶିରକାନ୍ତ ଆଜି ଅଧିକ ଆଶାବାଦୀ ଏବଂ ଲକ୍ଷ୍ୟ ତାଙ୍କର ଅନେକ ଆଗକୁ । ସମନ୍ୱିତ ଗ୍ରାମ୍ୟ ବିକାଶ କାର୍ଯ୍ୟକ୍ରମର ଆର୍ଥିକ ସହାୟତା ଯୁବକ ଶିଶିରକାନ୍ତଙ୍କୁ ଯେ କେବଳ ଆତ୍ମନିର୍ଭରଶୀଳ କରିପାରିଛି ତାହା ନୁହେଁ, ତା' ସହିତ ତାଙ୍କର ଆର୍ଥିକ ମେରୁଦଣ୍ଡକୁ ଅଧିକ ମଜଭୁତ ମଧ୍ୟ କରି ପାରିଛି । ଗରିବ ଶିକ୍ଷିତ ଅଶିକ୍ଷିତ ଯୁବକମାନଙ୍କ ମନରେ ଶିଶିରକାନ୍ତଙ୍କର ଉଦ୍ୟମ ରେଖାପାତ କରିଛି ଏବଂ ସରକାରୀ କାର୍ଯ୍ୟକ୍ରମ ମାଧ୍ୟମରେ ସ୍ୱାବଲମ୍ବୀ ହେବା ପାଇଁ ସେମାନଙ୍କ ମନରେ ଆଗ୍ରହ ସୃଷ୍ଟି କରିବା ସହିତ ସଫଳତାର ପ୍ରତିଶ୍ରୁତି ମଧ୍ୟ ସେମାନଙ୍କୁ ପ୍ରଦାନ କରୁଛି ।

**ଶ୍ରୀ ପ୍ରଭାତକୁମାର ଷଡ଼ଙ୍ଗୀ**

ଉପଖଣ୍ଡ ସୂଚନା ଓ ଲୋକସମ୍ପର୍କ
ଅଧିକାରୀ, ବାଲିଗୁଡ଼ା

— o —



# ଲୋକ ପ୍ରତିନିଧି ଓ ସରକାରୀ କର୍ମଚାରୀ

ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀ କାନ୍ତ ପଣ୍ଡା ସମସ୍ତ ଜିଲ୍ଲାପାଳଙ୍କ ନିକଟକୁ ଏକ ପତ୍ର ଲେଖି ଲୋକପ୍ରତିନିଧି ଓ ସରକାରୀ କର୍ମଚାରୀଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ଓ ଉତ୍ତମ ବୁଝାମଣା ପ୍ରତିଷ୍ଠା ଉପରେ ଗୁରୁତ୍ୱ ଦେଇଛନ୍ତି ।

ଅତୀତରେ ଏ ସଂପର୍କରେ ଦିଆଯାଇଥିବା ବିଭିନ୍ନ ନିର୍ଦ୍ଦେଶନାମା ସ୍ମରଣ କରାଇ ଦେଇ ଶ୍ରୀ ପଣ୍ଡା କହିଛନ୍ତି ଯେ ଲୋକ ପ୍ରତିନିଧି ଭାବରେ ସଂସଦ ଓ ବିଧାନ ସଭା ସଦସ୍ୟମାନେ ସେମାନଙ୍କର କର୍ତ୍ତବ୍ୟ ସଂପାଦନ ସକାଶେ ସରକାରୀ କର୍ମଚାରୀଙ୍କର ସହଯୋଗ କାମନା କରିଥାନ୍ତି । ପ୍ରତ୍ୟେକ ସରକାରୀ କର୍ମଚାରୀଙ୍କର ପ୍ରଚେଷ୍ଟା ହେବା ଉଚିତ ଯେ ଯେତେ-ଦୂର ସମ୍ଭବ ସଂସଦ ଓ ବିଧାନ ସଭା ସଦସ୍ୟମାନଙ୍କୁ ସେମାନଙ୍କ କର୍ତ୍ତବ୍ୟ ସଂପାଦନରେ ସାହାଯ୍ୟ କରିବାକୁ ଚେଷ୍ଟିତ ହେବେ । ନିର୍ଦ୍ଦେଶାବଳୀ ବିଦ୍ୟମାନ ଥାଇ ମଧ୍ୟ ସଂସଦ ସଦସ୍ୟ ଓ ବିଧାୟକ-ମାନଙ୍କ ଠାରୁ ଅଭିଯୋଗ ଆସୁଛି ଯେ ସେମାନେ ଜିଲ୍ଲାସ୍ତରରେ ଜିଲ୍ଲାପାଳଙ୍କ ନିକଟକୁ ବା ଅନ୍ୟ କୌଣସି ଅଧିକାରୀଙ୍କୁ ପତ୍ର ଲେଖିଲେ କାର୍ଯ୍ୟାନୁଷ୍ଠାନ କରିବା ତ ଦୂରର କଥା ପତ୍ରର ପ୍ରାପ୍ତିସ୍ୱୀକାର ମଧ୍ୟ କରାଯାଉନାହିଁ । ଏଭଳି ଅଭିଯୋଗ ସରକାରଙ୍କ ନିକଟରେ ପହଞ୍ଚିବା ଦୁର୍ଭାଗ୍ୟଜନକ ବୋଲି ବର୍ଣ୍ଣନା କରି ନିର୍ଦ୍ଦେଶନାମାଗୁଡ଼ିକୁ ଆନ୍ତରିକତା ସହ ପାଳନ କରିବାକୁ ମୁଖ୍ୟ ଶାସନ ସଚିବ ନିର୍ଦ୍ଦେଶ ଦେଇଛନ୍ତି ।

ସଂସଦ ଓ ବିଧାନ ସଭା ସଦସ୍ୟ ଓ ସରକାରୀ କର୍ମଚାରୀମାନଙ୍କ ମଧ୍ୟରେ ଉତ୍ତମ ସଂପର୍କ ପ୍ରତିଷ୍ଠା ପାଇଁ ଦିଆଯାଇଥିବା ନିର୍ଦ୍ଦେଶାବଳୀ ନିମ୍ନରେ ଉଲ୍ଲେଖ କରାଗଲା—

୧—ସଂସଦ ସଦସ୍ୟ ଓ ବିଧାୟକମାନେ କୌଣସି କାର୍ଯ୍ୟାଳୟ ଅଧିକାରୀଙ୍କୁ ସାକ୍ଷାତ କରିବାକୁ ଚାହିଁଲେ ସେହି ଅଧିକାରୀ-ମାନେ ସୌହାର୍ଦ୍ଦ୍ୟର ସହିତ ତାଙ୍କୁ ସାକ୍ଷାତ କରିବେ, ନିଜ ଆସନରୁ ଠିଆହୋଇ ତାଙ୍କୁ ଅନ୍ୟ ଆସନ ପ୍ରଦାନ କରି ଧୈର୍ଯ୍ୟର ସହିତ ତାଙ୍କ କଥା ଶୁଣିବେ ।

୨—ଯଦି ତାଙ୍କର ପ୍ରସ୍ତାବ ବା ଅନୁରୋଧ ରକ୍ଷାକରିବା ସମ୍ଭବ ନୁହେଁ, ନମ୍ରତାର ସହିତ ଏହାର କାରଣ ତାଙ୍କୁ ଜଣାଇ-ଦେବେ ।

୩—ଅଧିକାରୀମାନେ ସଦରମହକୁମାରେ ଉପସ୍ଥିତ ଥିବା ସମୟରେ ପ୍ରତ୍ୟେକଦିନ ସାଧାରଣ ଲୋକଙ୍କ ସାକ୍ଷାତ ପାଇଁ ନିର୍ଦ୍ଦିଷ୍ଟ ସମୟ ନିର୍ଦ୍ଧାରଣ କରିବେ । ଏହି ସମୟ ମଧ୍ୟରେ ସଂସଦ ସଦସ୍ୟ ଓ ବିଧାୟକମାନଙ୍କୁ ସାକ୍ଷାତ ଦେବାରେ ଅଗ୍ରାଧିକାର ଦିଆଯିବ ।

୪—ସାଧାରଣ ଓ ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ଯଦି ସେମାନେ କୌଣସି ତଥ୍ୟ ଜାଣିବାକୁ ଚାହାନ୍ତି, ତାହା ତାଙ୍କୁ ଯୋଗାଇ ଦିଆଯିବ । ଏହି ତଥ୍ୟ ଯଦି କୌଣସି ବ୍ୟକ୍ତିଗତ ସ୍ୱାର୍ଥ ସହିତ ଜଡ଼ିତ ବା ଅଦାଲତର ବିଚାରାଧୀନ ଥିବା ମକଦ୍ଦମା ସହିତ ସଂପୃକ୍ତ ସେ ତଥ୍ୟ ଯୋଗାଇ ଦିଆଯିବ ନାହିଁ ।

## ଆଶୀର୍ବାଦ ଜଣେ ବୃଦ୍ଧାଙ୍କର

"ଏକ ବୃଦ୍ଧା ମାତୃସ୍ଥାନୀୟା ହିସାବରେ ମୁଁ ସମଲେଶ୍ୱରୀଙ୍କ ପାଖରେ ପ୍ରାର୍ଥନା କରୁଛି, ଆପଣଙ୍କର ଭବିଷ୍ୟତ ମଙ୍ଗଳମୟ ହେଉ, ଏହା ମୋର ଆଶୀର୍ବାଦ ।" ମୁଖ୍ୟ ଶାସନ ସଚିବଙ୍କୁ ଏକ ପତ୍ରରେ ଏହା ଲେଖିଛନ୍ତି ସମ୍ବଲପୁର ଧନୁପାଲିର ଶ୍ରୀମତୀ ଲକ୍ଷ୍ମୀ ଦେବୀ ।

୮୨ ବର୍ଷ ବୟସ୍କା ଶ୍ରୀମତୀ ଲକ୍ଷ୍ମୀ ଦେବୀଙ୍କର ସ୍ୱାମୀ ସ୍ୱର୍ଗତ ସୁଦର୍ଶନ ପାଣି ଜଣେ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ରୂପେ ପେନ୍‌ସନ ପାଉଥିଲେ । ନିୟମାନୁଯାୟୀ ସ୍ୱର୍ଗତ ପାଣିଙ୍କର ପତ୍ନୀ ପରିବାର ପେନ୍‌ସନ ପାଇଁ ଆବଶ୍ୟକୀୟ ଦରଖାସ୍ତ ମାର୍ଚ୍ଚ ମାସରୁ ଦାଖଲ କରିଥିଲେ ମଧ୍ୟ ଲାଲ୍‌ଫିତା ଯୋଗୁଁ କାର୍ଯ୍ୟାନୁଷ୍ଠାନ ବିଳମ୍ବିତ ହେଲା । ଛଅମାସରୁ ଊର୍ଦ୍ଧ୍ୱ ସମୟର ସମସ୍ତ ଚେଷ୍ଟା ବିଫଳ ହେବା ପରେ ସେପ୍‌ଟେମ୍ବର ମାସ ମଧ୍ୟଭାଗରେ ମୁଖ୍ୟ ଶାସନ ସଚିବଙ୍କ ଅଭିଯୋଗ ପ୍ରକୋଷ୍ଠକୁ ଏକ ଦରଖାସ୍ତ ସେ ଡାକ ଯୋଗେ ପଠାଇଲେ । ମୁଖ୍ୟ ଶାସନ ସଚିବଙ୍କର ପ୍ରଚେଷ୍ଟା ଫଳରେ ସେପ୍‌ଟେମ୍ବର ୨୮ ତାରିଖ ଦିନ ପେନ୍‌ସନ ମଞ୍ଜୁର ଆଦେଶ ଓ ତା'ପରେ ପରେ ପୁରାତନ ପ୍ରାପ୍ୟ ସମେତ ସମସ୍ତ ଟଙ୍କା ତାଙ୍କୁ ମିଳିଥିଲା । ତା' ପରେ ଏହି ମର୍ମସ୍ପର୍ଶୀ ଚିଠି ।

ଜନସାଧାରଣଙ୍କର ନ୍ୟାୟପୂର୍ଣ୍ଣ ଅଭିଯୋଗଗୁଡ଼ିକର ଆଶୁ ସମାଧାନ ପାଇଁ ରାଜ୍ୟ ସରକାରଙ୍କର ସମସ୍ତ ବିଭାଗ, ବିଭାଗୀୟ ମୁଖ୍ୟ ଦପ୍ତର ଓ ଜିଲ୍ଲାପାଳମାନଙ୍କୁ ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା ନିର୍ଦ୍ଦେଶ ଦେଇଛନ୍ତି । କେତେ ଲକ୍ଷ୍ମୀ ଦେବୀଙ୍କର ଲୁହଭରା କାହାଣୀ ଲାଲ୍ ଫିତା ହୁଏତ ଚପି ରହୁଛି ଏବଂ ଏହି ଅବସ୍ଥାର ଉନ୍ନତି ପାଇଁ ଅମଲାତାନ୍ତ୍ରିକ ମନୋଭାବର ପରିବର୍ତ୍ତନର ଆବଶ୍ୟକତା ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି ।

୫— ଯଦି ସଦସ୍ୟମାନେ କୌଣସି ସରକାରୀ ନଥିପତ୍ର ଦେଖିବାକୁ ଇଚ୍ଛା କରନ୍ତି, ତାଙ୍କୁ ନମ୍ରତାର ସହିତ ବୁଝାଇ ଦିଆଯିବ ଯେ ସେ ଯେଉଁ ତଥ୍ୟ ଚାହୁଁଛନ୍ତି ତାହା ଯୋଗାଇ ଦେବା ସିନା ସମ୍ଭବ ହେବ, ସରକାରୀ ନଥି ତାଙ୍କୁ ଦେଖିବାକୁ କିମ୍ବା ପାଠ କରିବାକୁ ସୁଯୋଗ ଦିଆଯିବ ନାହିଁ ।

୬—ସଂସଦ ସଦସ୍ୟ ଓ ବିଧାୟକଙ୍କଠାରୁ ପ୍ରାପ୍ତ ହେଉଥିବା ପତ୍ରଗୁଡ଼ିକର ତୁରନ୍ତ ପ୍ରାପ୍ତି ସ୍ୱୀକାର କରାଯିବ । ଏହି ପତ୍ର ଗୁଡ଼ିକର ଉତ୍ତର ଦେବା ପାଇଁ ଅଗ୍ରାଧିକାର ଦିଆଯିବ ।

୭— ମୁଖ୍ୟମନ୍ତ୍ରୀ କିମ୍ବା ମନ୍ତ୍ରୀମାନଙ୍କ ଦପ୍ତରରୁ ପ୍ରେରିତ ହୋଇଥିବା ସଂସଦ ସଦସ୍ୟ ଓ ବିଧାୟକମାନଙ୍କର ପତ୍ରଗୁଡ଼ିକ ଏବଂ ସେମାନଙ୍କଠାରୁ ସିଧାସଳଖ ପ୍ରାପ୍ତ ହୋଇଥିବା ପତ୍ରଗୁଡ଼ିକ ଏକ ପୃଥକ ଡାଇରି ରେଜିଷ୍ଟରରେ ଦରଜ ହେବ ।

୮— ଏ ପତ୍ରଗୁଡ଼ିକ ଉପରେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ କୌଣସିମତେ ବିଳମ୍ବକୁ ଉତ୍ସାହ ଦିଆଯିବ ନାହିଁ । କାର୍ଯ୍ୟାଳୟର ମୁଖ୍ୟ ବିଭିନ୍ନ ସମୟରେ ଡାଇରି ରେଜିଷ୍ଟରକୁ ତଦାରଖ କରିବେ ଏବଂ ପ୍ରତ୍ୟେକ ୧୫ ଦିନରେ ଥରେ ଏ ପତ୍ରଗୁଡ଼ିକର ବକେୟା ତାଲିକା ପ୍ରସ୍ତୁତ ହେବ ।

୯— ସେମାନଙ୍କର ପତ୍ରଗୁଡ଼ିକର ଉତ୍ତର ଉପଯୋଗିତ ଭାଷା ସଂପନ୍ନ ହେବା ଉଚିତ ।

ଏହି ନିର୍ଦ୍ଦେଶାବଳୀ ଜିଲ୍ଲାର ସମସ୍ତ ଅଧିକାରୀଙ୍କ ଦୃଷ୍ଟିକୁ ଆଣିବାକୁ ମୁଖ୍ୟ ଶାସନ ସଚିବ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

# ପ୍ରଗତି ପ୍ରସଙ୍ଗ

## ବାଲେଶ୍ୱର ଓ ମୟୁରଭଞ୍ଜ ମରୁଡ଼ି ଅଞ୍ଚଳରେ ସାହାଯ୍ୟ ବ୍ୟବସ୍ଥା

ଗତ ସେପ୍‌ଟେମ୍ବର ୨୨ ତାରିଖଠାରୁ ୩ ଦିନ ଧରି ରାଜସ୍ୱ, ଅର୍ଥ ଓ ଆବକାରୀ ମନ୍ତ୍ରୀ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ ବାଲେଶ୍ୱର ଓ ମୟୁରଭଞ୍ଜ ଜିଲ୍ଲାର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ପରିଦର୍ଶନ କରିଥିଲେ । ବାଲେଶ୍ୱରଠାରେ ଜିଲ୍ଲାସ୍ତରୀୟ ଅଫିସରମାନଙ୍କ ସହିତ ବାଲେଶ୍ୱର ଜିଲ୍ଲାରେ ସ୍ୱଳ୍ପ ବୃଷ୍ଟିପାତ ଜନିତ ମରୁଡ଼ି ପରିସ୍ଥିତିର ମୁକାବିଲା କରିବାପାଇଁ ନିଆଯାଉଥିବା ବିଭିନ୍ନ ପଦକ୍ଷେପ ସଂପର୍କରେ ଆଲୋଚନା କରିଥିଲେ । ଏହି ଆଲୋଚନାରେ ଖାଦ୍ୟମନ୍ତ୍ରୀ ଶ୍ରୀ ଭୂପାଳଚନ୍ଦ୍ର ମହାପାତ୍ର ବାଲେଶ୍ୱର, ଧାମନଗର, ଭଣ୍ଡାରିପୋଖରୀର ବିଧାୟକମାନେ ଭାଗ ନେଇଥିଲେ । ବାଲେଶ୍ୱର ଜିଲ୍ଲାର ଅଣ-ଜଳସେଚିତ ଅଞ୍ଚଳ ଓ ଜଳସେଚିତ ଅଞ୍ଚଳର ଖରିଫ ଫସଲ କ୍ଷତିଗ୍ରସ୍ତ ହୋଇଥିବା କଥା ସମୀକ୍ଷାରୁ ଜଣାପଡ଼ିଥିଲା । ଉକ୍ତ ଅଞ୍ଚଳରେ ନାଳମାନଙ୍କରେ ଅଡ଼ିବନ୍ଧ ନିର୍ମାଣ, ଅଚଳ ଉଠା ଜଳସେଚନ ପଏଣ୍ଟଗୁଡ଼ିକୁ କାର୍ଯ୍ୟକ୍ଷମ କରିବାରେ ବିଦ୍ୟୁତ ବିଭାଗ ଓ ଉଠା ଜଳସେଚନ ନିଗମ ମଧ୍ୟରେ ପୂର୍ଣ୍ଣ ସହଯୋଗ ରକ୍ଷା କରିବା, ପାନୀୟ ଜଳ ଯୋଗାଣ ପାଇଁ ଅଚଳ ନଳକୂପଗୁଡ଼ିକୁ ପୁନରୁଦ୍ଧାରକରି କାର୍ଯ୍ୟକ୍ଷମ କରିବା ଉପରେ ଶ୍ରୀ ପଟ୍ଟନାୟକ ଗୁରୁତ୍ୱ ଆରୋପ କରିଥିଲେ । ଗ୍ରାମମାନଙ୍କରେ ଚାଉଳ ପ୍ରଭୃତି ଅତ୍ୟାବଶ୍ୟକୀୟ ଖାଦ୍ୟଦ୍ରବ୍ୟ ଯେପରି ପର୍ଯ୍ୟାପ୍ତ ପରିମାଣରେ ମିଳିପାରିବ, ସେଥିପାଇଁ ନ୍ୟୁନ ମୂଲ୍ୟ ଦୋକାନମାନଙ୍କୁ ଯଥେଷ୍ଟ ପରିମାଣରେ ଖାଦ୍ୟଦ୍ରବ୍ୟ ଓ କିରୋସିନି ତେଲ ଯୋଗାଇ ଦେବା ପାଇଁ ସେ ପରାମର୍ଶ ଦେଇଥିଲେ । କୃଷି ଶ୍ରମିକମାନଙ୍କୁ କାର୍ଯ୍ୟ ଯୋଗାଇ ଦେବା ପାଇଁ ବିଭିନ୍ନ ଜିଲ୍ଲାସ୍ତରୀୟ ଓ ବ୍ଲକରେ ଥିବା ଅଫିସରେ ଶୀଘ୍ର ଇମର୍ଜେନ୍‌ସି କାର୍ଯ୍ୟ ଆରମ୍ଭ କରିବାକୁ ସେ ନିର୍ଦ୍ଦେଶ ଦେଇଥିଲେ ।

ବିଦ୍ୟୁତ ବିଭାଗ ପକ୍ଷରୁ ଆସନ୍ତା ଏକ ସପ୍ତାହ ମଧ୍ୟରେ ଅଚଳ ଥିବା ଟ୍ରାନ୍ସଫର୍ମରଗୁଡ଼ିକୁ ସ୍ଥାନାନ୍ତରୀତ କରି ନୂତନ ଟ୍ରାନ୍ସଫର୍ମର ଓ ଚୋରି ହୋଇଯାଇଥିବା ତାରଗୁଡ଼ିକୁ ପୁନଃସଂଯୋଗ କରି ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ଉପରେ ସେ ଗୁରୁତ୍ୱ ଦେଇଥିଲେ । ଜିଲ୍ଲାରେ ଉଠା ଜଳସେଚନ ପକ୍ଷରୁ ପୋତି ଯାଇଥିବା ମୋଟରଗୁଡ଼ିକ ତୁରନ୍ତ ମରାମତି କରିବାପାଇଁ ସେ କହିଥିଲେ ।

ଏହି ଜିଲ୍ଲାରେ କ୍ଷତିଗ୍ରସ୍ତ ହୋଇଥିବା କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କୁ ମିନିକିଟ୍ ଜରିଆରେ ରବି ଫସଲ ଉତ୍ପାଦନ ପାଇଁ ବିହନ ଓ ସାର ଯୋଗାଇ ଦିଆଯିବା ଉପରେ ଗୁରୁତ୍ୱ ଆରୋପ କରି ରାଜସ୍ୱ ମନ୍ତ୍ରୀ କହିଲେ ଯେ ଆବଶ୍ୟକ ହେଉଥିବା ୨୦,୨୩୦ ମିନିକିଟ୍ ଯୋଗାଇ ଦେବା ପାଇଁ କୃଷି ବିଭାଗ ସମୁଚିତ ପଦକ୍ଷେପ ନେବା ଉଚିତ । ସାଂପ୍ରତିକ ମରୁଡ଼ି ପରିସ୍ଥିତିର ବ୍ୟାପକତା ଦୃଷ୍ଟିରୁ ସଂପୃକ୍ତ ବିଭାଗୀୟ କର୍ମଚାରୀମାନେ ଯେପରି ଗ୍ରାମାଞ୍ଚଳରେ ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ ତାଙ୍କ କର୍ମକ୍ଷେତ୍ରରେ ଉପସ୍ଥିତ ରହନ୍ତି, ସେଥିପ୍ରତି ଦୃଷ୍ଟି ଦେବାକୁ ଜିଲ୍ଲାସ୍ତରୀୟ କର୍ମକର୍ତ୍ତାମାନଙ୍କୁ ସେ ପରାମର୍ଶ ଦେଇଥିଲେ ।

ମୟୁରଭଞ୍ଜ ଜିଲ୍ଲାର ରାସଗୋବିନ୍ଦପୁର, ମୋରଡ଼ା, ଶୁଳିଆପଦା ଓ କୁଳିଅଣା ବ୍ଲକ୍‌ର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ପରିଦର୍ଶନ କରି ଅପରାହ୍ନରେ ବାରିପଦାଠାରେ ଜିଲ୍ଲାସ୍ତରୀୟ ଅଫିସରମାନଙ୍କ ସହିତ ମରୁଡ଼ି ପରିସ୍ଥିତି ସଂପର୍କରେ ସମୀକ୍ଷା କରିଥିଲେ । ଉକ୍ତ ଆଲୋଚନା ସଭାରେ ଉପମନ୍ତ୍ରୀ ଶ୍ରୀମତୀ ସରସ୍ୱତୀ ହେମ୍ବ୍ରମ, ସଂପୃକ୍ତ ବିଧାନ ସଭା ସଦସ୍ୟ, କେନ୍ଦ୍ରାଞ୍ଚଳ ରାଜସ୍ୱ କମିଶନର ଓ ରାଜ୍ୟ ଉପ ରିଲିଫ୍ କମିଶନର ଉପସ୍ଥିତ ଥିଲେ । ଏହି ଜିଲ୍ଲାର ୬ ଗୋଟି ବ୍ଲକ୍‌ରେ ଉପଜମିରେ ଫସଲ ହାନୀ ହୋଇଥିବାର ଜିଲ୍ଲାପାଳ ପ୍ରକାଶ କରିଥିଲେ । ଏ ସଂପର୍କରେ ବ୍ଲକ୍ ଓ କୃଷି ବିଭାଗର କର୍ମଚାରୀମାନେ ସୂକ୍ଷ୍ମ ତଦନ୍ତ କରି ଯଦି କୌଣସି ବ୍ଲକ୍‌ର ଅଞ୍ଚଳ କ୍ଷତିଗ୍ରସ୍ତ ହୋଇଥାଏ, ତାହା ତୁରନ୍ତ ଜଣାଇବାପାଇଁ ସେ ପରାମର୍ଶ ଦେଇଥିଲେ । ଏହି ଜିଲ୍ଲାରେ ଥିବା ଉଠା ଜଳସେଚନ ପ୍ରକଳ୍ପ ମଧ୍ୟରୁ ୧୨୭ ଗୋଟି ପଏଣ୍ଟକୁ ତୁରନ୍ତ କାର୍ଯ୍ୟକ୍ଷମ କରି ଫସଲକୁ ପାଣି ଯୋଗାଇଦେବା ପାଇଁ ସେ ନିର୍ଦ୍ଦେଶ ଦେଇଥିଲେ ।

ଏସଂପର୍କରେ ଆବଶ୍ୟକ ହେଉଥିବା ଅର୍ଥ ଓ ବିଦ୍ୟୁତ ସରଞ୍ଜାମ ଯୋଗାଇଦେବା ଉପରେ ସଂପୃକ୍ତ ବିଭାଗ ତତ୍ପରତା ପ୍ରକାଶ କରିବାକୁ ସେ ସେମାନଙ୍କୁ କହିଥିଲେ । ମଧ୍ୟମ ଜଳସେଚନ ଯୋଜନାରେ କେନାଲଗୁଡିକ ମରାମତି ଅଭାବରୁ ଓ ଉପର ମୁଣ୍ଡରେ କେନାଲ କାଟି ଲୋକେ ପାଣି ନେଉଥିବାରୁ ଆୟାକଟ୍ ମଧ୍ୟରେ ଥିବା ସମସ୍ତ ଅଞ୍ଚଳକୁ ଯେପରି ପାଣି ଯୋଗାଇ ଦିଆଯାଏ, ସେଥିପ୍ରତି ଦୃଷ୍ଟି ଦେବାକୁ ସେ ସଂପୃକ୍ତ କର୍ମକର୍ତ୍ତାଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ଏହି ଜିଲ୍ଲାରେ ଆବଶ୍ୟକ ହେଉଥିବା ଅରୁଆ ଚାଉଳର ବିଶେଷ ଚାହିଦା ନଥିବାରୁ ଉଷୁନା ଚାଉଳ ଯୋଗାଣ ଓ ହାଟମାନଙ୍କରେ ନିର୍ଦ୍ଧାରିତ ଦରରେ ଚାଉଳ, ତେଲ, କିରୋସିନି ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକୀୟ ଖାଦ୍ୟ ପଦାର୍ଥ ବିକ୍ରୀ ଉପରେ ମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଗୁରୁତ୍ୱ ଆରୋପ କରିଥିଲେ । ୩୧ ତାରିଖରେ ରାଇରଙ୍ଗପୁର, ଭଦକ୍ରା ଓ ବାଲେଶ୍ୱର ଜିଲ୍ଲାର ନୀଳଗିରି ସବ୍‌ଡିଭିଜନରେ କ୍ଷତିଗ୍ରସ୍ତ ଅଞ୍ଚଳ ପରିଦର୍ଶନ କରିଥିଲେ ।

## ମରୁଡ଼ି ଅଞ୍ଚଳରେ ପଡ଼ିକାର୍ଡ

ରାଜ୍ୟର ମରୁଡିଗ୍ରସ୍ତ ଅଞ୍ଚଳର ଗ୍ରାମମାନଙ୍କରେ ଯଥାଶୀଘ୍ର ପଡିକାର୍ଡ ପ୍ରଚଳନ କରିବାକୁ ରାଜ୍ୟ ସରକାର ସ୍ଥିର କରିଛନ୍ତି । ଏହି ପଡିକାର୍ଡ ଜରିଆରେ ପ୍ରତ୍ୟେକ ପରିବାର ମାସକୁ ୧୩ କେ: ଜି: ଚାଉଳ ସହିତ ବାଧ୍ୟତାମୂଳକ ଭାବେ ୨ କେ: ଜି: ଗହମ କିଣିପାରିବେ । ଖାଉଟି ଚାହିଁଲେ ୨ କେ: ଜି: ରୁ ଅଧିକ ପରିମାଣର ଗହମ କିଣିପାରିବେ ।

## କୁଟୀର ଶିଳ୍ପ ପ୍ରତିଷ୍ଠା

ଗତ ଆର୍ଥିକ ବର୍ଷ ମଧ୍ୟରେ କେନ୍ଦୁଝର ଜିଲ୍ଲାରେ ୪,୫୭୨ଟି କୁଟୀର ଶିଳ୍ପ ପ୍ରତିଷ୍ଠା କରାଯାଇ ସେଥିମାଧ୍ୟମରେ ୯,୧୪୪ ଜଣ ବ୍ୟକ୍ତିଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଇପାରିଛି । ଏଥିପାଇଁ ଏକ କୋଟି ୫ ଲକ୍ଷ ୩୨ ହଜାର ଟଙ୍କା ବିନିଯୋଗ କରାଯାଇଛି । ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଯେ ଉପରୋକ୍ତ ସମୟ ମଧ୍ୟରେ ଜିଲ୍ଲାରେ ୩ ହଜାର କୁଟୀର ଶିଳ୍ପ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ଏବଂ ବର୍ଷ ଶେଷକୁ ଧାର୍ଯ୍ୟ ଲକ୍ଷ୍ୟର ଦେଢ଼ଗୁଣରୁ ଅଧିକ ସାଫଲ୍ୟ ଅର୍ଜନ କରାଯାଇପାରିଛି । ସେହିପରି ଗତ ବର୍ଷ ଜିଲ୍ଲାରେ ୧୨୦ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିବା ବେଳେ ବର୍ଷ ଶେଷ ବେଳକୁ ୬୪ ଲକ୍ଷ ୩୬ ହଜାର ଟଙ୍କା ବିନିଯୋଗରେ ୧୨୩ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯାଇ ପାରିଥିଲା ଏବଂ ଏଥିମାଧ୍ୟମରେ ୬୦୨ ଜଣଙ୍କୁ କାମ ମିଳିଥିଲା ।

## ଆଇ. ଆର. ଡ଼ି.ରେ ଦୁଇଲକ୍ଷ ବ୍ୟକ୍ତି ଉପକୃତ

ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା ୧୯୮୬–୮୭ ରେ ଉଭୟ ପୁରାତନ ଓ ନୂତନ ହିତାଧିକାରୀଙ୍କୁ ମିଶାଇ ମୋଟରେ ୨ଲକ୍ଷ ୭ ହଜାର ୮୬୨ ଜଣ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୧୫,୦୨୧ ଜଣ ମହିଳା ଅନ୍ତର୍ଭୁକ୍ତ । ହିତାଧିକାରୀମାନଙ୍କ ମଧ୍ୟରେ ୪୭,୬୩୧ ଜଣ ତଫସିଲଭୁକ୍ତ ଜାତି ଓ ୫୩,୩୨୦ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ଏହି ସମୟ ମଧ୍ୟରେ ୧୧,୨୬୨ ଜଣ ମହିଳାଙ୍କ ସମେତ ୧ଲକ୍ଷ ୩୩ହଜାର ୨୮୪ ଜଣ ବ୍ୟକ୍ତିଙ୍କୁ ନୂତନ ଭାବେ ଏହି ଯୋଜନାର ପରିସରଭୁକ୍ତ କରାଯାଇଥିବା ,ବେଳେ ଏହି ଯୋଜନାରେ ପୂର୍ବରୁ ସାହାଯ୍ୟପ୍ରାପ୍ତ ମାତ୍ର ଦାରିଦ୍ର୍ୟ ସୀମାରେଖା ଉପରକୁ ଆସିପାରି ନ ଥିବା ୩୬,୭୫୯ ଜଣ ମହିଳାଙ୍କ ସମେତ ୭୪,୫୮୮ ଜଣଙ୍କୁ ପୁନର୍ବାର ସାହାଯ୍ୟ ଦିଆଯାଇଛି ।

ଆତ୍ମନିଯୁକ୍ତି କାର୍ଯ୍ୟକ୍ରମ ଦ୍ୱାରା ଏହି ସମୟ ମଧ୍ୟରେ ୨,୨୫୩ ଜଣ ମହିଳାଙ୍କ ସମେତ ୮,୨୯୪ ଜଣଙ୍କୁ ବିଭିନ୍ନ ଧନ୍ଦା ମୂଳକ ତାଲିମ ଦିଆଯାଇ ସେମାନଙ୍କ ମଧ୍ୟରୁ ୧,୪୦୬ ଜଣ ମହିଳାଙ୍କ ସମେତ ୫,୮୦୩ ଜଣଙ୍କୁ ଥଇଥାନ କରାଯାଇଛି । ଏମାନଙ୍କ ମଧ୍ୟରେ ୧,୫୨୨ ଜଣ ତଫସିଲଭୁକ୍ତ ଜାତି ଓ ୧,୨୯୪ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ ।

କୃଷିଭିତ୍ତିକ କାର୍ଯ୍ୟକ୍ରମଗୁଡ଼ିକ ମଧ୍ୟରେ ୧,୫୦୯ ଜଣ ଭୂ-ଉନ୍ନୟନ ଦ୍ୱାରା ଓ ଫଳ ବଗିଚାଦ୍ୱାରା ୧,୬୬୨ ଜଣ ଉପକୃତ ହୋଇଥିବା ବେଳେ ୧୫,୧୨୭ ଜଣ ହିତାଧିକାରୀଙ୍କୁ ହଳ–ବଳଦ ଓ ବଳଦ ଗାଡ଼ି ଯୋଗାଇ ଦିଆଯାଇଛି ।

କ୍ଷୁଦ୍ର ଜଳସେଚନ ସୁବିଧା ସୃଷ୍ଟିକରି ଏହି ସମୟ ମଧ୍ୟରେ ଯେଉଁମାନେ ଉପକୃତ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ୫,୧୮୪ ଜଣ ସେଚକୂପ, ୧୬ଜଣ ନଳ କୂପ, ୧,୫୫୬ ଜଣ ପମ୍ପସେଟ୍ ଓ ୪୦୩ ଜଣ ବ୍ୟକ୍ତିଗତ ପୋଖରୀ କରିପାରିଛନ୍ତି ।

ଏହି ସମୟ ମଧ୍ୟରେ ୪,୭୧୫ ଜଣ ଦୁଧିଆଳୀ ପଶୁପାଳନ-ଦ୍ୱାରା ୧୯,୯୪୩ ଜଣ ଛେଳି ଓ ମେଣ୍ଢା ପାଳନ ଦ୍ୱାରା , ୧,୭୦୫ ଜଣ ଘୁଷୁରି ପାଳନ ଦ୍ୱାରା ଓ ୪୮୪ ଜଣ କୁକୁଡା ଓ ବତକ ପାଳନ ଦ୍ୱାରା ଉପକୃତ ହୋଇଛନ୍ତି । ଏହିପରି ଭାବରେ ବିଭିନ୍ନ ପଶୁପାଳନ ଯୋଜନା ଦ୍ୱାରା ୬୩୨ ଜଣ ମହିଳାଙ୍କ ସମେତ ମୋଟ ୨୬,୮୪୭ ଜଣ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୮,୧୩୯ ଜଣ ତଫସିଲଭୁକ୍ତ ଜାତି ଓ ୮,୯୫୬ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ମାଛଚାଷଦ୍ୱାରା ୭୭ ଜଣ ମହିଳାଙ୍କ ସମେତ ୩,୮୩୯ ଜଣ ଏହି ସମୟ ମଧ୍ୟରେ ଉପକୃତ ହୋଇଛନ୍ତି । ଏ ମଧ୍ୟରେ ୨,୧୭୪ ଜଣ ତଫସିଲଭୁକ୍ତ ଜାତି ଓ ୫୧୨ ଜଣ ତଫସିଲ ଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ଏହା ବ୍ୟତିତ ୫୨୧ ଜଣ ଟସର ଓ ମହୁମାଛି ଚାଷଦ୍ୱାରା ଉପକୃତ ହୋଇଛନ୍ତି ।

ଗ୍ରାମ୍ୟ କାରିଗର ଓ କାରିଗରୀ ଶିଳ୍ପର ବିକାଶ କାର୍ଯ୍ୟକ୍ରମ ଦ୍ୱାରା ୧୦,୩୯୪ ଜଣ ମହିଳାଙ୍କ ସମେତ ମୋଟ୍ ୧ଲକ୍ଷ ୩୪ ହଜାର ୩୦୮ ଜଣ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୨୯,୯୮୮ ଜଣ ତଫସିଲଭୁକ୍ତ ଜାତି ଓ ୨୮,୨୬୩ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ଏମାନଙ୍କ ମଧ୍ୟରେ ଦୋକାନ ଘର ମରାମତି ଓ ରକ୍ଷଣା, ବେକ୍ଷଣ ପାଇଁ ୩,୩୯୪ ଜଣ,୪,୧୭୩ ଜଣ ଦରଜୀ ଦୋକାନୀ ୬୮ ଜଣ ଯୋତା ମରାମତି ବ୍ୟବସାୟୀ ଓ ୧,୫୬୪ ଜଣ ରିକ୍‌ସାଚାଳକ ଅନ୍ତର୍ଭୁକ୍ତ । ଏହା ବ୍ୟତିତ ୧୪,୬୫୬ ଜଣଙ୍କୁ ବଳଦଗାଡ଼ି ଓ ବଳଦ କିଣିବା ପାଇଁ ସାହାଯ୍ୟ କରାଯାଇଥିବା

ବେଢେ ୧ଲକ୍ଷ ୫ହଜାର ୧୫୭ ଜଣ କ୍ଷୁଦ୍ର ବ୍ୟବସାୟୀ ଏବଂ ୫,୨୬୧ ଜଣ ଅନ୍ୟାନ୍ୟ ବ୍ୟବସାୟୀ ମଧ୍ୟ ଉପକୃତ ହୋଇଛନ୍ତି ।

ଗତ ଆର୍ଥିକ ବର୍ଷରେ ଆଇ. ଆର. ଡି: କାର୍ଯ୍ୟକ୍ରମ ଦ୍ୱାରା କଟକ ଜିଲ୍ଲାରେ ସର୍ବାଧିକ ୩୪,୩୧୬ ଜଣ ଏବଂ ତା' ପଛକୁ କୋରାପୁଟ ଓ ପୁରୀ ଜିଲ୍ଲାରେ ଯଥାକ୍ରମେ ୨୩,୨୧୫ ଜଣ ଓ ୨୧,୬୩୧ ଜଣ ଉପକୃତ ହୋଇଛନ୍ତି ।

## ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକ

ସଚିବାଳୟଠାରେ ଗତ ସେପ୍ଟେମ୍ବର ୭ତାରିଖ ଦିନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ରାଜ୍ୟସ୍ତରୀୟ ପ୍ରାକୃତିକ ବିପର୍ଯ୍ୟୟ କମିଟିର ବୈଠକ ଅନୁଷ୍ଠିତ ହୋଇ ସାଂପ୍ରତିକ ମରୁଡ଼ିଜନିତ ଗୁରୁତର ପରିସ୍ଥିତିର ସବିଶେଷ ପର୍ଯ୍ୟାଲୋଚନା କରାଯିବା ସଂଗେ ସଂଗେ ଏହାର ମୁକାବିଲା ପାଇଁ ନିଆଯାଇଥିବା ବିଭିନ୍ନ ସରକାରୀ ପଦକ୍ଷେପ ସଂପର୍କରେ ସମୀକ୍ଷା କରାଯାଇଥିଲା । ଏହି ବୈଠକରେ କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ଓ କେନ୍ଦ୍ର କଲ୍ୟାଣ ବିଭାଗ ଉପମନ୍ତ୍ରୀ ଶ୍ରୀ ଗିରିଧାରୀ ଗମାଙ୍ଗଙ୍କ ସମେତ ରାଜ୍ୟର ଅଧିକାଂଶ ମନ୍ତ୍ରୀ, ଏମ୍. ପି. ଓ ବିଧାୟକ ଯୋଗ ଦେଇଥିଲେ ।

ରାଜ୍ୟର ଗୁରୁତର ମରୁଡ଼ି ପରିସ୍ଥିତି ସଂପର୍କରେ ଆଲୋଚନା କରି ମୁଖ୍ୟମନ୍ତ୍ରୀ କହିଲେ ଯେ ବିପନ୍ନ ଲୋକମାନଙ୍କର ଦୁର୍ଦ୍ଦଶା ମୋଚନପାଇଁ ସରକାର ସବୁମତେ ଉଦ୍ୟମ କରୁଛନ୍ତି ଏବଂ ମରୁଡ଼ିଜନିତ ବିଭିନ୍ନ ସମସ୍ୟା ପ୍ରତି ସରକାର ସଚେତନ ଅଛନ୍ତି । ରାଜ୍ୟସ୍ତରୀୟ ପ୍ରାକୃତିକ ବିପର୍ଯ୍ୟୟ କମିଟିକୁ ରାଜ୍ୟ ମରୁଡ଼ି କମିଟି ଓ ଜିଲ୍ଲା ପ୍ରାକୃତିକ ବିପର୍ଯ୍ୟୟ କମିଟିଗୁଡ଼ିକୁ ମଧ୍ୟ ଜିଲ୍ଲା ମରୁଡ଼ି କମିଟିରୂପେ ପରିଣତ କରାଯିବା ପାଇଁ ସ୍ଥିର ହୋଇଛି । ମରୁଡ଼ି କାର୍ଯ୍ୟକ୍ରମ ପରିଚାଳନା କରିବା ପାଇଁ ଏମ୍. ପି.ଙ୍କ ଅଧ୍ୟକ୍ଷତାରେ ବ୍ଲକ୍ ସ୍ତରରେ ଗୋଟିଏ ଲେଖାଏଁ ୭ ଜଣିଆ କମିଟି ଗଢ଼ାଯାଇ ସଂପୃକ୍ତ ବିଧାୟକ ଏହାର ଉପାଧ୍ୟକ୍ଷ ରହିବେ । ଏହି କମିଟିରେ ୨ଜଣ ସରପଂଚ ଓ ପଂଚାୟତ କମିଟି ଚେୟାରମ୍ୟାନ୍ ସଦସ୍ୟ ରହିବେ ଓ ସଂପୃକ୍ତ ବି. ଡି. ଓ. ଆବାହକରୂପେ ଦାୟିତ୍ୱ ତୁଲାଇବେ । ଶତକଡ଼ା ୭୫ ଭାଗରୁ ଅଧିକ ଫସଲ କ୍ଷତିଗ୍ରସ୍ତ ହୋଇଥିବା ଅଂଚଳଗୁଡ଼ିକରେ ଅନ୍ୟୁନ ୩୦୦ ଜଣଙ୍କୁ ଓ ଶତକଡ଼ା ୫୦ଭାଗ କ୍ଷତିଗ୍ରସ୍ତ ଅଂଚଳରେ ୧୦୦ ଜଣଙ୍କୁ କାମଧଂଦା ଯୋଗାଇ ଦିଆଯିବ ବୋଲି ମୁଖ୍ୟମନ୍ତ୍ରୀ ପ୍ରକାଶ କରିଥିଲେ । ସେ ପୁଣି କହିଲେ ଯେ ମରୁଡ଼ିପାଇଁ କେନ୍ଦ୍ରୀୟ ସାହାଯ୍ୟକୁ ଅପେକ୍ଷା ନକରି ରାଜ୍ୟ ସରକାର ବିଭିନ୍ନ କାର୍ଯ୍ୟକ୍ରମ ବାବଦରେ ଅର୍ଥ ମଂଜୁର କରିଛନ୍ତି ।

ଏହାପରେ ରାଜସ୍ୱମନ୍ତ୍ରୀ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ ମରୁଡ଼ିର କ୍ଷୟକ୍ଷତି ଏବଂ ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ମଂଜୁର କରାଯାଇଥିବା ଅର୍ଥର ପରିମାଣ ସଂପର୍କରେ ସୂଚନା ଦେଇଥିଲେ । ଶ୍ରୀ ପଟ୍ଟନାୟକ କହିଲେ ଯେ ରାଜ୍ୟର ୨୫୯ଟି ବ୍ଲକ୍ ଅନ୍ତର୍ଗତ ୨୯,୫୮୪ଟି ଗ୍ରାମ କ୍ଷତିଗ୍ରସ୍ତ ହୋଇଛି । ମରୁଡ଼ି ଅଂଚଳରେ ରିଲିଫ୍ କାର୍ଯ୍ୟକ୍ରମପାଇଁ ସରକାର ସମୁଦାୟ ୬କୋଟି ୯୪ଲକ୍ଷ ୭୦ ହଜାର ୫୦୦ଟଂକା ମଂଜୁର କରିଛନ୍ତି ବୋଲି ସେ ସୂଚନା ଦେଇଥିଲେ । ଜନୁଧ୍ୟରୁ ଉଠାଜଳସେଚନ ପଏଣ୍ଟ ଜରିଆରେ ଜଳ ଯୋଗାଣ ଏବଂ ବିପନ୍ନ ଲୋକଙ୍କୁ ଶ୍ରମଭିତ୍ତିକ କାର୍ଯ୍ୟ ଯୋଗାଇବା ଉପରେ ସରକାର ଗୁରୁତ୍ୱ ଦେଉଥିବାରୁ ଏ ବାବଦରେ ଯଥାକ୍ରମେ ୨ କୋଟି ୫୦ ଲକ୍ଷ ଟଂକା ଏବଂ ୨ କୋଟି ୭୫ ଲକ୍ଷ ଟଂକା ମଂଜୁର କରାଯାଇଛି । ଉଠା ଜଳସେଚନପାଇଁ ଉଦ୍ଦିଷ୍ଟ ଅର୍ଥର ବିନିଯୋଗରେ ୨ ହଜାର ପଏଣ୍ଟରେ ସେଚନାଳୀ ନିର୍ମାଣ, ୯୦୦ ପଏଣ୍ଟର ସ୍ଥାନାନ୍ତରୀକରଣ ଏବଂ ୧୦୦ଟି ନୂତନ ପଏଣ୍ଟ ନିର୍ମାଣ କରାଯିବ । କୃଷି ଶ୍ରମିକମାନଙ୍କୁ ଶ୍ରମଭିତ୍ତିକ କାର୍ଯ୍ୟ ଯୋଗାଇ ଦେବା ବାବଦରେ ମଂଜୁର ହୋଇଥିବା ଅର୍ଥ ମଧ୍ୟରେ ବଲାଙ୍ଗୀର ଜିଲ୍ଲାକୁ ୪୨ ଲକ୍ଷ ଟଂକା, କଳାହାଣ୍ଡିକୁ ୯୫ ଲକ୍ଷ ଟଂକା, କୋରାପୁଟକୁ ୪୯ ଲକ୍ଷ ଟଂକା, ପୁରୀକୁ ୧୪ ଲକ୍ଷ ଟଂକା, ସମ୍ବଲପୁରକୁ ୧୫ ଲକ୍ଷ ଟଂକା, ଗଂଜାମକୁ ୨୫ ଲକ୍ଷ ଟଂକା ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ଅବଶିଷ୍ଟ ଜିଲ୍ଲାମାନଙ୍କୁ ଏଥିପାଇଁ ୫ଲକ୍ଷ ଟଂକା ଲେଖାଏଁ ମଂଜୁର କରାଯାଇଛି । ଜଳସେଚନ ବ୍ୟବସ୍ଥା ପାଇଁ ଅଡ଼ିବଂଧ ନିର୍ମାଣ କରିବା ବାବଦରେ ସବୁ ଜିଲ୍ଲାକୁ ସମୁଦାୟ ୧୮ ଲକ୍ଷ ଟଂକା ପାନୀୟଜଳ ଯୋଗାଣପାଇଁ ଡ୍ରିଲ-କୂଅ ଖନନପାଇଁ ବଲାଙ୍ଗୀର, କଳାହାଣ୍ଡି ଓ କୋରାପୁଟ ଜିଲ୍ଲାକୁ ୨ଲକ୍ଷ ଟଂକା ଲେଖାଏଁ ସମୁଦାୟ ୬ଲକ୍ଷ ଟଂକା ଏବଂ ନଳକୂପ ଖନନପାଇଁ ୬୦ଲକ୍ଷ ୪୦ ହଜାର ଟଂକା ମଂଜୁର କରାଯାଇଛି । ମରୁଡ଼ିଗ୍ରସ୍ତ ଅଂଚଳର ଜଳକଷ୍ଟ ଗ୍ରାମଗୁଡ଼ିକରେ ସମୁଦାୟ ୧୫ ହଜାର ନଳକୂପ ବସାଯିବ ବୋଲି ସ୍ଥିର ହୋଇଛି । ଏଥିପାଇଁ ଅଧିକ ସଂଖ୍ୟକ ଟିପ୍ ସଂଗୃହୀତ ହେଉଛି ବୋଲି ରାଜସ୍ୱମନ୍ତ୍ରୀ ସୂଚନା ଦେଇଥିଲେ ।

ଶ୍ରୀ ପଟ୍ଟନାୟକ କହିଲେ ଯେ ମାଗଣାଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ କୋରାପୁଟ ଓ କଳାହାଣ୍ଡି ଜିଲ୍ଲାର ବୃଦ୍ଧ, ଅକ୍ଷମ, ଶିଶୁ ଓ ଗର୍ଭବତୀ ଓ ପ୍ରସୂତି ମହିଳାମାନଙ୍କୁ ଖାଦ୍ୟ ଯୋଗାଇ ଦେବାଲାଗି ଯଥାକ୍ରମେ ୩ଲକ୍ଷ ୬୩ ହଜାର ଟଂକା ଏବଂ ୮୧ଲକ୍ଷ ୬୭ ହଜାର ୫୦୦ ଟଂକା ମଂଜୁର କରାଯାଇଛି । ଏହି ଅର୍ଥ ବିନିଯୋଗରେ କୋରାପୁଟ ଜିଲ୍ଲାରେ ଅଧିକ ୧୦ହଜାର ଓ କଳାହାଣ୍ଡି ଜିଲ୍ଲାରେ ଅଧିକ ୯୦ ହଜାର ବ୍ୟକ୍ତିଙ୍କୁ ଜଳଖିଆ ମାଗଣା ଭୋଜନ ଦିଆଯାଉଛି । ଏହା ବ୍ୟତୀତ ରାଜ୍ୟର ବିଭିନ୍ନ ମରୁଡ଼ିଗ୍ରସ୍ତ ଅଂଚଳରେ ୨୨ ଲକ୍ଷ ୧୬ ହଜାର ୧୯୦ ଜଣଙ୍କୁ ସାଧାରଣ ଭୋଜନ ଓ ମାଗଣା ଖାଦ୍ୟ ଦିଆଯାଉଛି ।

ସେଚ ଓ ଶକ୍ତିମନ୍ତ୍ରୀ ଶ୍ରୀ ମତଲୁବ୍ ଅଲ୍ଲୀ ଉଠା ଜଳସେଚନ ପଏଣ୍ଟଗୁଡ଼ିକୁ ସକ୍ରିୟ କରିବା ଦିଗରେ ସରକାର ବିହିତ ପଦକ୍ଷେପ ନେଉଛନ୍ତି ବୋଲି ପ୍ରକାଶ କରିଥିଲେ ।

ଅତ୍ୟାବଶ୍ୟକ ଖାଉଟି ଦ୍ରବ୍ୟଗୁଡ଼ିକର ଯୋଗାଣ ଏବଂ ମୂଲ୍ୟବୃଦ୍ଧି ରୋକିବା ଉପରେ ଗୁରୁତ୍ୱ ଆରୋପକରି ବିଭାଗୀୟ ମନ୍ତ୍ରୀ ଶ୍ରୀ ହରିହର କରଣ କହିଲେ ଯେ ସରକାରୀ ଖୁଚୁରା ଦୋକାନ ସାହାଯ୍ୟରେ ନିର୍ଦ୍ଧାରିତ ଦରରେ ଚାଉଳ ଯୋଗାଇ ଦେବାର ବ୍ୟବସ୍ଥା ହୋଇଛି । ବର୍ତ୍ତମାନ ସରକାରଙ୍କ ପାଖରେ ୧ ଲକ୍ଷ ୨ ହଜାର ମେଟ୍ରିକ୍ ଟନ ଚାଉଳ ମହଜୁଦ ରହିଛି ଏବଂ ଖୋଲା ବଜାରରୁ ଅଧିକ ୧ ଲକ୍ଷ ଟନ ଚାଉଳ ଖରିଦ କରାଯିବାପାଇଁ ବ୍ୟବସ୍ଥା ହୋଇଛି । ଏହା ବ୍ୟତୀତ ମରୁଡ଼ିଗ୍ରସ୍ତ ଅଂଚଳ ଓ ଆଦିବାସୀ ଅଂଚଳର ହାଟଗୁଡ଼ିକରେ ଚାଉଳ, କିରୋସିନି ଓ ଖାଇବା ତେଲ ସୁଲଭ ମୂଲ୍ୟରେ ଯୋଗାଇ ଦେବାର ବ୍ୟବସ୍ଥା ହୋଇଛି ।

କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ କେନ୍ଦ୍ରୀୟ ସାହାଯ୍ୟ ମିଳିବାରେ କୌଣସି ଅସୁବିଧା ହେବ ନାହିଁ

ବୋଲି ସୂଚନାଦେଇ କହିଲେ ଯେ ପ୍ରଧାନମନ୍ତ୍ରୀ ଜାତୀୟ ସ୍ତରରେ ଉପୁଜିଥିବା ଏହି ବିପର୍ଯ୍ୟୟର ମୁକାବିଲାପାଇଁ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି ଏବଂ ମରୁଡ଼ି ସାହାଯ୍ୟ କାର୍ଯ୍ୟକ୍ରମ ପ୍ରତି ଗୁରୁତ୍ୱ ଆରୋପ କରିଛନ୍ତି । ବିପନ୍ନ ଅଂଚଳରେ ଔଷଧ ଯୋଗାଣ, ମାଗଣା ଭୋଜନ କେନ୍ଦ୍ର ସ୍ଥାପନ ଏବଂ ସର୍ବନିମ୍ନ ମଜୁରୀ ପ୍ରଦାନ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ।

ଏହି ବୈଠକରେ କୃଷିମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା, ନଗର ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବଟକୃଷ୍ଣ ଜେନା, ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ହରିଚନ୍ଦ୍ର ଖାଁ ଯୋଗ ଦେଇଥିଲେ । ଏମାନଙ୍କ ବ୍ୟତୀତ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ, ଏମ୍. ପି. ସର୍ବଶ୍ରୀ କେ. ପି. ସିଂହଦେଓ, ନିତ୍ୟାନନ୍ଦ ମିଶ୍ର, ଚିନ୍ତାମଣି ଜେନା, ଶ୍ରୀବଲ୍ଲଭ ପାଣିଗ୍ରାହୀ, ଲକ୍ଷ୍ମଣ ମଲ୍ଲିକ, ଆର. ଜଗନ୍ନାଥ ରାଓ, ସୋମନାଥ ରଥ, ଖଗପତୀ ପ୍ରଧାନୀ, ଗୟାଚ୍ଛନ୍ଦ ଭୂୟାଁ, ରାଧାକାନ୍ତ ଦିଗଲ, ସୁନିଲ ପଟ୍ଟନାୟକ, ଖଗେଶ୍ୱର କୁସୁମ, ଅନନ୍ତଚରଣ ସେଠୀ, ମୋରିସ୍ କୁଜୁର, ହରିହର ସୋରେନ୍, ବାସୁଦେବ ମହାପାତ୍ର ଓ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ, ବିଧାୟକ ସର୍ବଶ୍ରୀ ଅକ୍ଷୟ ପଟ୍ଟନାୟକ, ଦୋଳଗୋବିନ୍ଦ ନାୟକ, ଅଶୋକ କୁମାର ଚୌଧୁରୀ, କୈଳାସ ଚନ୍ଦ୍ର ମଲ୍ଲିକ, ଗଦାଧର ମାଝୀ, ଜଗନ୍ନାଥ ରାଉତ, ଡାଃ ସୁଶୀଲକୁମାର ପୃଷ୍ଟି, ଶରତ୍‌ଚନ୍ଦ୍ରକୁମାର ସେଠୀ ଓ ନଳିନୀକାନ୍ତ ମହାନ୍ତିଙ୍କ ସମେତ ପୂର୍ବତନ ରାଜସ୍ୱମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା ଓ ପୂର୍ବତନ ବିଧାୟକ ଶ୍ରୀ କୈଳାସ ମହାପାତ୍ର ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଏହା ବ୍ୟତୀତ ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ, ସ୍ୱତନ୍ତ୍ର ରିଲିଫ୍ କମିଶନର ଶ୍ରୀ କେ. ଶ୍ରୀନିବାସନ୍, ରାଜସ୍ୱ ପର୍ଷଦ ସଭ୍ୟ ଶ୍ରୀ ପି. ଏସ୍. ହବିବ୍ ମହମ୍ମଦ, ରାଜସ୍ୱ ଡିଭିଜନାଲ କମିଶନରମାନଙ୍କ ସମେତ କେତେକ ଜିଲ୍ଲାପାଳ ଏହି ବୈଠକରେ ଯୋଗଦେଇଥିଲେ ।

## ଅକ୍ଷମଙ୍କ ପାଇଁ କାମଧନ୍ଦା

ସାମାଜିକ କର୍ତ୍ତବ୍ୟବୋଧ ଦୃଷ୍ଟିରୁ ବିଭିନ୍ନ ସରକାରୀ କାର୍ଯ୍ୟାଳୟ, ନିଗମ ତଥା ରାଜ୍ୟର ଶିଳ୍ପାନୁଷ୍ଠାନମାନଙ୍କରେ ଶାରୀରିକ ଅକ୍ଷମ ବ୍ୟକ୍ତିମାନଙ୍କୁ ଅଗ୍ରାଧିକାର ଭିତ୍ତିରେ ନିଯୁକ୍ତି ଦେବାକୁ ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା ନିର୍ଦ୍ଦେଶ ଦେଇଛନ୍ତି । ଗତକାଲି ଶାରୀରିକ ଅକ୍ଷମ ବ୍ୟକ୍ତିଙ୍କର ଥଇଥାନ ସଂପର୍କରେ ରାଜ୍ୟର ସରକାରୀ କର୍ମଚାରୀ ଏବଂ ନିଗମ ତଥା ଶିଳ୍ପାନୁଷ୍ଠାନଗୁଡ଼ିକର ପ୍ରତିନିଧିମାନଙ୍କସହ ଆଲୋଚନା କରିବେଳେ ଶ୍ରୀ ପଣ୍ଡା ବିଭିନ୍ନ ସରକାରୀ କାର୍ଯ୍ୟାଳୟ ଓ ସରକାରୀ ନିୟନ୍ତ୍ରଣାଧୀନ ସଂସ୍ଥାରେ ଏହି ନିଯୁକ୍ତି ସଂପର୍କରେ ଥିବା ନିର୍ଦ୍ଦେଶକୁ କଡ଼ାକଡ଼ି ଭାବେ ପାଳନ କରିବାକୁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ମାନବିକ ଦୃଷ୍ଟିକୋଣରୁ ବେସରକାରୀ ଅନୁଷ୍ଠାନମାନେ ମଧ୍ୟ ଏ କ୍ଷେତ୍ରରେ ସହଯୋଗ କରିବାକୁ ଅନୁରୋଧ କରିଥିଲେ ।

ଶାରୀରିକ ଅକ୍ଷମ ବ୍ୟକ୍ତିମାନଙ୍କର ଥଇଥାନ ପାଇଁ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଆନ୍ତରିକତା ବିଷୟରେ ସୂଚନା ଦେଇ ମୁଖ୍ୟ ଶାସନ ସଚିବ କହିଲେ ଯେ ବିଭିନ୍ନ ଆତ୍ମ ନିଯୁକ୍ତି ଯୋଜନାରେ ମଧ୍ୟ ଏମାନଙ୍କୁ ଅଗ୍ରାଧିକାର ଦେବା ଆବଶ୍ୟକ ଏବଂ ଏଥିପାଇଁ ରାଜ୍ୟ ସରକାର ଆବଶ୍ୟକୀୟ ସାହାଯ୍ୟ ଓ ସହଯୋଗ ଯୋଗାଇ ଦେବେ ।

ବିଭିନ୍ନ ସରକାରୀ ସଂସ୍ଥାରେ ଶାରୀରିକ ଅକ୍ଷମ ବ୍ୟକ୍ତିମାନଙ୍କ ପାଇଁ ସଂରକ୍ଷିତ ସ୍ଥାନ ପୂରଣ ସଂପର୍କରେ ପ୍ରତି ମାସରେ ସମୀକ୍ଷା କରିବାକୁ ଶ୍ରୀ ପଣ୍ଡା ନିର୍ଦ୍ଦେଶ ଦେଇଥିଲେ ।

ଏହି ଆଲୋଚନା ସଭାରେ ବିଭିନ୍ନ ବିଭାଗର ଶାସନ ସଚିବ ତଥା ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ, ଅତିରିକ୍ତ ଉନ୍ନୟନ କମିଶନର ଶ୍ରୀ ସୁନ୍ଦର ରାଜନ୍, କୃଷି ଉତ୍ପାଦନ କମିଶନର ଶ୍ରୀ ଏସ୍. ବି. ପାଲିତଙ୍କ ବ୍ୟତୀତ ବିଭିନ୍ନ ନିଗମ ଏବଂ ଶିଳ୍ପସଂସ୍ଥାର ପ୍ରତିନିଧିମାନେ ଯୋଗ ଦେଇଥିଲେ ।

## କଳାହାଣ୍ଡି ମରୁଡ଼ି ଅଞ୍ଚଳରେ ସୂଚନା ମନ୍ତ୍ରୀ

ରାଜ୍ୟ ସୂଚନା ଓ ସେଚ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ଆଠଦିନ କାଳ କଳାହାଣ୍ଡି ଜିଲ୍ଲା ମରୁଡ଼ି ଅଞ୍ଚଳର କେତେ ଗ୍ରାମ ପରିଦର୍ଶନ କରି ପ୍ରତାପପୁର ଓ ଟାଙ୍ଗଣକଣା ଭଳି କେତେକ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ବୁଲି ଦେଖିଥିଲେ । ୮୫ ହଜାର ଟଙ୍କା ବ୍ୟୟରେ ନିର୍ମିତ ହେଉଥିବା କୁମେରମୁଣ୍ଡା ସେଚ ପ୍ରକଳ୍ପର ନିର୍ମାଣ କାର୍ଯ୍ୟରେ ସ୍ଥାନୀୟ ୨୦୦ ଲୋକଙ୍କୁ କାମଧନ୍ଦା ଯୋଗାଇ ଦିଆଯାଉଥିବା ଶ୍ରୀ ସିଂହ ଲକ୍ଷ୍ୟ କରିଥିଲେ । କିନ୍ତୁ କ୍ଷୁଦ୍ର ସେଚ ପ୍ରକଳ୍ପରୁ ମାତ୍ର ୬୦ ହେକ୍ଟର ଜମିକୁ ଜଳ ଯୋଗାଣ ସମ୍ଭବ ହୋଇଛି ଅଥଚ ପୂର୍ବ ବର୍ଷମାନଙ୍କରେ ଏଠାରୁ ୧୦୮ ହେକ୍ଟର ଜମି ଜଳସେଚିତ ହେଉଥିଲା । କୃଷିମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରାଙ୍କ ସହିତ ଶ୍ରୀ ସିଂହ ଜୟପାଟଣା ଅଞ୍ଚଳର ପ୍ରାୟ ୩୦ଟି ଗ୍ରାମ ପରିଦର୍ଶନ କରିଥିଲେ । ଏଠାରେ ଯେଉଁ ସ୍ଥାନରେ ଜଳ ଯୋଗାଣ ସମ୍ଭବ ହେଉଛି, ସେଠାରେ ରାତିଦିନ ଲାଗି ଲଗାତାର ଭାବରେ ଜଳ ଯୋଗାଇ ଫସଲ ରକ୍ଷା କରିବାକୁ ସେ ବିଭାଗୀୟ ଯନ୍ତ୍ରୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଯଥେଷ୍ଟ ଜଳ ଥିବା ସ୍ଥାନରେ ଏବୋଧିକ ପୁଷ୍କରଙ୍କ ଜମିରେ ଜଳସେଚନ କରିବା ପାଇଁ କେବଳ ଉଠା ଜଳସେଚନ ପମ୍ପ ସ୍ଥାପନ କରିବା ଲାଗି ଶ୍ରୀ ସିଂହ ପରାମର୍ଶ ଦେଇଥିଲେ । ଲାଞ୍ଜିଗଡ଼ଠାରେ ବର୍ତ୍ତମାନ ପର୍ଯ୍ୟାପ୍ତ ପରିମାଣର ଅତ୍ୟାବଶ୍ୟକୀୟ ଦ୍ରବ୍ୟ ମିଳୁ ନ ଥିବାର ଅଭିଯୋଗ ପାଇ ସେ ଜିଲ୍ଲା କର୍ତ୍ତୃପକ୍ଷଙ୍କୁ ଏ ସବୁ ଦ୍ରବ୍ୟର ଯୋଗାଣ ପରିମାଣ ବଢ଼ାଇ କରିବା ଲାଗି ନିର୍ଦ୍ଦେଶ ଦେଇଥିଲେ । ଏହି ଗସ୍ତ ସମୟରେ କିରୋସିନି, ଖାଦ୍ୟତେଲ, ଗହମ ଇତ୍ୟାଦି ଅତ୍ୟାବଶ୍ୟକୀୟ ଦ୍ରବ୍ୟ ଯେଉଁ ନିର୍ଦ୍ଧାରିତ ଦରରେ ମିଳୁଥିବା ବିଷୟ ରାଷ୍ଟ୍ରମନ୍ତ୍ରୀଙ୍କୁ ଜଣାଇଥିଲେ । ସବୁସ୍ଥାନରେ ଜନସାଧାରଣ ଅଧିକ ପରିମାଣର ଅତ୍ୟାବଶ୍ୟକୀୟ ଦ୍ରବ୍ୟ ଯୋଗାଣ ଲାଗି ଦାବୀ କରିଥିଲେ । ଶ୍ରୀ ସିଂହ ସରକାର ମରୁଡ଼ି ଅଞ୍ଚଳ ଲୋକଙ୍କ ନିମନ୍ତେ ଯେଉଁସବୁ ସ୍ୱତନ୍ତ୍ର ପଦକ୍ଷେପ ନେଇଛନ୍ତି, ତାହା ଜନସାଧାରଣଙ୍କୁ ବୁଝାଇଥିଲେ ।

କଳାହାଣ୍ଡି ଜିଲ୍ଲାର ୧୯ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ମଧ୍ୟରୁ ୭୨ଟି ପ୍ରକଳ୍ପରୁ ଜଳ ଯୋଗାଇ ୧୨,୩୭୭ ହେକ୍ଟର ଜମିର ଫସଲ ରକ୍ଷା ପାଇଁ ଉଦ୍ୟମ କରାଯାଉଥିବା ବିଷୟ ବିଭାଗୀୟ ଯନ୍ତ୍ରୀମାନେ ଶ୍ରୀ ସିଂହଙ୍କୁ ଜଣାଇଥିଲେ ।

## ଗ୍ରାମାଞ୍ଚଳରେ ରାସ୍ତା ନିର୍ମାଣ

ଓଡ଼ିଶାରେ କାର୍ଯ୍ୟକାରୀ ହେଉଥିବା ଗ୍ରାମାଞ୍ଚଳ ଭୂମିହୀନ ଶ୍ରମିକଙ୍କ ନିଯୁକ୍ତି ନିର୍ଭରତା କାର୍ଯ୍ୟକ୍ରମ (ଆର. ଏଲ. ଇ. ଜି. ପି.)

ଅନୁଯାୟୀ ଗ୍ରାମାଞ୍ଚଳ ଗୁଡ଼ିକରେ ସଂଯୋଗକାରୀ ରାସ୍ତା ସବୁ ନିର୍ମାଣ ତଥା ମରାମତି କରିବା ବାବଦରେ ଚଳିତ ଆର୍ଥିକ ବର୍ଷ ୧ କୋଟି ୪୫ ଲକ୍ଷ ୮୩ ହଜାର ୩୦୦ ଟଙ୍କା ମଞ୍ଜୁର କରାଯାଇ ସବୁଜିଲ୍ଲାକୁ ଯୋଗାଇ ଦିଆଯାଇଛି । ଏହି ଅର୍ଥ ବିନିଯୋଗରେ ରାଜ୍ୟର ଗ୍ରାମାଞ୍ଚଳରେ ୪୯ ଲକ୍ଷ ୯ ହଜାର ୩୦୦ ଶ୍ରମଦିବସ ସୃଷ୍ଟି କରିବାକୁ ଲକ୍ଷ୍ୟଧାର୍ଯ୍ୟ ହୋଇଛି । ଏହି ଅର୍ଥ ମଧ୍ୟରେ ଖାଦ୍ୟଶସ୍ୟର ମୂଲ୍ୟ ବାବଦରେ ଏକ-ତୃତୀୟାଂଶ ଏବଂ ନଗଦ ଅର୍ଥ ଆକାରରେ ଅବଶିଷ୍ଟ ତିନି-ଚତୁର୍ଥାଂଶ ଅନ୍ତର୍ଭୁକ୍ତ ।

କଟକ ଜିଲ୍ଲାକୁ ସର୍ବାଧିକ ୧ କୋଟି ୭୮ ଲକ୍ଷ ୪୯ ହଜାର ଟଙ୍କା, କୋରାପୁଟକୁ ୧ କୋଟି ୭୬ ଲକ୍ଷ ୫୫ ହଜାର ୫୦୦ ଟଙ୍କା, ମୟୂରଭଞ୍ଜକୁ ୧ କୋଟି ୪୨ ଲକ୍ଷ ୨୩ ହଜାର ୪୦୦ ଟଙ୍କା ଓ ଗଞ୍ଜାମ ଜିଲ୍ଲାକୁ ୧ କୋଟି ୯ ଲକ୍ଷ ୧୨ ହଜାର ୯୦୦ ଟଙ୍କା ଦିଆଯାଇଛି । ସେହିପରି ବାଲେଶ୍ୱରକୁ ୭୦ ଲକ୍ଷ ୭୯ ହଜାର ୬୦୦ ଟଙ୍କା, ବଲାଙ୍ଗୀରକୁ ୬୩ ଲକ୍ଷ ୬୭ ହଜାର ୨୦୦ ଟଙ୍କା, ଢେଙ୍କାନାଳକୁ ୪୨ ଲକ୍ଷ ୧୧ ହଜାର ୨୦୦ ଟଙ୍କା, କଳାହାଣ୍ଡିକୁ ୮୮ ଲକ୍ଷ ୪୫ ହଜାର ଟଙ୍କା, କେନ୍ଦୁଝରକୁ ୩୦ ଲକ୍ଷ ୪୮ ହଜାର ୮୦୦ ଟଙ୍କା, ଫୁଲବାଣୀକୁ ୩୭ ଲକ୍ଷ ୫୧ ହଜାର ୨୦୦ ଟଙ୍କା, ପୁରୀକୁ ୯୧ ଲକ୍ଷ ୧୭ ହଜାର ୫୦୦ ଟଙ୍କା, ସମ୍ବଲପୁରକୁ ୭୧ ଲକ୍ଷ ୮୩ ହଜାର ୩୦୦ ଟଙ୍କା ଏବଂ ସୁନ୍ଦରଗଡ଼ ଜିଲ୍ଲାକୁ ୪୩ ଲକ୍ଷ ୩୨ ହଜାର ୪୦୦ ଟଙ୍କା ଯୋଗାଇ ଦିଆଯାଇଛି ।

ଗତ ଜୁନ୍ ମାସ ଶେଷ ସୁଦ୍ଧା ଏହି କାର୍ଯ୍ୟକ୍ରମ ବାବଦରେ ସମୁଦାୟ ୨ କୋଟି ୩ ଲକ୍ଷ ୭୧ ହଜାର ୩୦୦ ଟଙ୍କା (ଖାଦ୍ୟ ଶସ୍ୟ ଓ ଅର୍ଥ ଆକାରରେ ) ବିନିଯୋଗ କରାଯାଇ ୮ ଲକ୍ଷ ୭୨ ହଜାର ୮୦୦ ଶ୍ରମ ଦିବସ ସୃଷ୍ଟି କରାଯାଇଛି ।

## ପନ୍ତଙ୍କ ଜନ୍ମ ଶତବାର୍ଷିକୀ

ତା୧୦।୯।୧୯୮୭ରେ ବଲାଙ୍ଗୀର ଗାନ୍ଧୀ-ଭବନଠାରେ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ତଙ୍କ ଜନ୍ମ-ଶତବାର୍ଷିକୀ ପାଳିତ ହୋଇଯାଇଛି । ଏହି ଉପଲକ୍ଷେ ସ୍କୁଲ ଛାତ୍ର-ଛାତ୍ରୀମାନଙ୍କ ମଧ୍ୟରେ ବକ୍ତୃତା ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା । ସନ୍ଧ୍ୟାରେ ଏହି ଉପଲକ୍ଷେ ଅନୁଷ୍ଠିତ ଜାତୀୟ ସଂହତି ସାଧାରଣ ସଭାରେ ପଣ୍ଡିତ ପନ୍ତଙ୍କ ପ୍ରତିକୃତିରେ ପୁଷ୍ପ ମାଲ୍ୟ ଅର୍ପଣ କରି ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରାଯାଇଥିଲା । ଏଥିରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ସ୍ୱପ୍ନାନନ୍ଦ ପାଣିଗ୍ରାହୀ ସଭାପତିତ୍ୱ କରି କୃତୀସତି ଯୋଗୀମାନଙ୍କୁ ପ୍ରମାଣପତ୍ର ପ୍ରଦାନ କରିଥିଲେ । ରାଜେନ୍ଦ୍ର କଲେଜର ଓଡ଼ିଆ ବିଭାଗର ଅଧ୍ୟାପକ ଶ୍ରୀ ପ୍ରଦୀପ କୁମାର ଦାସ ମୁଖ୍ୟ ବକ୍ତା ଭାବରେ ଏବଂ ପୃଥ୍ୱୀରାଜ ହାଇ-ସ୍କୁଲର ଅବସରପ୍ରାପ୍ତ ଶିକ୍ଷକ ଶ୍ରୀଯୁକ୍ତ ସର୍ବେଶ୍ୱର ରଥ ସମ୍ମାନିତ ବକ୍ତା ଭାବରେ ଯୋଗଦାନ କରି ପଣ୍ଡିତ ପନ୍ତଙ୍କର ଜୀବନୀ, ଆଦର୍ଶ, ଜାତୀୟତାବାଦ, ଜାତୀୟ ସଂହତି ରକ୍ଷା କରିବା ଦିଗରେ ଅବଦାନ, ଦେଶ ସେବା, ସ୍ୱାଧୀନତା ଆନ୍ଦୋଳନରେ ତାଙ୍କର ଅବଦାନ ଏବଂ ଶାସନ କ୍ଷେତ୍ରରେ ପାରଦର୍ଶିତା ଆଦି ସମ୍ବନ୍ଧରେ ଆଲୋକପାତ କରିଥିଲେ । ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶମାତୃକାର ସେବା କରିବା ସଙ୍ଗେ ସଙ୍ଗେ ସାଂପ୍ରତିକ ପରିସ୍ଥିତିରେ ଜାତୀୟ ଏକତା ଓ ସଂହତି ରକ୍ଷାକରିବାକୁ ସମସ୍ତଙ୍କୁ ପରାମର୍ଶ ଦେଇଥିଲେ । ବଲାଙ୍ଗୀର ଅନୁବିଭାଗୀୟ ସୂଚନା ଓ ଲୋକ ସଂପର୍କ ଅଧିକାରୀ ଦିବସ ପାଳନର ସୂଚନା ଦେଇଥିଲେ । ସଭା ଶେଷରେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଉପରେ ଆଧାରିତ ପ୍ରାମାଣିକ ଚଳଚ୍ଚିତ୍ର ପ୍ରଦର୍ଶନ କରାଯାଇଥିଲା ।

## ରାୟଗଡ଼ ପାନୀୟ ଜଳ ଯୋଗାଣ

କୋରାପୁଟ ଜିଲ୍ଲାର କ୍ରମବର୍ଦ୍ଧିଷ୍ଣୁ ରାୟଗଡ଼ ସହରରେ ପାନୀୟ ଜଳ ଯୋଗାଣ ପାଇଁ ରାଜ୍ୟ ସରକାର ଓ ସ୍ଥାନୀୟ ପୌର କର୍ତ୍ତୃପକ୍ଷଙ୍କ ମିଳିତ ଉଦ୍ୟମରେ ବିହିତ ପଦକ୍ଷେପ ନିଆଯାଇଛି । ୩୬ ହଜାରରୁ ଊର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ଏହି ସହରରେ ଆଜିସୁଦ୍ଧା ୧,୦୫୦ ପରିବାରଙ୍କଗୃହକୁ ଜଳ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ସର୍ବସାଧାରଣଙ୍କ ବ୍ୟବହାର ପାଇଁ ବିଭିନ୍ନ ସ୍ଥାନରେ ୧୫୦ଟି ପାଣିକଳ ଓ ୮୮ଟି ନଳକୂପ ବସାଯାଇଛି । ନଳକୂପଗୁଡ଼ିକ ବସାଇବା ପାଇଁ ହରିଜନ ଓ ଆଦିବାସୀ କଲ୍ୟାଣ ବିଭାଗ ତରଫରୁ ଅନୁଦାନ ମଞ୍ଜୁର କରାଯାଇଥିଲା । ଏହି ସହରରେ ଏକ ପୂର୍ଣ୍ଣାଙ୍ଗ ଜଳ ଯୋଗାଣ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ପାଇଁ ୫୫ଲକ୍ଷ ଟଙ୍କାର ବ୍ୟୟ ଅଟକଳ କରାଯାଇଛି । ଇତିମଧ୍ୟରେ ୨ୟ ଜଳ ଯୋଗାଣ ଟ୍ୟାଂକ୍ ନିର୍ମାଣ କରିବାକୁ ୧୪ ଲକ୍ଷ ୯୯ହଜାର ଟଙ୍କା ସରକାରୀ ଅନୁଦାନ ଦିଆଯାଇଛି ।

ଗତ ଆର୍ଥିକ ବର୍ଷରେ ଏହି ପୌରାଞ୍ଚଳରେ ରାସ୍ତାଘାଟ ଓ ନାଳ ନର୍ଦ୍ଦମା ମରାମତି ବାବଦରେ ପ୍ରାୟ ୪ଲକ୍ଷ ଟଙ୍କା, ରାସ୍ତା ଆଲୋକ ପାଇଁ ୨ ଲକ୍ଷ ଟଙ୍କା, ପରିମଳ ବ୍ୟବସ୍ଥା ପାଇଁ ୭ ଲକ୍ଷ ୨୮ ହଜାରରୁ ଊର୍ଦ୍ଧ୍ୱ ଟଙ୍କା, ଉଚ୍ଚ ବିଦ୍ୟାଳୟ ପରିଚାଳନା ପାଇଁ ୨ ଲକ୍ଷ ୫୫ ହଜାର ଟଙ୍କା ଏବଂ ଜଳ ଯୋଗାଣ ପାଇଁ ୧୦ ଲକ୍ଷ ୨୦ ହଜାର ଟଙ୍କା ବିନିଯୋଗ କରାଯାଇଛି ।

## ଅତ୍ୟାଧୁନିକ ଡାକ୍ତରଖାନା

ଭୁବନେଶ୍ୱରଠାରେ ଏକ ଉଚ୍ଚ ମାନର ଡାକ୍ତରଖାନା ସ୍ଥାପନ କରିବାପାଇଁ ସଂପ୍ରତି ଇପିକଲ୍‌ବୋର୍ଡ ଅନୁମୋଦନ କରିଛନ୍ତି । ମାଡ୍ରାସର ଆପୋଲୋ ଡାକ୍ତରଖାନା ଢାଞ୍ଚାରେ ଏଠାରେ ଚିକିତ୍ସା ପାଇଁ ଆବଶ୍ୟକ ପଡୁଥିବା ଅତ୍ୟାଧୁନିକ ଯନ୍ତ୍ରପାତି ସହାୟତାରେ ଚିକିତ୍ସା କରାଯିବ । ଏହି ଡାକ୍ତରଖାନା ଇପିକଲ୍ ଏବଂ ଆପୋଲୋଗ୍ରୁପ (ଇଣ୍ଡିଆ ହସ୍‌ପିଟାଲସ୍ କର୍ପୋରେସନ୍) ର ସଭାପତି ଡକ୍ଟର ପ୍ରତାପ ରେଡ୍ଡିଙ୍କ ସହ ମିଳିତ ଉଦ୍ୟମରେ ୧୭ କୋଟି ଟଙ୍କା ବ୍ୟୟରେ ପ୍ରତିଷ୍ଠା କରାଯିବ ବୋଲି ସୂଚନା ମିଳିଛି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ରାଜ୍ୟରେ ବୃହତ୍ ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠା ପାଇଁ ଇପିକଲ୍ କାରିଗରୀ କୌଶଳ ଓ ଆର୍ଥିକ ସହାୟତା ଯୋଗାଇ ଦେଇଥାଏ । ଏକ ଅତ୍ୟାଧୁନିକ ଡାକ୍ତରଖାନା ପ୍ରତିଷ୍ଠା ପାଇଁ ଇପିକଲ୍ ସହାୟତା ଯୋଗାଇଦେବା ଫଳରେ ଆମ ରାଜ୍ୟର ରାଜଧାନୀଠାରେ ଏହା ପ୍ରତିଷ୍ଠା କରିବା ସମ୍ଭବ ହୋଇ ପାରିଛି । ଏହା ପ୍ରତିଷ୍ଠିତ ହୋଇସାରିବା ପରେ ରାଜ୍ୟବାସୀଙ୍କୁ ଚିକିତ୍ସା ସୁବିଧା ଯୋଗାଇ ଦେବା କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି ହେବ ।

## ଅକର୍ମଣ୍ୟ କର୍ମଚାରୀ ଓ ନିଯୁକ୍ତିଦାତାଙ୍କ ପାଇଁ ଜାତୀୟ ପୁରସ୍କାର

ବିକଳାଙ୍ଗ କର୍ମଚାରୀଙ୍କ ନିଯୁକ୍ତିଦାତା, ଦକ୍ଷ ବିକଳାଙ୍ଗ କର୍ମଚାରୀ ଓ ଆତ୍ମନିଯୁକ୍ତି କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରିଥିବା ବିକଳାଙ୍ଗ ବ୍ୟକ୍ତିଙ୍କୁ ପୃଥକ ପୃଥକ ଭାବେ ପୁରସ୍କାର ପ୍ରଦାନ କରାଯିବ । ଏଥିପାଇଁ ଯୋଗ୍ୟ ବିବେଚିତ ପ୍ରତ୍ୟେକ ବିକଳାଙ୍ଗ ଲାଗି ନଗଦ ୧ ହଜାର ଟଙ୍କା ପୁରସ୍କାର ସହିତ ପ୍ରମାଣପତ୍ର, ମାନପତ୍ର ଓ ଧାତୁ ନିର୍ମିତ ଏକ ବ୍ୟାଜ୍ ବା ପଦକ ରହିଛି ଏବଂ ସୁଦକ୍ଷ ନିଯୁକ୍ତିଦାତାଙ୍କୁ ପୁରସ୍କାର ସ୍ୱରୂପ ଷିଲ୍ଡ୍ କିମ୍ବା ବ୍ରୋଞ୍ଜ ପଦକ ସହିତ ମାନପତ୍ର ଦିଆଯିବ । ବିକଳାଙ୍ଗ ଥଇଥାନ ପଦାଧିକାରୀମାନଙ୍କପାଇଁ ପ୍ରତ୍ୟେକ ପୁରସ୍କାରରେ ଗୋଟିଏ ଷିଲ୍ଡ୍, ପ୍ରମାଣପତ୍ର ଓ ମାନପତ୍ର ଅନ୍ତର୍ଭୁକ୍ତ ।

ଏପରି ବିକଳାଙ୍ଗ କର୍ମଚାରୀମାନଙ୍କର ନିଯୁକ୍ତିଦାତା ତଥା କର୍ମଚାରୀମାନେ ରାଜ୍ୟ ବା କେନ୍ଦ୍ର ସରକାର କିମ୍ବା କର୍ପୋରେସନ୍ ଓ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକରେ କାର୍ଯ୍ୟ କରୁଥିବା ଆବଶ୍ୟକ । କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଉଦ୍ୟମରେ ପରିଚାଳିତ ସଂସ୍ଥାଗୁଡ଼ିକରେ କାର୍ଯ୍ୟ କରୁଥିବା କର୍ମଚାରୀମାନେ ମଧ୍ୟ ପୁରସ୍କାର ଲାଭ କରିବା ଲାଗି ଯୋଗ୍ୟ ବିବେଚିତ ହୋଇ ପାରିବେ ।

ସେହିପରି ଆତ୍ମନିଯୁକ୍ତି ଲାଭ କରିଥିବା ବ୍ୟକ୍ତିଙ୍କ ସମେତ ବେସରକାରୀ ଉଦ୍ୟୋଗରେ କାର୍ଯ୍ୟକରୁଥିବା ଶ୍ରେଷ୍ଠ ବିକଳାଙ୍ଗ ବ୍ୟକ୍ତିମାନଙ୍କୁ ପୁରସ୍କାର ପ୍ରଦାନ କରାଯିବ । ଅନ୍ଧ, ମୂକ, ଶାରୀରିକ ଅକ୍ଷମ, ମାନସିକ ବିକୃତ ଓ କୁଷ୍ଠ ରୋଗ ମୁକ୍ତ କର୍ମଚାରୀଙ୍କର ପ୍ରତ୍ୟେକ ନିଯୁକ୍ତିଦାତାଙ୍କୁ ଗୋଟିଏ ଲେଖାଏଁ ପୁରସ୍କାର ପ୍ରଦାନ କରାଯିବ । ଏହି ବ୍ୟବସ୍ଥା ଅନୁଯାୟୀ ୨ଟି ଲେଖାଏଁ ପୁରସ୍କାର ଅନ୍ଧ, ମୂକ, ଶାରୀରିକ ଅକ୍ଷମ, ମାନସିକ ବିକୃତ ଓ କୁଷ୍ଠ ରୋଗମୁକ୍ତ ବିକଳାଙ୍ଗ କର୍ମଚାରୀ ଓ ଆତ୍ମ ନିଯୁକ୍ତ ବିକଳାଙ୍ଗ ବ୍ୟକ୍ତିଙ୍କୁ ପ୍ରଦାନ କରାଯିବ । ଏତଦ୍‌ବ୍ୟତୀତ ଅନ୍ୟ ୨ଟି ପୁରସ୍କାର ବିକଳାଙ୍ଗ ବ୍ୟକ୍ତିଙ୍କ ଥଇଥାନ କରିବା ଦିଗରେ କୃତିତ୍ୱ ହାସଲ କରିଥିବା ସଂପୃକ୍ତ ପଦାଧିକାରୀଙ୍କୁ ଦିଆଯିବାର ବ୍ୟବସ୍ଥା ହୋଇଛି ।

ଏଠାରେ ସ୍ମରଣ କରାଇଦିଆଯାଇପାରେ ଯେ ଶିଳ୍ପାନୁଷ୍ଠାନ, ବାଣିଜ୍ୟ ପ୍ରତିଷ୍ଠାନ, କୃଷି ଓ ଜନସେବା ସଂସ୍ଥାଗୁଡ଼ିକରେ ତାଲିମପ୍ରାପ୍ତ ବିକଳାଙ୍ଗ ବ୍ୟକ୍ତିମାନଙ୍କୁ ଯଥାଯଥ କର୍ମନିଯୁକ୍ତି ଦେଇ ସେମାନଙ୍କର ଅର୍ଥନୈତିକ ଓ ମାନସିକ ବିକାଶ କରିବା ଦିଗରେ ଆମ ଦେଶରେ ସ୍ୱାଧୀନତା ପ୍ରାପ୍ତି ଠାରୁ ଉଦ୍ୟମ ଅବ୍ୟାହତ ରହିଛି । ପ୍ରାୟ ୧୪ ବର୍ଷ ତଳେ କେନ୍ଦ୍ର ସମାଜ କଲ୍ୟାଣ ମନ୍ତ୍ରଣାଳୟ ଏବଂ ଶ୍ରମ, କର୍ମନିଯୁକ୍ତି ଓ ଥଇଥାନ ମନ୍ତ୍ରଣାଳୟର ମିଳିତ ଉଦ୍ୟମରେ ବିକଳାଙ୍ଗ ବ୍ୟକ୍ତିଙ୍କ ଲାଗି ଏକ ସ୍ୱତନ୍ତ୍ର କର୍ମନିଯୋଗ ସଂସ୍ଥା ପ୍ରତିଷ୍ଠା କରାଯାଇଥିଲା । ଏ କ୍ଷେତ୍ରରେ ଅଧିକ ସଫଳତା ହାସଲ କରିବାକୁ ଏକ ବିଶେଷ ପ୍ରୋତ୍ସାହନ ସ୍ୱରୂପ ୧୯୬୯ ଠାରୁ ଭାରତର ରାଷ୍ଟ୍ରପତି ବିକଳାଙ୍ଗ କର୍ମଚାରୀମାନଙ୍କର ସୁଦକ୍ଷ ନିଯୁକ୍ତିଦାତା ଓ ୩। ଜଣ ବିକଳାଙ୍ଗ କର୍ମଚାରୀଙ୍କୁ ବାର୍ଷିକ ୩ଟି ପୁରସ୍କାର ପ୍ରଦାନ କରିଆସୁଛନ୍ତି । ଏହା ଆଶାନୁରୂପକ ଓ ଉତ୍ସାହଜନକ ହୋଇଥିବାରୁ ଏହି ପରିକଳ୍ପନାର ପରିସରକୁ ବୃଦ୍ଧି କରାଯାଇଛି ।

## ଚୌଦ୍ୱାରରେ ଭାରତର ପ୍ରଥମ ଟିଣ ଉତ୍ପାଦନ କାରଖାନା

ଚୌଦ୍ୱାର ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ୍‌ଠାରେ ବାର୍ଷିକ ୩୦୦ ଟନ୍ ଟିଣ ଉତ୍ପାଦନ କରିବା ନିମନ୍ତେ ଏକ କାରଖାନା ସ୍ଥାପନ କରାଯିବ । ଏହା ଭାରତର ପ୍ରଥମ ଟିଣ ଉତ୍ପାଦନ କାରଖାନା ହେବ । ଏଥିପାଇଁ ଇପିକଲ୍ ବୋର୍ଡ ସାଟିନ୍ ପ୍ରାଇଭେଟ୍ ଲିମିଟେଡ୍‌କୁ ୫୨ ଲକ୍ଷ ଟଙ୍କା ଋଣ ଏବଂ ୫ ଲକ୍ଷ ଟଙ୍କା ଅଂଶଧନ ମଞ୍ଜୁର କରିଛନ୍ତି । ଏଥିନିମନ୍ତେ ଆବଶ୍ୟକ ହେଉଥିବା କଞ୍ଚାମାଲ ବିଦେଶରୁ ଆମଦାନୀ କରାଯିବ । କୋରାପୁଟ ଠାରେ ଥିବା ଟିଣ ଖଣିରୁ ଉତ୍ପାଦିତ ଟିଣ ପଥର ମଧ୍ୟ ଏଠାରେ ବ୍ୟବହୃତ ହେବ । ବର୍ତ୍ତମାନ ଟିଣଧାତୁ ବିଦେଶରୁ ଆମଦାନୀ କରାଯାଉଛି । ଏହି ଉଦ୍ୟୋଗ ୨ ଜଣ ଇଞ୍ଜିନିୟର ଯୁବ ଶିଳ୍ପୋଦ୍ୟୋଗୀ ମିଷ୍ଟର ଶ୍ରୀ ଶଶାଙ୍କ ଜୈନ ଓ ଶ୍ରୀ ଦୀପକ ଜୈନଙ୍କ ଦ୍ୱାରା ଇପିକଲ ସହ ମିଳିତ ଉଦ୍ୟୋଗରେ ପ୍ରତିଷ୍ଠା କରାଯାଉଛି । ଏହି ପ୍ରକଳ୍ପ ପ୍ରତିଷ୍ଠା ପାଇଁ ଏକକୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି ।

## ୧୬'୪ କୋଟି ଟଙ୍କାର ନଳକୂଅ ଯୋଜନା

ଚଳିତ ଆର୍ଥିକ ବର୍ଷରେ ସମଗ୍ର ରାଜ୍ୟର ଜଳକ୍ଲିଷ୍ଟ ରୂପେ ଚିହ୍ନିତ ଓ ଅଣଚିହ୍ନିତ ଗ୍ରାମଗୁଡ଼ିକରେ ଆଜି ସୁଦ୍ଧା ସର୍ବମୋଟ ୧୩,୨୮୨ ଟି ନଳକୂପ ଖନନ କରିବାକୁ ସରକାର ଏକ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଏଗୁଡ଼ିକ ମଧ୍ୟରେ ପୂର୍ବରୁ ବସାଯାଇନଥିବା ୪,୮୬୯ଟି ନଳକୂପ ସମେତ ଏମ୍: ଏନ୍: ପି: ଏବଂ କେନ୍ଦ୍ରୀୟ ସହାୟତାରେ ତ୍ୱରାନ୍ୱିତ ଗ୍ରାମ୍ୟ ଜଳ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ୭,୦୦୩ଟି ନଳକୂପ ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ବର୍ତ୍ତମାନ ପାଇଁ ୮ଟି ଜିଲ୍ଲାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ ୪୦୦ଟି ଏବଂ ମରୁଡ଼ିଗ୍ରସ୍ତ ଗ୍ରାମଗୁଡ଼ିକରେ ୧,୦୦୦ଟି ନଳକୂପ ବସାଇବାକୁ ଅଣୁ ପଦକ୍ଷେପ ନିଆଯାଇଛି ।

ନଳକୂପ ମଞ୍ଜୁର ହୋଇଥିବା ଜିଲ୍ଲାୱାରୀ ତାଲିକା ଅନୁଯାୟୀ ଚଳିତ ଆର୍ଥିକ ବର୍ଷରେ କୋରାପୁଟ ଜିଲ୍ଲାରେ ସର୍ବାଧିକ ୩,୦୭୫ଟି, ଗଞ୍ଜାମରେ ୧,୬୪୯ଟି, କଟକରେ ୧,୩୬୯ଟି, ଫୁଲବାଣୀରେ ୧,୨୧୦ଟି ଏବଂ ମୟୂରଭଞ୍ଜରେ ୧,୧୮୨ଟି ନଳକୂପ ବସାଯିବ । ସେହିପରି ବାଲେଶ୍ୱର ଜିଲ୍ଲାରେ ୫୯୮ଟି, ବଲାଙ୍ଗୀରରେ ୪୯୧ଟି, ଢେଙ୍କାନାଳରେ ୫୯୭ଟି, କଳାହାଣ୍ଡିରେ ୭୫୫ଟି, କେନ୍ଦୁଝରରେ ୬୮୧ଟି, ପୁରୀରେ ୮୫୫ଟି, ସମ୍ବଲପୁରରେ ୬୨୯ଟି ଏବଂ ସୁନ୍ଦରଗଡ ଜିଲ୍ଲାରେ ୪୯୧ଟି ନଳକୂପ ବସାଇବାକୁ କାର୍ଯ୍ୟକ୍ରମ ରହିଛି ।

ନଳକୂପ ଖନନ ପାଇଁ ଏମ୍: ଏନ୍: ପି: ପାଣ୍ଠିରୁ ୧ କୋଟି ୬୭ ଲକ୍ଷ ଟଙ୍କା ମଞ୍ଜୁର ହୋଇଥିବା ସ୍ଥଳେ ତ୍ୱରାନ୍ୱିତ ଗ୍ରାମ୍ୟ ଜଳ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ କେନ୍ଦ୍ର ସରକାର

୧୩ କୋଟି ୮ ଲକ୍ଷ ଟଙ୍କା ଯୋଗାଇ ଦେବାର ବ୍ୟବସ୍ଥା ହେଉଛି । ଆଜିସୁଦ୍ଧା ଏ ବାବଦରେ ୬ କୋଟି ୫୪ ଲକ୍ଷ ଟଙ୍କା କେନ୍ଦ୍ରୀୟ ସାହାଯ୍ୟ ମିଳିଲଣି । ଏହା ବ୍ୟତୀତ ଆଦିବାସୀ ଅଞ୍ଚଳରେ ନଳକୂପ ଖନନ ପାଇଁ ୮୦ ଲକ୍ଷ ଟଙ୍କା ସ୍ୱତନ୍ତ୍ର କେନ୍ଦ୍ରୀୟ ସାହାଯ୍ୟ ଏବଂ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ନଳକୂପ ଖନନ ପାଇଁ ମାର୍ଜିନମନିରୁ ୬୦ ଲକ୍ଷ ଟଙ୍କା ଓ ୧ କୋଟି ୪୦ ଲକ୍ଷ ଟଙ୍କା କେନ୍ଦ୍ରୀୟ ସାହାଯ୍ୟ ମିଳିଛି । ଗତମାସ ଶେଷସୁଦ୍ଧା ସମଗ୍ର ରାଜ୍ୟରେ ୨,୮୩୫ଟି ନଳକୂପ ବସାଯାଇଛି ।

## ଗୋତି ଶ୍ରମିକଙ୍କ ଥଇଥାନ

ଗୋତି ଶ୍ରମିକଙ୍କ ଥଇଥାନ ଯୋଜନା କାର୍ଯ୍ୟକାରୀ ହେବା ଦିନଠାରୁ ଗତମାସ ସୁଦ୍ଧା ରାଜ୍ୟରେ ୧୦,୮୯୭ ଜଣ ତଫସିଲଭୁକ୍ତ ଜାତି ଓ ୧୩,୮୬୩ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକଙ୍କୁ ମିଶାଇ ମୋଟ୍ ୩୮,୧୦୮ ଜଣ ଗୋତିମୁକ୍ତ ଶ୍ରମିକଙ୍କୁ ଥଇଥାନ କରାଯାଇଛି । ବିଭିନ୍ନ ଜିଲ୍ଲାରେ ଥଇଥାନ ହୋଇଥିବା ଗୋତିମୁକ୍ତ ଶ୍ରମିକଙ୍କ ସଂଖ୍ୟା ହେଲା:— ବାଲେଶ୍ୱର ଜିଲ୍ଲାରେ ୯୧୯ ଜଣ, ବଲାଙ୍ଗୀର ଜିଲ୍ଲାରେ ୫,୯୨୦ ଜଣ, କଟକ ଜିଲ୍ଲାରେ ୫,୨୨୯ ଜଣ, ଢେଙ୍କାନାଳ ଜିଲ୍ଲାରେ ୧,୮୯୪ ଜଣ ଗଞ୍ଜାମ ଜିଲ୍ଲାରେ ୧,୬୫୬ ଜଣ, କଳାହାଣ୍ଡି ଜିଲ୍ଲାରେ ୩,୦୧୪ ଜଣ, କେନ୍ଦୁଝର ଜିଲ୍ଲାରେ ୧,୬୯୦ ଜଣ, କୋରାପୁଟ ଜିଲ୍ଲାରେ ୫,୮୩ ଜଣ, ମୟୂରଭଞ୍ଜ ଜିଲ୍ଲାରେ ୨,୩୭୫ ଜଣ, ଫୁଲବାଣୀ ଜିଲ୍ଲାରେ ୨,୬୬୫ ଜଣ, ପୁରୀ ଜିଲ୍ଲାରେ ୩,୩୪୮ ଜଣ, ସମ୍ବଲପୁର ଜିଲ୍ଲାରେ ୨,୯୩୮ ଜଣ, ଓ ସୁନ୍ଦରଗଡ଼ ଜିଲ୍ଲାରେ ୨,୦୩୭ ଜଣ ।

## ମରୁଡ଼ି ଇଲାକାରେ ଶ୍ରମଭିତ୍ତିକ କାର୍ଯ୍ୟ

ମରୁଡ଼ିଗ୍ରସ୍ତ ଅଞ୍ଚଳଗୁଡ଼ିକରେ ଶ୍ରମଭିତ୍ତିକ କାର୍ଯ୍ୟକ୍ରମ ମାଧ୍ୟମରେ ଗ୍ରାମାଞ୍ଚଳର ଶ୍ରମଜୀବୀମାନଙ୍କୁ କାମଧନ୍ଦା ଯୋଗାଇବା ଉପରେ ସରକାର ଅଧିକ ଗୁରୁତ୍ୱ ଆରୋପ କରୁଛନ୍ତି । ଏ ବାବଦରେ ଆଜିସୁଦ୍ଧା ୨ କୋଟି ୬୫ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି । ତନ୍ମଧ୍ୟରେ କଳାହାଣ୍ଡି ଜିଲ୍ଲାକୁ ସର୍ବାଧିକ ୯୫ ଲକ୍ଷ ଟଙ୍କା, କୋରାପୁଟ ଜିଲ୍ଲାକୁ ୪୯ ଲକ୍ଷ ଟଙ୍କା, ବଲାଙ୍ଗୀର ଜିଲ୍ଲାକୁ ୪୨ ଲକ୍ଷ ଟଙ୍କା, ଗଞ୍ଜାମ ଜିଲ୍ଲାକୁ ୨୫ ଲକ୍ଷ ଟଙ୍କା, ପୁରୀ ଜିଲ୍ଲାକୁ ୧୪ ଲକ୍ଷ ଟଙ୍କା, ସମ୍ବଲପୁର ଜିଲ୍ଲାକୁ ୧୫ ଲକ୍ଷ ଟଙ୍କା ବାଲେଶ୍ୱର, କଟକ, ଢେଙ୍କାନାଳ, କେନ୍ଦୁଝର, ଫୁଲବାଣୀ, ମୟୂରଭଞ୍ଜ, ଓ ସୁନ୍ଦରଗଡ଼ ଜିଲ୍ଲାକୁ ପ୍ରତ୍ୟେକ ୫ ଲକ୍ଷ ଟଙ୍କା ଲେଖାଏଁ ଦିଆଯାଇଛି ।

ଏହା ବ୍ୟତୀତ ଜିଲ୍ଲାପାଳମାନଙ୍କ ହାତରେ ଥିବା ଏନ୍:ଆର୍: ଇ: ପି: ଏବଂ ଆର: ଏଲ୍: ଇ: ଜି: ପି: ବାବଦ ଅର୍ଥକୁ ବିଭିନ୍ନ ଶ୍ରମଭିତ୍ତିକ କାର୍ଯ୍ୟରେ ବ୍ୟୟ କରି ଗ୍ରାମାଞ୍ଚଳରେ ଯଥେଷ୍ଟ ଶ୍ରମ ଦିବସ ସୃଷ୍ଟି କରାଯିବାକୁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଛି ।

## ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଜଳସେଚନ

ରାଜ୍ୟର ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଜଳସେଚନର ଅଧିକ ସୁବିଧା ସୃଷ୍ଟି କରିବା ପାଇଁ ସରକାର ବିଶେଷ ଗୁରୁତ୍ୱ ଦେଉଛନ୍ତି । ଜଳ ଅମଳ ପ୍ରକଳ୍ପ ନିର୍ମାଣ, ଅକାମୀ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଓ ଜଳସେଚନ ନିମିତ୍ତ ଉଦ୍ଦିଷ୍ଟ ପୁଷ୍କରିଣୀଗୁଡ଼ିକର ମରାମତି ତଥା ପୁନରୁଦ୍ଧାର, ଆଡ଼ିବନ୍ଧ ନିର୍ମାଣ, ଉଠା ଜଳସେଚନ ପଏଣ୍ଟଗୁଡ଼ିକୁ କାର୍ଯ୍ୟକ୍ଷମ କରିବା ଏବଂ ସେଚନାଳୀ ନିର୍ମାଣ ଇତ୍ୟାଦି ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ।

ପ୍ରଧାନମନ୍ତ୍ରୀଙ୍କ ବ୍ୟାପକ ସହାୟତା କାର୍ଯ୍ୟକ୍ରମ (ପି: ଏମ: ଏମ୍.ପି.) ରେ ଜିଲ୍ଲାପାଳମାନଙ୍କ ନିକଟରେ ଥିବା ୩ କୋଟି ୩୦ ଲକ୍ଷ ଟଙ୍କା ସମେତ ମରୁଡ଼ିପ୍ରବଣ ଅଞ୍ଚଳ କାର୍ଯ୍ୟକ୍ରମ (ଡ଼ି.ପି. ଏ. ପି.) ପ୍ରଭୃତି ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ଥିବା ବଳକା ଅର୍ଥକୁ ଜଳ ଅମଳ ପ୍ରକଳ୍ପ ନିର୍ମାଣରେ ବ୍ୟୟ କରାଯିବା ପାଇଁ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ପ୍ରବାହିତ ଜଳସ୍ରୋତକୁ ଆଡ଼ିବନ୍ଧ ନିର୍ମାଣ କରି ଜଳସେଚନ ନିମନ୍ତେ ତାହାର ସଦୁପଯୋଗ କରିବାକୁ ରାଜ୍ୟର ବିଭିନ୍ନ ଜିଲ୍ଲାକୁ ୧୮ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି ।

ଏହା ବ୍ୟତୀତ ଅଳ୍ପ ସମୟ ମଧ୍ୟରେ ଜଳସେଚନର ସୁବିଧା ଯୋଗାଇ ଦେବା ନିମନ୍ତେ ୧୦୦ଟି ଉଠା ଜଳସେଚନ ପଏଣ୍ଟ କାର୍ଯ୍ୟକାରୀ କରାଯିବ । ଏହାଛଡ଼ା, ୯୦୦ ଅକାମୀ ଉଠାଜଳସେଚନ ପଏଣ୍ଟକୁ କାର୍ଯ୍ୟକ୍ଷମ କରାଯିବା ସଙ୍ଗେ ସଙ୍ଗେ ୨ ହଜାର ପଏଣ୍ଟର ଜଳ ଯୋଗାଣ କ୍ଷମତା ବୃଦ୍ଧି କରାଯିବା ପାଇଁ ବିହିତ ପଦକ୍ଷେପ ନିଆଯାଇଛି । ଉଠା ଜଳସେଚନ ପଏଣ୍ଟରୁ ଜଳସେଚନ ପାଇଁ ସର୍ବନିମ୍ନ ୧୫ ଏକର 'ଆୟାକଟ୍' ରହିଥିବା କଟକଣାକୁ ଉଠାଇ ଦିଆଯାଇଛି ଓ ଅଳ୍ପ ଜମିରେ ଚାଷ କରିବାକୁ ସୁବିଧା ଥିଲେ, ଉଠା ଜଳସେଚନ ପଏଣ୍ଟରୁ ଜଳ ଯୋଗାଇ ଦେବା ପାଇଁ ସରକାର ନିର୍ଦ୍ଦେଶ ଦେଇଛନ୍ତି । ସେଚନାଳୀ ନିର୍ମାଣ କରିବା ପାଇଁ ଉଠା ଜଳସେଚନ ନିଗମକୁ ୨ କୋଟି ୫୦ ଲକ୍ଷ ଟଙ୍କା ଦିଆଯାଇଛି ଏବଂ ଜଳସେଚନ ପାଇଁ ବ୍ୟବହୃତ ହେଉଥିବା ଜଳ ଉପରେ ଶତକଡ଼ା ୫୦ ଭାଗ ଜଳକର ରିହାତି ଦିଆଯାଉଛି । ଉଠା ଜଳସେଚନ ପଏଣ୍ଟଗୁଡ଼ିକୁ ଦୈନିକ ୮ ଘଣ୍ଟାରୁ ୧୦ ଘଣ୍ଟା ପର୍ଯ୍ୟନ୍ତ ବିଦ୍ୟୁତ୍ ଯୋଗାଣ ଅବ୍ୟାହତ ରଖିବାକୁ ବ୍ୟବସ୍ଥା କରାଯାଇଛି ଏବଂ ତାର ଓ ଟ୍ରାନ୍ସଫର୍ମର ଚୋରି ଯୋଗୁଁ ଅଚଳ ହୋଇ ରହିଥିବା ପଏଣ୍ଟଗୁଡ଼ିକୁ ତୁରନ୍ତ ଚାଲୁ କରାଯିବା ନିମନ୍ତେ ନିର୍ଦ୍ଦେଶ ଦିଆଯାଇଛି ।

## ମରୁଡ଼ିଗ୍ରସ୍ତ ଅଞ୍ଚଳରେ ବିହନ ଯୋଗାଣ

ଆସନ୍ତା ରବି ଋତୁରେ ଅଧିକ ଜମିରେ ରବି ଫସଲ କରାଇ କ୍ଷତି ହୋଇଥିବା ଖରିଫ୍ ଫସଲର ଆଂଶିକ ଭରଣା କରାଯିବାର ବ୍ୟବସ୍ଥା ହୋଇଛି । ଏଥିପାଇଁ ବିହନ ଯୋଗାଣ କାର୍ଯ୍ୟକ୍ରମକୁ ଅଧିକ ତ୍ୱରାନ୍ୱିତ କରାଯାଉଛି ।

ବର୍ଷା ଅଭାବରୁ ଫସଲ ହୋଇନପାରି ପଡ଼ିଆ ପଡ଼ିଥିବା ଜମିରେ ଅଳ୍ପ ସମୟରେ ହୋଇପାରିବା ଫସଲ ନିମନ୍ତେ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ବିରି, ମୁଗ, ରାଶି, ଓ ଆଳସି ଆଦି ବିହନ ଓ ଡ଼ି. ପି. ଏ. ପି. ସାର ସମ୍ବଳିତ ୨ ଲକ୍ଷ ମିନିକିଟ୍ ଯୋଗାଇ ଦିଆଯିବାର ବ୍ୟବସ୍ଥା କରାଯାଇଛି । ଏହାଦ୍ୱାରା କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ଅଧଏକର ଜମିରେ ଅଣଧାନ ଫସଲ ଉତ୍ପାଦନ କରିବା ପାଇଁ ସକ୍ଷମ ହେବେ ଗତ ଅଗଷ୍ଟ ମାସ ଶେଷ ସୁଦ୍ଧା ଏହିପରି ୧ ଲକ୍ଷ ୫୩ ହଜାର ମିନିକିଟ୍ ଦିଆଯାଇଛି ।

ରବି ଋତୁ ପାଇଁ ଚାଷୀମାନଙ୍କୁ ୮ ହଜାର କ୍ୱିଣ୍ଟାଲ ଧାନ ବିହନ, ୧୩ ହଜାର ୫୦୦ କ୍ୱିଣ୍ଟାଲ ଗହମ, ୪ ହଜାର କ୍ୱିଣ୍ଟାଲ ମୁଗ ଓ ବିରି, ୨୫ ହଜାର କ୍ୱିଣ୍ଟାଲ ଚିନାବାଦାମ ଏବଂ ୮୦୦ କ୍ୱିଣ୍ଟାଲ ସୋରିଷ ବିହନ ଯୋଗାଇ ଦେବା ପାଇଁ ବ୍ୟବସ୍ଥା କରାଯାଇଛି ।

ଏହା ବ୍ୟତୀତ ରାଜ୍ୟ ସରକାର ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଅଳ୍ପଦିନ ସ୍ଥାୟୀ ଅନ୍ୟ ଫସଲ କରାଯିବା ନିମିତ୍ତ ଏକ କଣ୍ଟିଜେଣ୍ଟ ପ୍ଲାନ୍ ପ୍ରସ୍ତୁତ କରିଛନ୍ତି । ତଦନୁଯାୟୀ ବୁଣା ଅବସ୍ଥାରେ ଓ ତଳି ଅବସ୍ଥାରେ ନଷ୍ଟ ହୋଇଥିବା ଧାନ ଜମିରେ ବୁଣାଯିବା ନିମନ୍ତେ ୨ ହଜାର କ୍ୱିଣ୍ଟାଲ ଧାନ ବିହନ, ୨ ହଜାର ୫୦୦ କ୍ୱିଣ୍ଟାଲ ମୁଗ ବିହନ, ୧ ହଜାର ୯୦୦ କ୍ୱିଣ୍ଟାଲ ବିରି ଓ ୧୦୦ କ୍ୱିଣ୍ଟାଲ ହରଡ଼ ବିହନ ରିହାତି ଦରରେ କ୍ଷତିଗ୍ରସ୍ତ ଅଞ୍ଚଳରେ ଯୋଗାଇ ଦିଆଯାଇଛି ।

କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ରବି ଫସଲ ପାଇଁ ରିହାତି ଦରରେ ବିହନ, ସାର ଓ କୀଟନାଶକ ଔଷଧ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।

## ୬୬ କୋଟି ଟଙ୍କାର ଖଣିଜ ଦ୍ରବ୍ୟ ବିକ୍ରୀ

ଓଡ଼ିଶା ଖଣି ନିଗମର ଉଦ୍ୟମରେ ପୂର୍ବାପେକ୍ଷା ଗତ ୨ଟି ଆର୍ଥିକ ବର୍ଷ ମଧ୍ୟରେ ୬୬ କୋଟି ୩୯ ଲକ୍ଷ ୩୭ ହଜାର ଟଙ୍କା ମୂଲ୍ୟର ଲୁହା, କ୍ରୋମ୍ ଏବଂ ମାଙ୍ଗାନିଜ୍ ପଥର ବିକ୍ରୟ କରାଯାଇଛି ।

୧୯୮୫-୮୬ରେ ୧୦ ଲକ୍ଷ ୮୪ ହଜାର ଟନ୍ ଲୁହାପଥର ବିକ୍ରୟ କରାଯାଇ ୧୦ କୋଟି ୧୩ ଲକ୍ଷ ୫୬ ହଜାର ଟଙ୍କା ମିଳିଥିବା ସ୍ଥଳେ ଗତ ଆର୍ଥିକ ବର୍ଷରେ ବିକ୍ରୟ ଲବ୍ଧ ଅର୍ଥର ପରିମାଣ ୧୦ କୋଟି ୮୬ ଲକ୍ଷ ୯ ହଜାର ଟଙ୍କାକୁ ବୃଦ୍ଧି ପାଇଥିଲା । ଗତବର୍ଷ ୧୦ ଲକ୍ଷ ୬୪ ହଜାର ଟନ୍ ଲୁହାପଥର ବିକ୍ରୟ କରାଯାଇଥିଲା ।

୧୯୮୫-୮୬ରେ ୧ ଲକ୍ଷ ୮୮ ହଜାର ଟନ୍ କ୍ରୋମ ପଥର ବିକ୍ରୀ କରାଯାଇ ୨୦ କୋଟି ୨ ଲକ୍ଷ ୫୯ ହଜାର ଟଙ୍କା ମିଳିଥିଲା । ଗତ ଆର୍ଥିକ ବର୍ଷରେ ୨୨ କୋଟି ୯୦ ଲକ୍ଷ [illegible] ହଜାର ଟଙ୍କା ମୂଲ୍ୟର ୨ ଲକ୍ଷ ୩୩ ହଜାର ଟନ୍ କ୍ରୋମ ପଥର ବିକ୍ରୟ କରାଯାଇଥିଲା ।

ସେହିପରି ଗତ ଆର୍ଥିକ ବର୍ଷରେ ଓ. ଏମ୍. ସି. ୯୭ ହଜାର ଟନ୍ ମାଙ୍ଗାନିଜ୍ ପଥର ବିକ୍ରୟ କରି ୨ କୋଟି [illegible]୬ ଲକ୍ଷ ୧୪ ହଜାର ଟଙ୍କା ପାଇଥିଲେ । ୧୯୮୦-୮୧ରେ ମାତ୍ର ୧ କୋଟି ୫୦ ଲକ୍ଷ ୧୪ ହଜାର ଟଙ୍କା ମୂଲ୍ୟର ଏହି ପଥର ବିକ୍ରୀ କରାଯାଇଥିଲା ।

ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ, ଓଡ଼ିଶାରେ ଖଣି ରୟାଲଟି ଓ ସେସ୍ ବାବଦରେ ଆୟ ହେଉଥିବା ଅର୍ଥର ପରିମାଣ ମଧ୍ୟ ପୂର୍ବାପେକ୍ଷା ଯଥେଷ୍ଟ ବୃଦ୍ଧି ପାଉଛି । ୧୯୫୫ ଠାରୁ ୧୯୮୦ (୨୫ ବର୍ଷ) ମଧ୍ୟରେ ଏ ବାବଦରେ ସମୁଦାୟ ୫୫ କୋଟି ୯୬ ଲକ୍ଷ ଟଙ୍କା ଆଦାୟ ହୋଇଥିବା ସ୍ଥଳେ ଗତ ୭ ବର୍ଷ ମଧ୍ୟରେ ଆଦାୟର ପରିମାଣ ୧୦୫ କୋଟି ଟଙ୍କାକୁ ବୃଦ୍ଧି ପାଇଛି ।

## ଗୋଟି ଶ୍ରମିକଙ୍କ ଥଇଥାନ କାର୍ଯ୍ୟକ୍ରମ

ଚଳିତ ଆର୍ଥିକ ବର୍ଷରେ ଗୋଟି ଶ୍ରମିକଙ୍କ ଥଇଥାନ କାର୍ଯ୍ୟକ୍ରମ ଅନୁଯାୟୀ ଗତମାସ ଶେଷ ସୁଦ୍ଧା ରାଜ୍ୟରେ ୬୮ ଲକ୍ଷ ୫୪ ହଜାର ଟଙ୍କା ବ୍ୟୟ ହୋଇଛି । ଏହି ସମୟ ମଧ୍ୟରେ ବିଭିନ୍ନ ଜିଲ୍ଲାରେ ବ୍ୟୟ କରାଯାଇଥିବା ଅର୍ଥର ପରିମାଣ ହେଲା ବଲାଙ୍ଗୀର ଜିଲ୍ଲାରେ ୯ ଲକ୍ଷ ୮୧ ହଜାର ଟଙ୍କା, ଢେଙ୍କାନାଳ ଜିଲ୍ଲାରେ ୬ ଲକ୍ଷ ୧୨ ହଜାର ଟଙ୍କା, ଗଞ୍ଜାମ ଜିଲ୍ଲାରେ ୫ ଲକ୍ଷ ୭୦ ହଜାର ଟଙ୍କା, କଳାହାଣ୍ଡି ଜିଲ୍ଲାରେ ୯ ଲକ୍ଷ ୯୩ ହଜାର ଟଙ୍କା, କେନ୍ଦୁଝର ଜିଲ୍ଲାରେ ୨୩ ହଜାର ଟଙ୍କା, କୋରାପୁଟ ଜିଲ୍ଲାରେ ୩୪ ଲକ୍ଷ ୩୭ ହଜାର ଟଙ୍କା, ମୟୂରଭଞ୍ଜ ଜିଲ୍ଲାରେ ୪ ଲକ୍ଷ ୬୧ ହଜାର ଟଙ୍କା, ଫୁଲବାଣୀ ଜିଲ୍ଲାରେ ୩ ଲକ୍ଷ ୧୨ ହଜାର ଟଙ୍କା, ସମ୍ବଲପୁର ଜିଲ୍ଲାରେ ୧ ଲକ୍ଷ ୮୨ ହଜାର ଟଙ୍କା ଓ ସୁନ୍ଦରଗଡ ଜିଲ୍ଲାରେ ୧ ଲକ୍ଷ ୩୩ ହଜାର ଟଙ୍କା ।

ଏହା ଦ୍ୱାରା ମୋଟ ୧,୧୨୪ ଜଣ ଗୋଟିମୁକ୍ତ ଶ୍ରମିକଙ୍କୁ ଥଇଥାନ କରାଯାଇଛି । ସେମାନଙ୍କ ମଧ୍ୟରେ ୨୧୧ ଜଣ ତଫସିଲଭୁକ୍ତ ଜାତି ଓ ୬୨୬ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ ।

ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ, ଏମାନଙ୍କୁ ମିଶାଇ ଗୋଟି ଶ୍ରମିକଙ୍କ ଥଇଥାନ ଯୋଜନା ଆରମ୍ଭରୁ ଗତମାସ ଶେଷ ସୁଦ୍ଧା ରାଜ୍ୟରେ ୧୦ ହଜାର ୮୯୭ ଜଣ ତଫସିଲଭୁକ୍ତ ଜାତି ଓ ୧୩ ହଜାର ୮୬୩ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକଙ୍କ ସମେତ ମୋଟ ୩୮ ହଜାର ୧୦୮ ଜଣ ଗୋଟିମୁକ୍ତ ଶ୍ରମିକଙ୍କୁ ଥଇଥାନ କରାଗଲାଣି ।

## ମରୁଡ଼ି ଇଲାକାରେ ଜଳ ସନ୍ଧାନ

ସାଂପ୍ରତିକ ଗୁରୁତର ମରୁଡ଼ିଜନିତ ପରିସ୍ଥିତିରେ ଜଳାଭାବ ପରିଲକ୍ଷିତ ହେଉଥିବା ଦୃଷ୍ଟିରୁ କେତେକ ମରୁଡ଼ିଗ୍ରସ୍ତ ଗ୍ରାମରେ ଭୂତଳ ଜଳ ପ୍ରବାହ ସମ୍ପର୍କରେ ବ୍ୟାପକ ସର୍ଭେ ଓ ଅନୁସନ୍ଧାନ କରିବାକୁ ମୁଖ୍ୟ ଶାସନ ସଚିବ ତଥା ଉନ୍ନୟନ କମିଶନର ଶ୍ରୀ ନଳିନୀକାନ୍ତ ପଣ୍ଡା ଭୂତତ୍ତ୍ୱବିତ୍‌ମାନଙ୍କୁ ପରାମର୍ଶ ଦେଇଛନ୍ତି ।

ଗତକାଲି ଏଠାରେ ଅନୁଷ୍ଠିତ ଖଣି ଓ ଭୂତତ୍ତ୍ୱ ବିଭାଗର ଭୂତାତ୍ତ୍ୱିକ ସର୍ଭେ ତଥା ଅନୁସନ୍ଧାନ ସଂସ୍ଥା ଅଫିସରମାନଙ୍କ ସମ୍ମିଳନୀ ଉଦ୍‌ଘାଟନ କରି ଶ୍ରୀ ପଣ୍ଡା ଖଣିଜ ଦ୍ରବ୍ୟଗୁଡ଼ିକର ବିଶେଷତଃ ଭୂତଳ ଜଳ ସମ୍ପଦର ସର୍ଭେ ଓ ଅନୁସନ୍ଧାନ କରିବା ଲାଗି ଅତ୍ୟାଧୁନିକ ବୈଷୟିକ କୌଶଳ ପ୍ରୟୋଗ କରିବା ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ଚଳିତ ବର୍ଷ ମଧ୍ୟରେ କେତେକ ମରୁଡ଼ିଗ୍ରସ୍ତ ଅଞ୍ଚଳର ଭୂଗର୍ଭରେ କେତେ ଜଳ ସମ୍ପଦ ସଞ୍ଚିତ ରହିଛି, ସେ ସମ୍ପର୍କରେ ସବିଶେଷ ଅନୁଧ୍ୟାନ କରିବା ପାଇଁ ଖଣି ନିର୍ଦ୍ଦେଶାଳୟ ଉଦ୍ୟମ କରିବେ ବୋଲି ଏହି ବୈଠକରେ ନିଷ୍ପତ୍ତି କରାଯାଇଛି । ଏଥିପାଇଁ ପ୍ରଥମ ପର୍ଯ୍ୟାୟରେ କଳାହାଣ୍ଡି, ବଲାଙ୍ଗୀର ଓ ସମ୍ବଲପୁର ଜିଲ୍ଲାରେ ତିନୋଟି ରିଗ୍ ମେସିନ ବ୍ୟବହାର କରାଯିବ । ଏପରିକି

ପୂର୍ବରୁ ରାଜ୍ୟ ଭୂତାତ୍ତ୍ୱିକ କାର୍ଯ୍ୟକାରୀ ବୋର୍ଡଙ୍କ ଦ୍ୱାରା ଖଣିଜ ସମ୍ପଦ ଅନୁସନ୍ଧାନ ପାଇଁ ଯେଉଁ ସବୁ କାର୍ଯ୍ୟକ୍ରମ ଅନୁମୋଦିତ ହୋଇଥିଲା, ତନ୍ମଧ୍ୟରୁ କେତେକ କାର୍ଯ୍ୟକ୍ରମକୁ ବାତିଲ କରିବାକୁ ମଧ୍ୟ ଏହି ବୈଠକରେ ନିଷ୍ପତ୍ତି କରାଯାଇଛି ।

ବିଭାଗୀୟ ଶାସନ ସଚିବ ଶ୍ରୀ ଅମୂଲ୍ୟ ରତ୍ନ ନନ୍ଦ, ବୈଠକରେ ଉଦ୍‌ବୋଧନ ଦେଇ ଖଣି ନର୍ଦ୍ଦେଶାଳୟ କାର୍ଯ୍ୟାବଳୀର ବିକେନ୍ଦ୍ରୀକରଣ କରିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ବିଭିନ୍ନ ଅନୁସନ୍ଧାନ ଉପରେ ତୁରନ୍ତ ବିବରଣୀ ପ୍ରସ୍ତୁତ କରିବା ଓ ସେଗୁଡ଼ିକୁ ଚୂଡ଼ାନ୍ତ କରିବା ଜରୁରୀ ବୋଲି ମତ ବ୍ୟକ୍ତକରି ଶ୍ରୀ ନନ୍ଦ କହିଲେ ଯେ, ଏତଦ୍ୱାରା ରାଜ୍ୟରେ ଖଣିଭିତ୍ତିକ ଶିଳ୍ପ କାରଖାନା ନିର୍ମାଣ କରିବାକୁ ଇଚ୍ଛୁକ ଥିବା ସରକାରୀ ଉଦ୍ୟୋଗ ଓ ଅନ୍ୟ ଶିଳ୍ପୋଦ୍ୟୋଗୀମାନେ ସେହିସବୁ ବିବରଣୀର ସଦୁପଯୋଗ କରିପାରିବେ ।

ଆଲୋଚନାରେ ଅଂଶ ଗ୍ରହଣ କରି ବିଭାଗୀୟ ବିଶେଷଜ୍ଞମାନେ ଭୂତଳ ଗଚ୍ଛିତ କୋଇଲା, ଚୂନ ପଥର, ମ୍ୟାଙ୍ଗାନିଜ୍ ପଥର ଏବଂ ବେଳାଭୂମି ବାଲୁକା ଗର୍ଭସ୍ଥ ମୂଲ୍ୟବାନ ଧାତବ ପଦାର୍ଥ ଇତ୍ୟାଦି ସମ୍ପର୍କରେ କରାଯାଇଥିବା ଅନୁସନ୍ଧାନ ଉପରେ ବିବରଣୀମାନ ପାଠ କରିଥିଲେ । ଆଲୋଚନା ପ୍ରସଙ୍ଗରେ ସେମାନେ କାର୍ଯ୍ୟ କ୍ଷେତ୍ରରେ ଓ ଗବେଷଣାଗାରରେ ଉନ୍ନତ ଯନ୍ତ୍ରପାତି, 'ଫିଲଡ୍ କିଟ୍', ବାସଗୃହ ଓ ଚିକିତ୍ସା ସୁବିଧା ଇତ୍ୟାଦି ଯୋଗାଇ ଦେବାପାଇଁ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ରାଜ୍ୟର କେଉଁ ଅଞ୍ଚଳରେ କେତେ ପରିମାଣର ଏବଂ କେଉଁ କିଶମର ଧାତବ ପଦାର୍ଥ ଗଚ୍ଛିତ ରହିଛି, ସେ ସମ୍ପର୍କରେ ସଂଗୃହୀତ ହୋଇଥିବା ତଥ୍ୟାବଳୀକୁ ଏକତ୍ର ସଂରକ୍ଷଣ କରିବା ଲାଗି ଏକ ସ୍ୱତନ୍ତ୍ର ବୈଷୟିକ ଶାଖା ଖୋଲିବା ଉପରେ ମଧ୍ୟ ବୈଠକରେ ମତ ପ୍ରକାଶ ପାଇଥିଲା ।

## ଆଇ. ଆର. ଡି. ସାଫଲ୍ୟ

ଚଳିତ ଆର୍ଥିକ ବର୍ଷରେ ଗତମାସ ସୁଦ୍ଧା ଆଇ. ଆର. ଡି. କାର୍ଯ୍ୟକ୍ରମ ଦ୍ୱାରା ମୟୂରଭଞ୍ଜ ଜିଲ୍ଲାରେ ଉଭୟ ନୂତନ ଓ ପୁରାତନ ହିତାଧୀକାରୀମାନଙ୍କୁ ମିଶାଇ ୧୧୫ ଜଣ ମହିଳାଙ୍କ ସମେତ ମୋଟ ୩,୦୭୫ ଜଣ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୨୮୪ ଜଣ ତଫସିଲଭୁକ୍ତ ଜାତି, ୧,୭୫୭ ଜଣ ତଫସିଲଭୁକ୍ତ ସମ୍ପ୍ରଦାୟର ଲୋକ ଅନ୍ତର୍ଭୁକ୍ତ ।

ଉପକୃତ ହୋଇଥିବା ଉପରୋକ୍ତ ହିତାଧିକାରୀମାନଙ୍କ ମଧ୍ୟରୁ ୨୨ ଜଣ ହସ୍ତତନ୍ତ ବୁଣାକାର, ୬୮ ଜଣ ଦରଜୀ ଦୋକାନୀ, ୧,୮୫୯ ଜଣ କ୍ଷୁଦ୍ର ଦୋକାନୀ, ୪୨ ଜଣ ବଳଦ କିଣି ଓ ୧,୦୮୪ ଜଣ ଅନ୍ୟାନ୍ୟ ଆୟକାରୀ କାର୍ଯ୍ୟକ୍ରମ ଋଣ ନେଇଛନ୍ତି । ଏ ସମସ୍ତ କାର୍ଯ୍ୟକ୍ରମ ଲାଗି ହିତାଧିକାରୀମାନଙ୍କୁ ସମବାୟ ଓ ବ୍ୟବସାୟୀକ ବ୍ୟାଙ୍କଗୁଡ଼ିକରୁ ମୋଟ ୩୭ ଲକ୍ଷ ୯୨ ହଜାର ଟଙ୍କାର ଋଣ ଦିଆଯାଇଛି । ଏ ବାବଦରେ ଡି. ଆର. ଡି. ଏ. ସଂସ୍ଥାଦ୍ୱାରା ମୋଟ ୩୭ ଲକ୍ଷ ୩୪ ହଜାର ଟଙ୍କା ଖର୍ଚ୍ଚ ହୋଇଛି । ସେଥିରୁ ହିତାଧିକାରୀମାନଙ୍କ ସବ୍‌ସିଡ଼ି ବାବଦରେ ମୋଟ ୨୮ ଲକ୍ଷ ୨୦ ହଜାର ଟଙ୍କା ବ୍ୟୟ ହୋଇଛି ।

## ମରୁଡ଼ି ପରିସ୍ଥିତିର ମୁକାବିଲା

ଚଳିତ ବର୍ଷର ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ରାଜ୍ୟ ସରକାର ବିଭିନ୍ନ ଯୋଜନାବଦ୍ଧ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ତନ୍ମଧ୍ୟରେ କେତେକ ପ୍ରଶାସନିକ ପଦକ୍ଷେପ ଅନ୍ତର୍ଭୁକ୍ତ । ମରୁଡ଼ି ପରିସ୍ଥିତିର ପ୍ରତିକାର ପାଇଁ ଗ୍ରହଣ କରାଯାଇଥିବା ବିଭିନ୍ନ ପଦକ୍ଷେପର ସଫଳ ରୂପାୟନ ତଥା ଏଥିପାଇଁ ଉପୁଜୁଥିବା ବିଭିନ୍ନ ସମସ୍ୟାର ସମାଧାନ ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଏକ ମନ୍ତ୍ରୀମଣ୍ଡଳୀୟ ସବ୍-କମିଟି ଗଠନ କରାଯାଇଛି । ଏହି ସବ୍-କମିଟିର ଶିକ୍ଷା ମନ୍ତ୍ରୀ, ରାଜସ୍ୱ ମନ୍ତ୍ରୀ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ତଥା ଶିଳ୍ପ ମନ୍ତ୍ରୀ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ, ହରିଜନ ଆଦିବାସୀ ମଙ୍ଗଳ ତଥା କୃଷି ବିଭାଗ ମନ୍ତ୍ରୀ, ଗୃହ ଓ ନଗର ଉନ୍ନୟନ ମନ୍ତ୍ରୀ ଏବଂ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ମନ୍ତ୍ରୀ ସଭ୍ୟ ଅଛନ୍ତି । ଏହି ସବ୍-କମିଟି ସାଂପ୍ରତିକ ମରୁଡ଼ି ପରିସ୍ଥିତିର ପୁନଃ ପୁନଃ ପର୍ଯ୍ୟାଲୋଚନା କରିବା ସଙ୍ଗେ ସଙ୍ଗେ ଅଣୁ ନିଷ୍ପତ୍ତି ମଧ୍ୟ ଗ୍ରହଣ କରୁଛନ୍ତି ।

ଏହା ବ୍ୟତୀତ ମରୁଡ଼ି ପ୍ରତିକାର କାର୍ଯ୍ୟକ୍ରମ ତ୍ୱରାନ୍ୱିତ ଓ ଶୃଙ୍ଖଳିତ କରିବା ସଙ୍ଗେ ସଙ୍ଗେ ଶାସନଗତ ସମନ୍ୱୟ ପ୍ରତିଷ୍ଠା ନିମନ୍ତେ ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡାଙ୍କ ଅଧ୍ୟକ୍ଷତାରେ ବିଭାଗୀୟ ବରିଷ୍ଠ କର୍ମକର୍ତ୍ତାଙ୍କୁ ନେଇ ଏକ 'ଟାସ୍‌ଫୋର୍ସ' ଗଠନ କରାଯାଇଛି ।

ରାଜ୍ୟ ଓ ଜିଲ୍ଲା ସ୍ତରରେ ଗଠିତ ହୋଇଥିବା ପ୍ରାକୃତିକ ବିପର୍ଯ୍ୟୟ କମିଟିଗୁଡ଼ିକରେ ସରକାରୀ ଓ ବେସରକାରୀ ସଭ୍ୟଙ୍କ ସମେତ ବିଧାୟକ ଓ ସଂସଦ ସଭ୍ୟମାନେ ସଭ୍ୟ ରହିଛନ୍ତି । ବିଭିନ୍ନ ଅଞ୍ଚଳର ମରୁଡ଼ି ସାହାଯ୍ୟ ପାଇଁ ସେମାନେ ପରାମର୍ଶ ଦେଉଛନ୍ତି ।

ବ୍ଲକ୍ ସ୍ତରରେ ମରୁଡ଼ି ପରିସ୍ଥିତି ଓ ସାହାଯ୍ୟ କାର୍ଯ୍ୟକ୍ରମର ସମୀକ୍ଷା କରିବା ପାଇଁ ପର୍ଯ୍ୟବେକ୍ଷଣ କମିଟିମାନ ଗଠନ କରାଯିବା ପାଇଁ ବ୍ୟବସ୍ଥା ହେଉଛି ।

ଏହା ବ୍ୟତୀତ ରାଜସ୍ୱ ବିଭାଗରେ ଏକ କଂଟ୍ରୋଲ ରୁମ୍ ଦିନରାତି କାର୍ଯ୍ୟ କରୁଛି ଏବଂ ଅନୁରୂପ କଂଟ୍ରୋଲ ରୁମ୍ ମଧ୍ୟ ଜିଲ୍ଲା ସ୍ତରରେ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ କାର୍ଯ୍ୟ କରୁଛି ବୋଲି ଜଣାପଡ଼ିଛି ।

## ଗଞ୍ଜାମ ଜିଲ୍ଲାରେ ଆଇ. ଆର. ଡି.

ଚଳିତ ଆର୍ଥିକ ବର୍ଷର ଜୁଲାଇ ସୁଦ୍ଧା ଆଇ: ଆର: ଡି କାର୍ଯ୍ୟକ୍ରମଦ୍ୱାରା ଗଂଜାମ ଜିଲ୍ଲାରେ ମୋଟ୍ ୩,୮୫୩ ଜଣ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୧୫୪ ଜଣ ଗ୍ରାମ୍ୟ ଶିଳ୍ପ କାରିଗର, ୪୧ ଜଣ ହସ୍ତତନ୍ତ ବୁଣାକାର ଓ ୮୯ ଜଣ ଅନ୍ୟାନ୍ୟ କୁଟୀର ଶିଳ୍ପ କାରିଗର ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ୫୮ ଜଣ ଦରଜୀ ଦୋକାନୀ, ୭୧୮ ଜଣ କ୍ଷୁଦ୍ର ଦୋକାନୀ, ୯୩୮ ଜଣ ବଳଦ କିଣି ଓ ୧୦୨ ଜଣ ଅନ୍ୟାନ୍ୟ ଧଂଦା କରି ଉପକୃତ ହୋଇଛନ୍ତି ।

## ବଲାଙ୍ଗୀରରେ ବୋଧା ଶ୍ରମିକଙ୍କ ଥଇଥାନ

ଚଳିତ ଆର୍ଥିକ ବର୍ଷର ଗତମାସ ସୁଦ୍ଧା 'ବଲାଙ୍ଗୀର ଜିଲ୍ଲାରେ ୧୩୯ ଜଣ ଗୋତିମୁକ୍ତ ଶ୍ରମିକଙ୍କୁ ଥଇଥାନ କରାଯାଇଛି । ସେମାନଙ୍କ ମଧ୍ୟରେ ୪୫ ଜଣ ତଫସିଲଭୁକ୍ତ ଜାତି ଓ ୪୬ ଜଣ ତଫସିଲଭୁକ୍ତ ସମ୍ପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ସେମାନଙ୍କର ଥଇଥାନ ବାବଦରେ ୯ ଲକ୍ଷ ୮୧ ହଜାର ଟଙ୍କା ବ୍ୟୟ କରାଯାଇଛି ।

ରାଜ୍ୟରେ ଗୋତି ଶ୍ରମିକଙ୍କ ଥଇଥାନ ଯୋଜନା ଆରମ୍ଭରୁ ଗତମାସ ସୁଦ୍ଧା ଜିଲ୍ଲାରେ ୨,୩୮୯ ଜଣ ତଫସିଲଭୁକ୍ତ ଜାତି ଓ ୧,୮୩୧ ଜଣ ତଫସିଲଭୁକ୍ତ ସମ୍ପ୍ରଦାୟର ଲୋକଙ୍କ ସମେତ ଚିହ୍ନଟ ହୋଇଥିବା ସମସ୍ତ ୬,୭୫୫ ଜଣ ଶ୍ରମିକଙ୍କୁ ଗୋତିମୁକ୍ତ କରାଯାଇ ସେମାନଙ୍କ ମଧ୍ୟରୁ ୫,୯୨୦ ଜଣଙ୍କୁ ଥଇଥାନ କରାଗଲାଣି । ଏ ବାବଦରେ ୧ କୋଟି ୮୬ ଲକ୍ଷ ୫୮ ହଜାର ଟଙ୍କା ବ୍ୟୟ କରାଯାଇଛି ।

## ମରୁଡ଼ିଲାଗି ବ୍ୟୟ ସଙ୍କୋଚ ବ୍ୟବସ୍ଥା

ରାଜ୍ୟରେ ସମ୍ପ୍ରତି ଦେଖା ଦେଇଥିବା ମରୁଡ଼ି ପରିସ୍ଥିତି ଦୃଷ୍ଟିରୁ ସବୁ କ୍ଷେତ୍ରରେ ମିତବ୍ୟୟିତା ଓ ବ୍ୟୟ ସଙ୍କୋଚ ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି । ମରୁଡ଼ି ପ୍ରତିକାର ପାଇଁ ଓ ସାହାଯ୍ୟ କାର୍ଯ୍ୟକ୍ରମ ପାଇଁ ଅଧିକ ଅର୍ଥ ଆବଶ୍ୟକ ପଡୁଥିବାରୁ ରାଜ୍ୟ ସରକାର ସବୁ ପ୍ରକାର ଅଦରକାରୀ ବ୍ୟୟ ବାତିଲ କରି ଦେଇଛନ୍ତି ଓ ଅର୍ଥ ବରାଦର ଶତକଡ଼ା ୫ ଭାଗ ବ୍ୟୟ ସଙ୍କୋଚ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ରାଜ୍ୟ ସରକାରଙ୍କ ପକ୍ଷରୁ କୌଣସି ମଧ୍ୟାହ୍ନ ଭୋଜନ ବା ରାତ୍ରି ଭୋଜନର ବ୍ୟବସ୍ଥା କରାଯିବ ନାହିଁ ବୋଲି ମଧ୍ୟ ନିର୍ଦ୍ଦେଶ ଦିଆଯାଇଛି ।

## ରାଇରଙ୍ଗପୁରରେ ରାସ୍ତାଘାଟ ଉନ୍ନୟନ

ରାଇରଙ୍ଗପୁର ଡ଼ିଭିଜନରେ ୯ଟି ରାସ୍ତାର ଉନ୍ନୟନ ଏବଂ ୩ଟି ସେତୁର ନିର୍ମାଣ ବାବଦରେ ଚଳିତ ଆର୍ଥିକ ବର୍ଷ ୪୨ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି । ତନ୍ମଧ୍ୟରେ ବାରିପଦା-ବଡ଼ପାହାଡ଼ି-ମାଣିଆ ରାସ୍ତାରେ ଥିବା ଏକ ପୁରୁଣା କାଠପୋଲ ସ୍ଥାନରେ ଏକ ନୂଆ କଂକ୍ରୀଟ ସେତୁର ନିର୍ମାଣ ପାଇଁ ୧୦ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି । ସେହିପରି ବହଲଡ଼ା ରାସ୍ତାରେ ଖଡ଼କେଇ ନଦୀରେ ଏକ ସେତୁ ନିର୍ମାଣ ପାଇଁ ୧୦ ଲକ୍ଷ ଟଙ୍କା ଏବଂ କରଞ୍ଜିଆ-ଠାକୁରମୁଣ୍ଡା ରାସ୍ତାରେ ତେଲ ସେତୁର ନିର୍ମାଣ ପାଇଁ ୫ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି ।

ଏହା ବ୍ୟତୀତ ବାରିପଦା ବାମନଘାଟ ରାସ୍ତାର ରାଇରଙ୍ଗପୁରଠାରୁ ତିରିଂଗ ସୀମା ପର୍ଯ୍ୟନ୍ତ ରାସ୍ତା, ସୋରେଇପାଟ-ବାମପାହାଡ଼ ରାସ୍ତା ଏବଂ ଉଦଳ ମାଣିଆ ବାରିପଦା ରାସ୍ତାର ଉନ୍ନୟନ ବାବଦରେ ୧ ଲକ୍ଷ ଟଙ୍କା ଲେଖାଏଁ ୩ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି । ଅନ୍ୟ ୪ଟି ରାସ୍ତାର ଉନ୍ନୟନ ପାଇଁ ୨ ଲକ୍ଷ ଟଙ୍କା ଲେଖାଏଁ ୮ ଲକ୍ଷ ଟଙ୍କା ଏବଂ ରାଇରଙ୍ଗପୁର-ବାଣିପୁର ରାସ୍ତା ଓ ଠାକୁରମୁଣ୍ଡା-କରଞ୍ଜିଆ ରାସ୍ତାପାଇଁ ୩ ଲକ୍ଷ ଟଙ୍କା ଲେଖାଏଁ ୬ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି ।

ଏହି ସମୟ ମଧ୍ୟରେ ଆର:ଆର:ଡି: କାର୍ଯ୍ୟକ୍ରମ ଦ୍ୱାରା ଜିଲ୍ଲାରେ ହିତାଧିକାରୀମାନଙ୍କୁ ସମବାୟ ଓ ବ୍ୟବସାୟିକ ବ୍ୟାଙ୍କଗୁଡ଼ିକରୁ ୬୯ ଲକ୍ଷ ୮୬ ହଜାର ଟଙ୍କାର ଋଣ ଦିଆଯାଇଛି । ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଦ୍ୱାରା ୫୬ ଲକ୍ଷ ୨୬ ହଜାର ଟଙ୍କା ବ୍ୟୟ ହୋଇଛି । ସେଥିରୁ ହିତାଧିକାରୀମାନଙ୍କ ସବ୍‌ସିଡି ବାବଦରେ ୪୧ ଲକ୍ଷ ୪୨ ହଜାର ଟଙ୍କା ବ୍ୟୟ ହୋଇଛି ।

## ପରିବେଶ ସୁରକ୍ଷା

ଆସନ୍ତା ନଭେମ୍ବର ୧୯ ତାରିଖଠାରୁ ଡିସେମ୍ବର ୧୮ ତାରିଖ ପର୍ଯ୍ୟନ୍ତ ସାରା ଦେଶରେ ପରିବେଶ ସୁରକ୍ଷା ଲାଗି ଏକମାସ ବ୍ୟାପୀ ଗଣ ଚେତନା ସୃଷ୍ଟି କରିବାକୁ ବ୍ୟାପକ ଅଭିଯାନ କରାଯିବ । ଚଳିତ ବର୍ଷପାଇଁ ଏହି ଅଭିଯାନର ବିଷୟବସ୍ତୁ ହେବ, "ବନ୍ୟା ଓ ମରୁଡ଼ି ଉପରେ ଅବକ୍ଷୟିତ ପରିବେଶର ପ୍ରଭାବ" । ଏହି ଅଭିଯାନର ସଫଳ ରୂପାୟନ ପାଇଁ ରାଜ୍ୟ ବିଜ୍ଞାନ, ବୈଷୟିକ ଓ ପରିବେଶ ବିଭାଗ ତରଫରୁ ବ୍ୟାପକ ପ୍ରସ୍ତୁତି ଚାଲିଛି । ସରକାରୀ ସଂସ୍ଥା, ପରିବେଶ ସମିତି, ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏବଂ ଶିକ୍ଷାନୁଷ୍ଠାନଗୁଡ଼ିକ ଦ୍ୱାରା ଯଥାଯଥ ଭାବେ ଏହି ଅଭିଯାନର ଆୟୋଜନ କରିବାକୁ ବିଭାଗ ପକ୍ଷରୁ ଅନୁରୋଧ କରାଯାଇଛି ।

ଅନାବୃଷ୍ଟି ଓ ସ୍ୱଳ୍ପବୃଷ୍ଟିଜନିତ ଯେଉଁ ଭୟାବହ ମରୁଡ଼ିର କରାଳଛାୟା ଆଜି ସମଗ୍ର ଦେଶକୁ ଗ୍ରାସ କରିଛି, ଏହା ଯେ କେବଳ ଦେବରାଜ ଇନ୍ଦ୍ରଙ୍କ କୋପର ପରିପ୍ରକାଶ ତା' ନୁହେଁ ବରଂ ଅନେକାଂଶରେ ମନୁଷ୍ୟକୃତ । ପ୍ରତିବର୍ଷ ଦେଶରେ କୌଣସି ନା କୌଣସି ଅଞ୍ଚଳ ଏକ ପକ୍ଷରେ ଅତିବୃଷ୍ଟି ହେତୁ ଯେଉଁ ପ୍ରଳୟଙ୍କାରୀ ବନ୍ୟା ଓ ଅପର ପକ୍ଷରେ ଅନାବୃଷ୍ଟି ଯୋଗୁଁ ଭୟଙ୍କର ମରୁଡ଼ିର ସମ୍ମୁଖୀନ ହେଉଛି, ସେଥିପାଇଁ ମନୁଷ୍ୟ ସମାଜ ହିଁ ଦାୟୀ । ଏହାର ମୁଖ୍ୟ କାରଣ ହେଉଛି, ନିର୍ବିଘ୍ନରେ ଜଙ୍ଗଲକୁ ଧ୍ୱଂସ କରି ଚାଲିବା ଓ ସୁପରିବେଶକୁ ନଷ୍ଟ କରିବା । ବହୁଳଭାବେ ଜଙ୍ଗଲ ନଷ୍ଟ ଓ ତତ୍‌ଜନିତ ମୃତ୍ତିକା କ୍ଷୟ ଯୋଗୁଁ ପ୍ରାକୃତିକ ଭାରସାମ୍ୟ ନଷ୍ଟ ହେଉଛି । ଏହାର କୁପରିଣାମ ସ୍ୱରୂପ ଜଳବାୟୁ ତଥା ମୌସୁମୀ ପ୍ରବାହ ଅନିୟମିତ ହେଉଛି । ସମଗ୍ର ପ୍ରାଣୀ ଜଗତ ପ୍ରତି ଏହା ଏକ ବିରାଟ ବିପଦ । ଏଠାରେ ସ୍ମରଣ କରାଇଦିଆଯାଇ ପାରେ ଯେ ବିଗତ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ କେନ୍ଦ୍ର ସରକାର ରାଜ୍ୟଗୁଡ଼ିକୁ ବନ୍ୟା ଓ ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ଯେତେ ପରିମାଣର ଆର୍ଥିକ ସାହାଯ୍ୟ ଦେଇଥିଲେ, ଚଳିତ ସପ୍ତମ ପଞ୍ଚବାର୍ଷିକ ଯୋଜନାର ପ୍ରଥମ ଦୁଇବର୍ଷ ମଧ୍ୟରେ ଏଥିଲାଗି ଦିଆଯାଇଥିବା କେନ୍ଦ୍ରୀୟ ସାହାଯ୍ୟର ପରିମାଣ ଅଧିକ । ତେଣୁ ଜଙ୍ଗଲ ସୁରକ୍ଷା, ମୃତ୍ତିକା ସଂରକ୍ଷଣ, ଜଳ ଓ ବାୟୁକୁ ପ୍ରଦୂଷଣମୁକ୍ତ ରଖିବାକୁ ପଡ଼ିବ । ଏତଦ୍ୱାରା ପ୍ରାକୃତିକ ଭାରସାମ୍ୟ ଓ ପରିବେଶର ସୁରକ୍ଷା ସୁଗମ ହୋଇପାରିବ ।

## ବୋଧା ଶ୍ରମିକ ଥଇଥାନ

ଚଳିତ ଆର୍ଥିକ ବର୍ଷରେ ଗତମାସ ସୁଦ୍ଧା ଢେଙ୍କାନାଳ ଜିଲ୍ଲାରେ ୫ଲକ୍ଷ ୧୮ ହଜାର ଟଙ୍କା ବ୍ୟୟରେ ଗୋତିମୁକ୍ତ ୭୫ଜଣ ଶ୍ରମିକଙ୍କୁ ଥଇଥାନ କରାଯାଇଛି । ଏମାନଙ୍କୁ ମିଶାଇ

ରାଜ୍ୟରେ ଗୋତି ଶ୍ରମିକଙ୍କ ଥଇଥାନ ଯୋଜନା ଆରମ୍ଭ ହେବା ଦିନଠାରୁ ଜିଲ୍ଲାରେ ୪୯ ଲକ୍ଷ ୭୧ ହଜାର ଟଙ୍କା ବିନିଯୋଗରେ ୧,୩୬୯ ଜଣ ଗୋତିମୁକ୍ତ ଶ୍ରମିକଙ୍କୁ ଥଇଥାନ କରାଯାଇଛି । ଏ ମଧ୍ୟରେ ୪୦୯ ଜଣ ତପସିଲଭୁକ୍ତ ଜାତି ଓ ୪୬୯ ଜଣ ତପସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ ।

## ଅଣୁ ପରଯୋଜନା ଅଞ୍ଚଳରେ ମରୁଡ଼ି ପରସ୍ଥିତର ମୁକାବଲା

ସାଂପ୍ରତିକ ମରୁଡ଼ିଜନିତ ପରିସ୍ଥିତି ଦୃଷ୍ଟିରୁ ରାଜ୍ୟର ବଣ ପାହାଡ଼ ଘେରା ଦୁର୍ଗମ ଅଂଚଳରେ ବସବାସ କରୁଥିବା ଆଦିମ ଅଧିବାସୀମାନଙ୍କର ସ୍ୱାସ୍ଥ୍ୟ, ପାନୀୟଜଳ ଓ ଖାଦ୍ୟ ସମସ୍ୟା ଦୂରୀକରଣ ପାଇଁ ହରିଜନ ଓ ଆଦିବାସୀ କଲ୍ୟାଣ ବିଭାଗ ପକ୍ଷରୁ କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ରୂପାୟନ କରିବାକୁ ଅଣୁ ପରିଯୋଜନାର ସ୍ୱତନ୍ତ୍ର ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

ଓଡିଶାରେ ଜୁଆଂଗ, ବଣ୍ଡା, କନ୍ଧ, ସଉରା, ମାଂକିଡିଆ ପ୍ରଭୃତି ୧୨ଟି ଆଦିମ ଅଧିବାସୀଙ୍କ ଆର୍ଥିକ ଓ ସାମାଜିକ ଉନ୍ନତି କଳ୍ପେ କାର୍ଯ୍ୟକାରୀ ହେଉଥିବା ଅଣୁ ପରିଯୋଜନାର ସ୍ୱତନ୍ତ୍ର ଅଧିକାରୀ ଓ ତାଂକର ସହକର୍ମୀମାନଙ୍କୁ ବିଭିନ୍ନ ବିଭାଗର କ୍ଷେତ୍ର କର୍ମଚାରୀ, ବି.ଡି.ଓ. ଓ ଏସ୍.ଡି.ଓ.ଙ୍କ ସହିତ ସମନ୍ୱୟ ସ୍ଥାପନ କରି ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟ କରିବାକୁ ନିର୍ଦ୍ଦେଶନାମାରେ କୁହାଯାଇଛି ।

ଅଣୁ ପରିଯୋଜନା ଅଞ୍ଚଳର ପ୍ରତି ଗ୍ରାମରେ ଜ୍ଞାନ ମନ୍ଦିର ସଂଗଠନକୁ ସକ୍ରିୟ କରାଯାଇ ଜଣେ ବହୁମୁଖୀ ସମନ୍ୱୟକାରୀଙ୍କ ନେତୃତ୍ୱରେ ଗ୍ରାମ ପରିଷଦ ଓ ଜ୍ଞାନମାନଙ୍କୁ ନେଇ ସମସ୍ୟା ଦୂରୀକରଣ ସଂସ୍ଥା ଗଠନ କରାଯିବାକୁ ପରାମର୍ଶ ଦିଆଯାଇଛି । କୃଷିକାର୍ଯ୍ୟ ଆଦିବାସୀମାନଙ୍କର ଜୀବିକାର୍ଜନ ପାଇଁ ପ୍ରଧାନ ସମ୍ବଳ ହୋଇଥିବାରୁ ଧାନ, ମାଣ୍ଡିଆ, ଡାଲି ଓ ତୈଳବୀଜ ଜାତୀୟ ଫସଲ ଚାଷ କରିବାକୁ ଉତ୍ସାହିତ କରାଯାଉଛି । ଜଳସେଚିତ ଓ ଅଣ-ଜଳସେଚିତ ଜମିରେ କୃଷି କାର୍ଯ୍ୟକ୍ରମ ଓ ବାଡ଼ିବଗିଚାରେ ଫଳ ଓ ପରିବାପରିବା ଚାଷ ବିଷୟରେ କୃଷି ବିଭାଗର କ୍ଷେତ୍ର କର୍ମଚାରୀମାନେ ଆଦିବାସୀମାନଙ୍କୁ ନିର୍ଦ୍ଦେଶନ ଦେବା ସଙ୍ଗେ ସଙ୍ଗେ ଚାଉଳ, ଗହମଠାରୁ ଅଧିକ ପ୍ରୋଟିନ୍ ଥିବା ମାଣ୍ଡିଆ ଫସଲ ବହୁଳ ପ୍ରସାର ପାଇଁ ଉତ୍ସାହିତ କରିବାକୁ କୁହାଯାଇଛି । ଅଧିକ ଅମଳକ୍ଷମ ଏ.କେ.ପି.–୨ ଓ ଡିବ୍ୟସିଂ ମାଣ୍ଡିଆ ବିହନ ବ୍ୟବହାର ହେକ୍ଟର ପିଛା ୨ ଟନ୍ ଶସ୍ୟ ଅମଦାନୀ ହୋଇପାରୁଛି ।

ଆଦିବାସୀମାନେ ପୁରାତନ ଅଭ୍ୟାସ ଓ ଅଂଧବିଶ୍ୱାସ ହେତୁ ଡାକ୍ତରଙ୍କ ନିକଟରେ ନିଜର ରୋଗ ପ୍ରକାଶ କରିବା ଓ ଔଷଧ ସେବନ କରିବାକୁ କୁଣ୍ଠାବୋଧ କରୁଥିବାରୁ ସମସ୍ୟା ଦୂରୀକରଣ ସଂସ୍ଥା ପକ୍ଷରୁ ସେମାନଙ୍କୁ ଡାକ୍ତରୀ ଚିକିତ୍ସାର ଉପକାରିତା ବିଷୟରେ ଯିବଣାଯିବା ଓ ଗ୍ରାମରେ ସ୍ୱାସ୍ଥ୍ୟରକ୍ଷାର ସାଧାରଣ ନିୟମ, ଯଥା–ଲୁଗାପଟା, ଘରଦ୍ୱାର ପରିଷ୍କାର ପରିଚ୍ଛନ୍ନ ରଖିବା, ଶୋଉଥିବା ଘରଠାରୁ ଗୋରୁ ଗୁହାଳ ଦୂରରେ ରଖିବା, ପାନୀୟ ଉପଯୋଗୀ ଜଳ ନ ଥିଲେ, ତାକୁ ଫୁଟାଇ ପିଇବା ବିଷୟରେ ଶିକ୍ଷା ପ୍ରଦାନ କରାଯିବ । ସ୍ୱାସ୍ଥ୍ୟକର୍ମୀ ଓ ଡାକ୍ତରଙ୍କ ସହିତ ସଂଯୋଗ ରକ୍ଷା କରି ରୋଗଗ୍ରସ୍ତ ବ୍ୟକ୍ତିଙ୍କର ଚିକିତ୍ସା ବ୍ୟବସ୍ଥା ମଧ୍ୟ କରିବେ । ଆଦିବାସୀମାନଙ୍କୁ ଶ୍ରମଭିତ୍ତିକ ଉନ୍ନୟନ କାର୍ଯ୍ୟରେ ନିୟୋଜିତ କରି ଅଧିକ ଶ୍ରମଦିବସ ସୃଷ୍ଟି କରିବା ପାଇଁ ନିର୍ଦ୍ଦେଶନାମାରେ ଗୁରୁତ୍ୱ ଦିଆଯାଇଛି । ଅଣୁ ପରିଯୋଜନା ପକ୍ଷରୁ ଗ୍ରାମର ସଂଘ ସାହାଯ୍ୟରେ କଂଟ୍ରୋଲ ଦୋକାନ ଓ ହାଟ ବିକ୍ରୟ କେନ୍ଦ୍ରରେ ରିହାତି ମୂଲ୍ୟରେ ଚାଉଳ ଓ ଗହମ ଯୋଗାଣ କାର୍ଯ୍ୟକ୍ରମ ପ୍ରତି ଦୃଷ୍ଟି ଦେବାକୁ ପରାମର୍ଶ ଦିଆଯାଇଛି ।

ମରୁଡ଼ିଜନିତ ପରିସ୍ଥିତି ଭଳି କଟିନ ତଥା ଜରୁରୀ ସମସ୍ୟାର ପ୍ରତିକାର ବ୍ୟବସ୍ଥା ପ୍ରତି ସଚେତନ ରହି କୌଣସି ବିଶେଷ କଟିନ ପରିସ୍ଥିତି ସୃଷ୍ଟି ହେଲେ, ତାହା ଜିଲ୍ଲାପାଳ ଓ ବିଭାଗୀୟ ଉଚ୍ଚସ୍ତରୀୟ ଅଫିସରଙ୍କ ଦୃଷ୍ଟିକୁ ଆଣିବା ପାଇଁ ସ୍ୱତନ୍ତ୍ର ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

## ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଜରୁରୀ ଭୋଜନ

ରାଜ୍ୟ ସରକାର ୬ ବର୍ଷରୁ କମ୍ ଶିଶୁ, ଗର୍ଭବତୀ ମହିଳା ଓ ପ୍ରସୂତିମାନଙ୍କୁ ପୁଷ୍ଟିକର ଖାଦ୍ୟ ଯୋଗାଇ ଦେବା ପ୍ରତି ଅଗ୍ରାଧିକାର ଦେଇଛନ୍ତି । ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଅସହାୟ, ବୃଦ୍ଧ ଓ ଅକ୍ଷମମାନଙ୍କୁ ମାଗଣା ଭୋଜନ ଯୋଗାଇ ଦିଆଯିବା ପାଇଁ ବ୍ୟବସ୍ଥା ହୋଇଛି । ଏଭଳି କାର୍ଯ୍ୟକ୍ରମ ଜରିଆରେ ବର୍ତ୍ତମାନ ୨୨ ଲକ୍ଷ ଲୋକ ଉପକୃତ ହେଉଛନ୍ତି ।

ଜରୁରୀ ମାଗଣା ଭୋଜନ କାର୍ଯ୍ୟକ୍ରମ ଜରିଆରେ କୋରାପୁଟ ଜିଲ୍ଲାରେ ଅଧିକ ୧୦ ହଜାର ଏବଂ କଳାହାଣ୍ଡି ଜିଲ୍ଲାରେ ଅଧିକ ୯୦ ହଜାର ବୃଦ୍ଧ, ଅସହାୟ, ଅକ୍ଷମ ବ୍ୟକ୍ତିଙ୍କ ସମେତ ଶିଶୁ ଗର୍ଭବତୀ ଓ ପ୍ରସୂତି ମହିଳାଙ୍କୁ ମାଗଣା ଭୋଜନ ଦିଆଯାଉଛି ।

## ସ୍ୱାସ୍ଥ୍ୟ ସେବାର ସଂପ୍ରସାରଣ

ଜଳ ଯୋଗୁଁ ସଂକ୍ରମିତ ହେଉଥିବା ରୋଗ ଓ ଅନ୍ୟାନ୍ୟ ସଂକ୍ରାମକ ରୋଗର ପ୍ରତିଷେଧକ ବ୍ୟବସ୍ଥା କରାଯାଉଛି । ସ୍ୱାସ୍ଥ୍ୟ ବିଭାଗ ଯଥେଷ୍ଟ ପରିମାଣର ବିଶୋଧକ ଔଷଧ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ମହଜୁଦ କରିବା ପାଇଁ ପଦକ୍ଷେପ ଗ୍ରହଣ କରିଛନ୍ତି । ଏହା ବ୍ୟତୀତ ରୋଗ ପ୍ରତିକାର (ଇମ୍ୟୁନାଇଜେସନ୍) ଯୋଜନାକୁ ତ୍ୱରାନ୍ୱିତ କରାଯାଉଛି ।

## ଫୁଲବାଣୀ ଜିଲ୍ଲାରେ ଅତ୍ୟାବଶ୍ୟକୀୟ ଜିନିଷ ଯୋଗାଣ

ଫୁଲବାଣୀ ଜିଲ୍ଲାରେ ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ସକ୍ରିୟ କରିବା ପାଇଁ ଜିଲ୍ଲାପାଳ ବ୍ୟାପକ ବ୍ୟବସ୍ଥା ଗ୍ରହଣ କରିଛନ୍ତି ।

ଜିଲ୍ଲାରେ ମରୁଡ଼ିଜନିତ ପରିସ୍ଥିତି ଯୋଗୁଁ ଖାଦ୍ୟପଦାର୍ଥ ଯେପରି ଅଭାବ ନ ହୁଏ, ସେଥିପ୍ରତି ଦୃଷ୍ଟି ରଖାଯାଇ ସେପ୍ଟେମ୍ବର ମାସଠାରୁ ୧,୧୦୦ ମେଟ୍ରିକ୍ ଟନ୍ ଚାଉଳ ଏବଂ ୧,୦୫୦ ମେଟ୍ରିକ୍ ଟନ୍ ଗହମ ଯୋଗାଣ ବ୍ୟବସ୍ଥା କରାଯାଉଛି । ଏହି କୋଟାର ଚାଉଳ

ସୁଲଭ ମୂଲ୍ୟରେ ବିକ୍ରୟ କରାଯାଉଛି । ଅଗଷ୍ଟ ମାସରେ ଏହାର ପରିମାଣ ୯୦୦ ମେଟ୍ରିକ୍ ଟନ୍ ଚାଉଳ ଏବଂ ୫୦ ମେଟ୍ରିକ୍ ଟନ୍ ଗହମ ଥିଲା । ଏହାଛଡ଼ା ସାଧାରଣ ବଣ୍ଟନ ବ୍ୟବସ୍ଥାରେ ସେପ୍ଟେମ୍ବର ମାସ ପାଇଁ ୫୫୦ ମେଟ୍ରିକ୍ ଟନ୍ ଚାଉଳ ଓ ୧୦୦ ମେଟ୍ରିକ୍ ଟନ୍ ଗହମ ଯୋଗାଣର ବ୍ୟବସ୍ଥା କରାଯାଇଛି । ପୂର୍ବ ମାସରେ ଏହାର ପରିମାଣ ୮୦ ମେଟ୍ରିକ୍ ଟନ୍ ଚାଉଳ ଓ ୧୦ ମେଟ୍ରିକ୍ ଟନ୍ ଗହମ ଥିଲା ।

ପୂର୍ବରୁ ଜିଲ୍ଲାରେ କେବଳ ୫୨୦ଟି ସୁଲଭ ମୂଲ୍ୟ ଦୋକାନ ଥିବା ସ୍ଥଳେ ବର୍ତ୍ତମାନ ତାହା ୬୪୫କୁ ବୃଦ୍ଧି କରାଯାଉଛି । ଅତ୍ୟାବଶ୍ୟକୀୟ ଦ୍ରବ୍ୟ ବିକ୍ରୟ ନିମନ୍ତେ ଅଧିକରୁ ଅଧିକ ଡିଲର ନିଯୁକ୍ତି ଏବଂ ଗ୍ରାମ ପଞ୍ଚାୟତ୍‌ମାନଙ୍କୁ ମଧ୍ୟ ଏହି କାର୍ଯ୍ୟରେ ସଂପୃକ୍ତ କରିବା ପାଇଁ ଜିଲ୍ଲାପାଳ ନିର୍ଦ୍ଦେଶ ଦେଇଛନ୍ତି । ଏତଦ୍ ବ୍ୟତୀତ ୫ଟି ଭ୍ରାମ୍ୟମାଣ ଗାଡ଼ି ଦ୍ୱାରା ଜିଲ୍ଲାର ଦୁର୍ଗମ ଅଞ୍ଚଳରେ ଅତ୍ୟାବଶ୍ୟକୀୟ ଜିନିଷ ବିକ୍ରୟ କରାଯାଉଛି । ଏହି ଭ୍ରାମ୍ୟମାଣ ଗାଡ଼ି ବାଲିଗୁଡ଼ା ଉପଖଣ୍ଡରେ ୪ଟି ଏବଂ ଫୁଲବାଣୀ ଉପଖଣ୍ଡ ଅଞ୍ଚଳରେ ଗୋଟିଏ କାର୍ଯ୍ୟ କରୁଛି । ଏହାଛଡ଼ା ଜିଲ୍ଲାର ସମସ୍ତ ସାପ୍ତାହିକ ହାଟରେ ମଧ୍ୟ ବିକ୍ରୟ ବ୍ୟବସ୍ଥା କରାଯାଉଛି ।

ଅତ୍ୟାବଶ୍ୟକୀୟ ଜିନିଷଗୁଡ଼ିକର ଯେପରି କଳାବଜାର ନ ହୁଏ, ସେଥି ନିମନ୍ତେ ତଦାରଖ କାର୍ଯ୍ୟକୁ ସକ୍ରିୟ କରାଯାଇଛି । ଜଣେ ମାଜିଷ୍ଟ୍ରେଟ୍‌ଙ୍କ ତତ୍ତ୍ୱାବଧାନରେ ଏକ ସ୍ୱତନ୍ତ୍ର ସ୍କ୍ୱାର୍ଡ ଗଠନ କରାଯାଇଛି । ଇତି ମଧ୍ୟରେ ବିଭିନ୍ନ ସ୍ଥାନରେ ଖାନତଲାସ୍ ଫଳରେ ୯୯ କେ. ଜି. ପାମୋଲିନ୍ ତେଲ ଜବତ କରାଯିବା ସଙ୍ଗେ ସଙ୍ଗେ ୩ଟି ମକଦ୍ଦମା କଳାବଜାରୀଙ୍କ ବିରୁଦ୍ଧରେ ରୁଜୁ କରାଯାଇଛି ।

## ବଗୋଡ଼ା ଶ୍ରମିକଙ୍କ ଥଇଥାନ କାର୍ଯ୍ୟକ୍ରମ

ଚଳିତ ଆର୍ଥିକ ବର୍ଷରେ ଗତମାସ ସୁଦ୍ଧା ୫ ଲକ୍ଷ ୭୦ ହଜାର ଟଙ୍କା ବ୍ୟୟରେ ଗଞ୍ଜାମ ଜିଲ୍ଲାରେ ୨୧ ଜଣ ତଫସିଲଭୁକ୍ତ ଜାତି ଓ ୧୦ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକଙ୍କ ସମେତ ୬୭ ଜଣ ଗୋତିମୁକ୍ତ ଶ୍ରମିକଙ୍କୁ ଥଇଥାନ କରାଯାଇଛି । ଏମାନଙ୍କୁ ମିଶାଇ ଏହି ଯୋଜନା ଆରମ୍ଭରୁ ଜିଲ୍ଲାରେ ୧,୭୫୬ ଜଣ ଗୋତିମୁକ୍ତ ଶ୍ରମିକଙ୍କ ଥଇଥାନ କରାଯାଇଛି । ସେମାନଙ୍କ ମଧ୍ୟରେ ୫୬୬ ଜଣ ତଫସିଲଭୁକ୍ତ ଜାତି ଓ ୨୭୫ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ଏଥିପାଇଁ ଜିଲ୍ଲାରେ ମୋଟ୍ ୬୮ ଲକ୍ଷ ୨୫ ହଜାର ଟଙ୍କା ଖର୍ଚ୍ଚ ହୋଇଛି ।

## କୋରାପୁଟରେ ପରିବାର କଲ୍ୟାଣ

କୋରାପୁଟ ଜିଲ୍ଲାରେ ପରିବାର କଲ୍ୟାଣ ଓ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ସଫଳ ଭାବରେ ଆଗେଇ ଚାଲିଛି । ଗତ ୧୯୮୭ ମସିହା ଅଗଷ୍ଟ ମାସ ଶେଷସୁଦ୍ଧା ହୋଇଥିବା ବିଭିନ୍ନ ସ୍ୱାସ୍ଥ୍ୟ ସେବା କାର୍ଯ୍ୟକ୍ରମ ମାଧ୍ୟମରେ ୨,୫୪୫ ଜଣ ପୁରୁଷ ଓ ୩,୪୯୮ ଜଣ ମହିଳା ଅସ୍ତ୍ରୋପଚାର କରାଇଛନ୍ତି । ସମୁଦାୟ ୨,୧୧୪ ଜଣ ଆଇ. ୟୁ. ଡି. ବ୍ୟବହାର କରିଛନ୍ତି । ଏହି ସମୟ ମଧ୍ୟରେ ୪,୪୯୯ ଜଣ ନିୟମିତ ନିରୋଧ ବ୍ୟବହାର କରିଛନ୍ତି । ସମୁଦାୟ ୩୨୪,୨୨୦ ଟି ନିରୋଧ ବଣ୍ଟନ କରାଯାଇଛି । ସେହିପରି ୧,୦୯୭ ଜଣ ଗର୍ଭନିରୋଧ ବଟିକା ସେବବନ କରିଛନ୍ତି ଏବଂ ୧୬୩ ଜଣ ଗର୍ଭପାତ କରିଛନ୍ତି ।

ଗର୍ଭବତୀ ମହିଳା ଓ ଶିଶୁମାନଙ୍କୁ ରୋଗ ପ୍ରତିଷେଧକ ଟୀକା ଦିଆଯାଇଛି । ତନ୍ମଧ୍ୟରୁ ୧୦,୦୮୧ ଜଣ ଗର୍ଭବତୀ ମହିଳାଙ୍କୁ ଟିଟାନସ୍ ପ୍ରତିଷେଧକ, ୧୧,୨୭୧ ଜଣଙ୍କୁ ଡି. ପି. ଟି. ଓ ୯,୮୨୯ ଜଣଙ୍କୁ ଡି. ଟି. ପ୍ରତିଷେଧକ ଇଂଜେକ୍‌ସନ୍ ଦିଆଯାଇଛି । ସେହିପରି ୬୯,୭୩୩ ଜଣଙ୍କୁ ଭିଟାମିନ୍ (କ) ବଟିକା ବଣ୍ଟାଯାଇଛି । ଉକ୍ତ ସମୟ ମଧ୍ୟରେ ୮,୨୧୦ ଜଣଙ୍କୁ ପୋଲିଓ ପ୍ରତିଷେଧକ ଓ ୭,୯୦୭ ଜଣଙ୍କୁ ଟାଇଫଏଡ୍ ପ୍ରତିଷେଧକ ଇଂଜେକ୍‌ସନ୍ ଦିଆଯାଇଛି । ଏହି ସମୟ ମଧ୍ୟରେ ୨,୭୩୬ ଜଣ ୧୦ ବର୍ଷର ଓ ୧,୬୨୮ ଜଣ ୧୬ ବର୍ଷର ବାଳକ ଓ ବାଳିକା ମାନଙ୍କୁ ଧନୁଷ୍ଟଙ୍କାର ପ୍ରତିଷେଧକ ଇଂଜେକ୍‌ସନ୍ ଏବଂ ୮,୮୩୨ ଜଣଙ୍କୁ ବି. ସି. ଜି. ପ୍ରତିଷେଧକ ଟୀକାଦିଆଯାଇଥିବା ପ୍ରକାଶ ।

## ଆଇ. ଆର. ଡ଼ି. କାର୍ଯ୍ୟକ୍ରମର ଅଗ୍ରଗତି

ଚଳିତ ଆର୍ଥିକ ବର୍ଷରେ ଗତ ଜୁଲାଇ ସୁଦ୍ଧା ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା ସୁନ୍ଦରଗଡ଼ ଜିଲ୍ଲାରେ ୯୪ ଜଣ ମହିଳାଙ୍କ ସମେତ ୧,୪୯୯ ଜଣ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୨୧୩ ଜଣ ତଫସିଲଭୁକ୍ତ ଜାତି ଓ ୮୯୭ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ହିତାଧିକାରୀମାନଙ୍କୁ ସମବାୟ ଓ ବ୍ୟବସାୟିକ ବ୍ୟାଙ୍କଗୁଡ଼ିକରୁ ୩୦ ଲକ୍ଷ ୬୩ ହଜାର ଟଙ୍କା ଯୋଗାଇ ଦିଆଯାଇଥିବା ବେଳେ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଦ୍ୱାରା ୨୮ଲକ୍ଷ ୫୭ ହଜାର ଟଙ୍କା ବ୍ୟୟ କରାଯାଇଛି । ତନ୍ମଧ୍ୟରୁ ହିତାଧିକାରୀ-ମାନଙ୍କ ସବ୍‌ସିଡି ବାବଦରେ ୨୦ଲକ୍ଷ ୨୬ ହଜାର ଟଙ୍କା ବ୍ୟୟ ହୋଇଛି ।

## ଜଳ ଅମଳ ପ୍ରକଳ୍ପ ନିର୍ମାଣ

ମରୁଡ଼ିଗ୍ରସ୍ତ ଅଞ୍ଚଳରେ 'ଜଳ ଅମଳ ପ୍ରକଳ୍ପ'ର ନିର୍ମାଣ ପାଇଁ ରାଜ୍ୟ ସରକାର ଏକ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କ ପାଇଁ କେନ୍ଦ୍ରୀୟ ସହାୟତାରେ କାର୍ଯ୍ୟକାରୀ ହେଉଥିବା ଭୂ-ଉନ୍ନୟନ ଯୋଜନା ବାବଦରେ ଖର୍ଚ୍ଚ ନ ହୋଇ ବଳକା ରହିଥିବା ପ୍ରାୟ ୩ କୋଟି ୫୦ଲକ୍ଷ ଟଙ୍କାକୁ ଜଳ ଅମଳ ପ୍ରକଳ୍ପ ନିର୍ମାଣ ଦିଗରେ ବିନିଯୋଗ କରିବାକୁ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଚଳିତ ବର୍ଷ ଏହିପରି ୪୦୮ଟି ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ହାତକୁ ନେବା ପାଇଁ କାର୍ଯ୍ୟକ୍ରମ ରହିଛି ।

ମୃତ୍ତିକାକ୍ଷୟକୁ ରୋକିବା ଏବଂ ଜମିର ଆର୍ଦ୍ରତା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଶୁଷ୍କ ଜମିକୁ ଜଳ ଯୋଗାଇ ଦେବା ପାଇଁ ଏହି ପ୍ରକଳ୍ପ ଏକାନ୍ତ ଉପାଦେୟ ।

## କଳାହାଣ୍ଡି ଜିଲ୍ଲାରେ ଆଇ. ଆର. ଡ଼ି. କାର୍ଯ୍ୟକ୍ରମ ।

ଚଳିତ ଆର୍ଥିକ ବର୍ଷରେ ଗତ ଜୁଲାଇ ଶେଷ ସୁଦ୍ଧା ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା କଳାହାଣ୍ଡି ଜିଲ୍ଲାରେ ୮୪୫ ଜଣ ମହିଳାଙ୍କ ସମେତ ୧,୬୭୮ ଜଣ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୩୮୯ ଜଣ ତଫସିଲଭୁକ୍ତ ଜାତି ଓ ୫୯୪

ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ହିତାଧିକାରୀମାନଙ୍କ ମଧ୍ୟରେ ୬୨୪ ଜଣ ମହିଳାଙ୍କ ସମେତ ୧,୧୧୫ ଜଣଙ୍କୁ ନୂତନ ଭାବେ ଏହି କାର୍ଯ୍ୟକ୍ରମର ପରିସରଭୁକ୍ତ କରାଯାଇ ଥିବା ବେଳେ ପୂର୍ବରୁ ଏହି ଯୋଜନାରେ ସାହାଯ୍ୟ ପାଇଥିବା ମାତ୍ର ଦାରିଦ୍ର୍ୟ ସୀମାରେଖା ଅତିକ୍ରମ କରିପାରିନଥିବା ୫୬୩ ଜଣଙ୍କୁ ପୁନର୍ବାର ସାହାଯ୍ୟ ଦିଆଯାଇଛି । ଏହି ସମୟ ମଧ୍ୟରେ ଉକ୍ତ କାର୍ଯ୍ୟକ୍ରମ ଦ୍ୱାରା ଜିଲ୍ଲାରେ ୧୬ଲକ୍ଷ ୯୭ ହଜାର ଟଙ୍କା ବ୍ୟୟ ହୋଇଛି । ସମବାୟ ଓ ବ୍ୟବସାୟିକ ବ୍ୟାଙ୍କଗୁଡ଼ିକରୁ ହିତାଧିକାରୀମାନଙ୍କୁ ୨୧ଲକ୍ଷ ୮୧ ହଜାର ଟଙ୍କାର ଋଣ ଦିଆଯାଇଛି ।

## ଆଇ. ଆର. ଡ଼ି. କାର୍ଯ୍ୟକ୍ରମର ଅଗ୍ରଗତି

ଚଳିତ ଆର୍ଥିକବର୍ଷରେ ଗତ ଜୁଲାଇ ମାସ ସୁଦ୍ଧା ସମନ୍ୱିତ ଗ୍ରାମ୍ୟଉନ୍ନୟନ କାର୍ଯ୍ୟକ୍ରମଦ୍ୱାରା କେନ୍ଦୁଝରଜିଲ୍ଲାରେ ୫୨ ଜଣ ତଫସିଲଭୁକ୍ତଜାତି ଓ ୨୦୫ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକଂକ ସମେତ ୪୩୯ଜଣ ଉପକୃତ ହୋଇଛନ୍ତି । ଏହି ହିତାଧିକାରୀମାନଂକ ମଧ୍ୟରୁ ୬୪ଜଣଙ୍କୁ ପୁନର୍ବାର ସହାୟତା ପ୍ରଦାନ କରାଯାଇଥିବାବେଳେ ୩୭୫ଜଣଂକୁ ନୂଆକରି ଆଇ: ଆର: ଡ଼ି: କାର୍ଯ୍ୟକ୍ରମର ପରିସରଭୁକ୍ତ କରାଯାଇଛି । ଉପରୋକ୍ତ ହିତାଧିକାରୀମାନଂକ ମଧ୍ୟରେ ୩୭୨ଜଣ କ୍ଷୁଦ୍ର କ୍ଷୁଦ୍ର ବ୍ୟବସାୟୀ ଅନ୍ତର୍ଭୁକ୍ତ । ଏହି ସମୟ ମଧ୍ୟରେ ଉକ୍ତ କାର୍ଯ୍ୟକ୍ରମ ବାବଦରେ ଜିଲ୍ଲାରେ ମୋଟ୍ ୧୧ଲକ୍ଷ ୮୭ ହଜାର ଟଙ୍କା ବ୍ୟୟ ହୋଇଛି ।

## ବିଂଶସୂତ୍ରୀ କାର୍ଯ୍ୟକ୍ରମ ରୂପାୟନ କ୍ଷେତ୍ରରେ ଓଡ଼ିଶାର ପ୍ରଶଂସନୀୟ ସାଫଲ୍ୟ

ଚଳିତବର୍ଷ ଅଗଷ୍ଟମାସ ଶେଷସୁଦ୍ଧା ବିଂଶସୂତ୍ରୀ କାର୍ଯ୍ୟକ୍ରମର ରୂପାୟନ ସଂପର୍କରେ କେନ୍ଦ୍ରସରକାରଂକ ପକ୍ଷରୁ କରାଯାଇଥିବା ଏକସମୀକ୍ଷା ଅନୁଯାୟୀ ଓଡ଼ିଶାର ସାଫଲ୍ୟ ଉଲ୍ଲେଖନୀୟ ବିବେଚିତ ହୋଇଛି । ଜୁଲାଇ ଶେଷସୁଦ୍ଧା ରାଜ୍ୟର ସ୍ଥାନ ଅଷ୍ଟମରେ ଥିବାବେଳେ ଅଗଷ୍ଟମାସ ଶେଷସୁଦ୍ଧା ଚତୁର୍ଥକୁ ଉନ୍ନୀତ ହୋଇଛି କେବଳ ସିକିମ୍ ଆନ୍ଧ୍ରପ୍ରଦେଶ, ମଧ୍ୟପ୍ରଦେଶ ବ୍ୟତୀତ ଅନ୍ୟ ସମସ୍ତ ରାଜ୍ୟ ଅପେକ୍ଷା ଓଡ଼ିଶା ଏହି କାର୍ଯ୍ୟକ୍ରମର ରୂପାୟନ କ୍ଷେତ୍ରରେ ଶ୍ରେଷ୍ଠ ବିବେଚିତ ହୋଇପାରିଛି ।

ଏହି ସମୀକ୍ଷା ଅନୁଯାୟୀ ୨୦ଟି କାର୍ଯ୍ୟକ୍ରମ ମଧ୍ୟରୁ ୧୩ଟିରେ ଓଡ଼ିଶାର ସାଫଲ୍ୟ ଅତି ଉତ୍ତମ ବିବେଚିତ ହୋଇଛି ।

ସେପ୍ଟେମ୍ବର ମାସର କାର୍ଯ୍ୟକ୍ରମ କେନ୍ଦ୍ର ସରକାରଂକର ସମୀକ୍ଷାଧୀନ ଥିଲେ ମଧ୍ୟ ରାଜ୍ୟ ସରକାରଂକ ପକ୍ଷରୁ ପ୍ରସ୍ତୁତ ପରିସଂଖ୍ୟାନ ଅନୁଯାୟୀ ଏମାସରେ ଏହି ସାଫଲ୍ୟ ଅଧିକ ଫଳପ୍ରଦ ହୋଇପାରିଛି । ସମନ୍ୱିତ ଗ୍ରାମ୍ୟ ବିକାଶ କାର୍ଯ୍ୟକ୍ରମରେ ଅଗଷ୍ଟ ମାସ ଶେଷସୁଦ୍ଧା ଧାର୍ଯ୍ୟଲକ୍ଷ୍ୟର ଶତକଡ଼ା ୬୧.୬ଭାଗ ସଫଳତା ହାସଲ ହୋଇଥିବାବେଳେ ସେପ୍ଟେମ୍ବର ମାସସୁଦ୍ଧା ଏହା ଶତକଡ଼ା ୧୦୪କୁ ବୃଦ୍ଧି ପାଇଛି । ସେହିପରି ଗୋଟି ଶ୍ରମିକ ପରଥାନ, ସମନ୍ୱିତ ଶିଶୁବିକାଶ ଯୋଜନା, ଅଂଗନବାଡ଼ି, ଅର୍ଥନୈତିକ ଦୁର୍ବଳଶ୍ରେଣୀ ଲୋକଂକୁ ବାସଗୃହ ଯୋଗାଣ, ଘରଡ଼ିହ ବଣ୍ଟନ, ହରିଜନ ଓ ଆଦିବାସୀ ପରିବାରଂକୁ ସହାୟତା, ପ୍ରତିଷେଧକଟିକା ପ୍ରଦାନ ପ୍ରଭୃତି କ୍ଷେତ୍ରରେ ଓଡ଼ିଶା କେନ୍ଦ୍ର ସରକାରଙ୍କର ନିର୍ଦ୍ଧାରିତ ଲକ୍ଷ୍ୟ ଅତିକ୍ରମକରିବା ଦିଗରେ ସଫଳତା ହାସଲ କରିପାରିଛି ।

ପରିବାର କଲ୍ୟାଣ ଅସ୍ତ୍ରୋପ୍ରଚାର କ୍ଷେତ୍ରରେ ରାଜ୍ୟର ସାଫଲ୍ୟ ଶତକଡ଼ା ୬୫ଭାଗ ହୋଇଥିଲେମଧ୍ୟ ୪୬,୧୦୩ଜଣ ବ୍ୟକ୍ତି ଏହି ଅସ୍ତ୍ରୋପ୍ରଚାରର ସୁବିଧା ଗ୍ରହଣ କରିଛନ୍ତି ଏବଂ ପୂର୍ବବର୍ଷମାନଂକ ଅପେକ୍ଷା ଏହି ସଫଳତା ଉଲ୍ଲେଖନୀୟ ଭାବରେ ବୃଦ୍ଧି ପାଇଛି ।

ରାଜ୍ୟର ପ୍ରଗତି ଓ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟର ସାଫଲ୍ୟପାଇଁ ପ୍ରଶାସନ କଳକୁ ଅଧିକ ସକ୍ରିୟ କରିବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ନିର୍ଦ୍ଦେଶ ଦେଇଛନ୍ତି । ବିଂଶସୂତ୍ରୀ କାର୍ଯ୍ୟକ୍ରମ ରୂପାୟନ କ୍ଷେତ୍ରରେ ଅବହେଳା ବା କର୍ତ୍ତବ୍ୟପରାୟଣତାର ଅଭାବ ଦେଖାଦେଲେ, ସଂପୃକ୍ତ କର୍ମକର୍ତ୍ତାଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବବୋଲି ମଧ୍ୟ ସେ ଚେତାବନୀ ଦେଇଛନ୍ତି ।

ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା ସଂପୃକ୍ତ ବିଭାଗର ଶାସନ ସଚିବମାନଂକସହ ଏ ସଂପର୍କରେ ଆଲୋଚନା କରି ବାର୍ଷିକ ପରିବର୍ତ୍ତେ ଏହି କାର୍ଯ୍ୟକ୍ରମପାଇଁ ମାସିକ ଲକ୍ଷ୍ୟ ଧାର୍ଯ୍ୟକରିବା, ପ୍ରତିମାସରେ ଲକ୍ଷ୍ୟହାସଲ ସଂପର୍କରେ ସମୀକ୍ଷା କରିବା, ଏ କ୍ଷେତ୍ରରେ କୌଣସି ପ୍ରଶାସନିକ ଅସୁବିଧା ସୃଷ୍ଟି ହେଲେ ତାହା ଦୂରକରିବାପାଇଁ ପରାମର୍ଶ ଦେଇଛନ୍ତି । କାର୍ଯ୍ୟକ୍ରମର ରୂପାୟନ ଦାୟିତ୍ୱରେଥିବା କର୍ମଚାରୀମାନଂକର ବାର୍ଷିକ ଚରିତ୍ରପତ୍ର ଲିପିବଦ୍ଧକଲାବେଳେ ଏହି କାର୍ଯ୍ୟକ୍ରମର ସାଫଲ୍ୟ ସଂପର୍କରେ ଉପଯୁକ୍ତ ମୂଲ୍ୟାୟନ କରିବାକୁ ମଧ୍ୟ ସେ ନିର୍ଦ୍ଦେଶ ଦେଇଛନ୍ତି ।

## ଆଇ. ଆର. ଡ଼ି. କାର୍ଯ୍ୟକ୍ରମ

ଚଳିତ ଆର୍ଥିକବର୍ଷରେ ଗତ ଜୁଲାଇସୁଦ୍ଧା ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମଦ୍ୱାରା କୋରାପୁଟ ଜିଲ୍ଲାରେ ୨,୮୯୨ଜଣ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ୪୮୮ଜଣ ତଫସିଲଭୁକ୍ତ ଜାତି ଓ ୧,୬୧୨ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ଉପକୃତ ବ୍ୟକ୍ତିମାନଂକ ମଧ୍ୟରେ ୨୧୫ଜଣ ଗ୍ରାମ୍ୟକାରିଗର, ୧,୩୭୩ଜଣ କ୍ଷୁଦ୍ର ବ୍ୟବସାୟୀ ଅନ୍ତର୍ଭୁକ୍ତ । ଏହା ବ୍ୟତୀତ କୃଷି କାର୍ଯ୍ୟକ୍ରମ, ମତ୍ସ୍ୟଚାଷ ଓ ପଶୁପାଳନ ଇତ୍ୟାଦି ବିଭିନ୍ନ ଧଂଦାଦ୍ୱାରା ୧,୫୧୯ଜଣ ଉପକୃତ ହୋଇପାରିଛନ୍ତି ।

ଉକ୍ତ ସମୟ ମଧ୍ୟରେ ଏହି କାର୍ଯ୍ୟକ୍ରମଦ୍ୱାରା ଜିଲ୍ଲାରେ ୭୪ଲକ୍ଷ ୩୩ ହଜାର ଟଂକା ବ୍ୟୟ ହୋଇଛି । ସେଥିରୁ ହିତାଧିକାରୀମାନଂକଲାଗି ସବ୍‌ସିଡ଼ି ବାବଦରେ ପ୍ରାୟ ୨୫ଲକ୍ଷ ଟଂକା ଖର୍ଚ୍ଚ ହୋଇଛି ।

## କୃଷି ଓ ଜଳସେଚନ ଉପରେ ଗୁରୁତ୍ୱ

ଚଳିତ ବର୍ଷର ମରୁଡ଼ି ପରିସ୍ଥିତିର ମୁକାବିଲା ତଥା କୃଷି ଓ ଜଳସେଚନର ବିକାଶ ପାଇଁ ବ୍ୟାଙ୍କମାନେ ଉଦାର ଅର୍ଥନୈତିକ ନୀତି ଅନୁସରଣ କରିବାକୁ ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା ପରାମର୍ଶ ଦେଇଛନ୍ତି । ଗତ ଶୁକ୍ରବାର ଦିନ ଭୁବନେଶ୍ୱରଠାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ

ବ୍ୟାଙ୍କ୍ ସମନ୍ୱୟ କମିଟିର ୪୦ ତମ ଅଧିବେଶନରେ ଉଦ୍‌ବୋଧନ ଦେଇ ଶ୍ରୀ ପଣ୍ଡା ଏବର୍ଷର ଅଭୂତପୂର୍ବ ମରୁଡ଼ି ପରିସ୍ଥିତିର ଭୟାବହତା ସମ୍ପର୍କରେ ସୂଚନା ଦେଇ ବ୍ୟାଙ୍କ କର୍ମଚାରୀମାନେ ଫସଲ ଅମଳ ସର୍ଭେ ରିପୋର୍ଟ ବା ଜିଲାପାଳମାନଙ୍କର ସୁପାରିଶକୁ ଅପେକ୍ଷା ନକରି ରାଜ୍ୟ ସରକାରଙ୍କ ପକ୍ଷରୁ ପ୍ରସ୍ତୁତ ଶ୍ୱେତପତ୍ର ଓ ଅନ୍ୟ ବିବରଣୀ ଭିତ୍ତିରେ ଋଣ ମଞ୍ଜୁର କରିବାକୁ ଅନୁରୋଧ କରିଥିଲେ ।

ଫସଲର କ୍ଷୟକ୍ଷତି ସଂପର୍କରେ ଗ୍ରାମ ସ୍ତରରେ ଗ୍ରାମପଞ୍ଚାୟତ ସଂପର୍କୀୟ ରିପୋର୍ଟକୁ ବିଶ୍ୱାସକୁ ନେଇ କୃଷି ଜଳସେଚନ, ନଳକୂପ ଓ ଜଳସେଚନ କୂପ ଖନନ ପ୍ରଭୃତି ପାଇଁ ଅଗ୍ରାଧିକାର ଭିତ୍ତିରେ ଋଣ ମଞ୍ଜୁର କରିବାର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇ ଶ୍ରୀ ପଣ୍ଡା କହିଲେ ଯେ ରାଜ୍ୟର ଅଧିକାଂଶ ଲୋକ କୃଷିଜୀବୀ ହୋଇଥିବା ଦୃଷ୍ଟିରୁ ଏ ଦିଗରେ ଯୁଦ୍ଧକାଳୀନ ଭିତ୍ତିରେ ପଦକ୍ଷେପ ନନେଲେ ସାଧାରଣ ଲୋକ ଓ ରାଜ୍ୟର ଅର୍ଥନୀତି ଉପରେ ଏହାର ପ୍ରତିକୂଳ ପ୍ରଭାବ ପଡ଼ିବାର ଆଶଙ୍କା ଦେଖାଦେଇଛି ।

ଦାରିଦ୍ର୍ୟ ଦୂରୀକରଣ ପାଇଁ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମର ସାଫଲ୍ୟ ପାଇଁ ବ୍ୟାଙ୍କମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଷୟ ଉଲ୍ଲେଖ କରି ଏଥିପାଇଁ ମିଳିଥିବା ଦରଖାସ୍ତଗୁଡ଼ିକୁ ତୁରନ୍ତ ବିଚାରକୁ ନେଇ ଋଣ ମଞ୍ଜୁର କରିବାକୁ ପରାମର୍ଶ ଦେଇ ମୁଖ୍ୟ ଶାସନ ସଚିବ କହିଲେ ଯେ ବିଭିନ୍ନ ବ୍ୟାଙ୍କର ଶାଖା ପରିଚାଳକ ତଥା କ୍ଷେତ୍ର କର୍ମଚାରୀମାନଙ୍କର ବାର୍ଷିକ ଚରିତ୍ର ପତ୍ର ଲିପିବଦ୍ଧ କଲାବେଳେ ଏ ଦିଗରେ ସେମାନଙ୍କର କାର୍ଯ୍ୟ ଓ ସାଫଲ୍ୟର ମୂଲ୍ୟାୟନ ହେବା ଆବଶ୍ୟକ ।

ବ୍ୟାଙ୍କ ଜମା କ୍ଷେତ୍ରରେ ଓଡ଼ିଶାକୁ ଅନ୍ୟ ଉନ୍ନତ ରାଜ୍ୟମାନଙ୍କ ସହ ତୁଳନା ନକରି ଏହାର ଅର୍ଥନୈତିକ ପ୍ରଗତି ଏବଂ ଦାରିଦ୍ର୍ୟ ଦୂରୀକରଣ ପାଇଁ ନିଆଯାଉଥିବା ପଦକ୍ଷେପର ସାଫଲ୍ୟ ପାଇଁ ବ୍ୟାଙ୍କ କର୍ମଚାରୀମାନଙ୍କର ଆଭିମୁଖ୍ୟରେ ଆବଶ୍ୟକୀୟ ପରିବର୍ତ୍ତନ ଆଣିବାକୁ ସେ ଅନୁରୋଧ କରିଥିଲେ ।

ୟୁକୋ ବ୍ୟାଙ୍କ ପକ୍ଷରୁ ଆହୂତ ଏହି ଅଧିବେଶନରେ ରାଜ୍ୟର ସମସ୍ତ ବ୍ୟାଙ୍କର ପ୍ରତିନିଧି ଓ ରାଜ୍ୟ ପ୍ରଶାସନର ଉଚ୍ଚସ୍ତ କର୍ମକର୍ତ୍ତାମାନେ ଯୋଗ ଦେଇଥିଲେ ।

## ଅର୍କକ୍ଷେତ୍ର କୋଣାର୍କର ସାମଗ୍ରିକ ବିକାଶ ପାଇଁ ଉଦ୍ୟମ କରାଯାଉଛି

**ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ**

ଅର୍କକ୍ଷେତ୍ର କୋଣାର୍କର ସାମଗ୍ରିକ ଉନ୍ନତି ଘଟାଇ ଅଧିକରୁ ଅଧିକ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରାଯିବ ବୋଲି ଗତକାଲି କୋଣାର୍କଠାରେ ମୁକ୍ତାକାଶ ପ୍ରେକ୍ଷାଳୟ ଓ ଯାତ୍ରୀ ନିବାସର ଶିଳାନ୍ୟାସ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ କହିଛନ୍ତି । ସେ କହିଲେ ଯେ କୋଣାର୍କର ପ୍ରସିଦ୍ଧି କେବଳ ଓଡ଼ିଶାର ନୁହେଁ, ସମଗ୍ର ଭାରତବର୍ଷର । ଲାଙ୍ଗୁଳା ନରସିଂହ ଦେବଙ୍କ ରାଜତ୍ୱ ସମୟରେ ଏହି ବିଶ୍ୱ ବିଖ୍ୟାତ ସୂର୍ଯ୍ୟ ମନ୍ଦିର ନିର୍ମାଣ କରାଯାଇଥିଲା ଏବଂ ଏହାର କଳା ଓ ଭାସ୍କର୍ଯ୍ୟ ଯୁଗ ଯୁଗ ଧରି ଆମକୁ ପ୍ରେରଣା ଯୋଗାଉଛି । ଏପରି ଏକ ଐତିହାସିକ ସ୍ଥାନର ବିକାଶ ଏକ ସ୍ଥାନୀୟ ପ୍ରଶ୍ନ ନୁହେଁ, ସାରା ଓଡ଼ିଶାର । ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ପାଇଁ କୋଣାର୍କରେ ଯଥେଷ୍ଟ କ୍ଷେତ୍ର ଥିବା ବେଳେ ପର୍ଯ୍ୟଟକମାନଙ୍କ ଯାତାୟତ ଓ ରହିବା ସୁବିଧାର ପର୍ଯ୍ୟାପ୍ତ ସୁଯୋଗ ନଥିବାରୁ ଖଜୁରାହ ଓ ଅନ୍ୟାନ୍ୟ ପର୍ଯ୍ୟଟନ ସ୍ଥଳୀ ତୁଳନାରେ ଏହାର ବିକାଶ ପଛେଇ ଯାଇଛି । ଏ ପ୍ରସଙ୍ଗରେ ମୁଖ୍ୟମନ୍ତ୍ରୀ କହିଲେ ଯେ ଭୁବନେଶ୍ୱର ଓ ନୂଆଦିଲ୍ଲୀ ମଧ୍ୟରେ ବିମାନ ସଂଯୋଗ ଫଳରେ ବହୁ ବିଦେଶୀ ପର୍ଯ୍ୟଟକ ଏଠାକୁ ଆସୁଛନ୍ତି । ଏହି କ୍ରମ ବର୍ଦ୍ଧିଷ୍ଣୁ ପର୍ଯ୍ୟଟକମାନଙ୍କର ରହିବା ଓ ଆମୋଦ ପ୍ରମୋଦ ପାଇଁ ପର୍ଯ୍ୟଟନ ସ୍ଥଳୀ ମାନଙ୍କରେ ତାରକା ହୋଟେଲମାନ ନିର୍ମାଣ କରାଯାଉଛି ଓ ଘରୋଇ ଉଦ୍ୟୋଗୀମାନଙ୍କୁ ପ୍ରୋତ୍ସାହିତ କରାଯାଉଛି । ଭାରତରେ ଓଡ଼ିଶା ପ୍ରଥମେ ହୋଟେଲକୁ ଏକ ଶିଳ୍ପ ଭାବେ ଘୋଷଣା କରିଛି । ଭୁବନେଶ୍ୱର ବିମାନ ବନ୍ଦରର ଉନ୍ନତି କରାଯାଇ ଏଠାରେ ଯେପରି ଜେଟ ବିମାନ ଅବତରଣ କରିପାରିବ ସେଥିପାଇଁ ୨୨ କୋଟି ଟଙ୍କା ବ୍ୟୟରେ ସଂପ୍ରସାରଣ କାମ ହାତକୁ ନିଆଯାଇଛି । ଏହା ହୋଇଗଲେ ଏଠାକୁ ବିଦେଶୀ ପର୍ଯ୍ୟଟକମାନେ ଅଧିକ ସଂଖ୍ୟାରେ ଆସି ପାରିବେ, ପର୍ଯ୍ୟଟନ ଶିଳ୍ପର ବିକାଶ ଫଳରେ କୃଷକ, ଶିଳ୍ପୀ, ମନ୍ଦିର କାର୍ଯ୍ୟରେ ନିଯୁକ୍ତ କାରିଗର, ଗାଇଡ୍ ଓ ବିଭିନ୍ନ ହୋଟେଲରେ ନିଯୁକ୍ତ କର୍ମଚାରୀମାନଙ୍କର ଲାଭ ହେବ । ଐତିହାସିକ, ଉପାସକ ଏବଂ ସୌଖୀନ ପର୍ଯ୍ୟଟକମାନେ କୋଣାର୍କ ଆସିଥାଆନ୍ତି । ତେଣୁ କୋଣାର୍କର ବିକାଶ ଏକାନ୍ତ ଅପରିହାର୍ଯ୍ୟ । ଏଥିପାଇଁ ଏଠାରେ ଏକ କୃଷ୍ଣସାର ବିହାର କରାଯାଇଛି । ସମୁଦ୍ର ସ୍ନାନର ସୁବିଧା ପାଇଁ ରାମଚଣ୍ଡି ପାଖରେ ଏକ ରମଣୀୟ ପରିବେଶ ସୃଷ୍ଟି କରାଯିବାର ଉଦ୍ୟମ ହେଉଛି । ଚନ୍ଦ୍ରଭାଗାଠାରେ ତୀର୍ଥଯାତ୍ରୀମାନଙ୍କ ମାଘ ସପ୍ତମୀ ବ୍ରତ ପାଇଁ କୁରୁକ୍ଷେତ୍ର ଜଳାଶୟ ଭଳି ଏକ ବିରାଟ ଜଳାଶୟ ନିର୍ମାଣ କରାଯିବାର ଉଦ୍ୟମ ହେଉଛି । ୨୯ଲକ୍ଷ ଟଙ୍କା ବ୍ୟୟରେ ନିର୍ମାଣ ହେବାକୁ ଯାଉଥିବା ଏହି ଯାତ୍ରୀ ନିବାସରେ ୧୯ ଗୋଟି ପ୍ରକୋଷ୍ଠ ଏବଂ ୬୦ ଗୋଟି ଶଯ୍ୟା ରହିବ । ମୁକ୍ତାକାଶ ପ୍ରେକ୍ଷାଳୟ ପାଇଁ ୭ ଲକ୍ଷ ଟଙ୍କା ଖର୍ଚ୍ଚ ହେବ ଏବଂ ଏଥିରେ ପନ୍ଦର ଶହ ଲୋକ ବସି ପାରିବେ । ନିର୍ମାଣ କାର୍ଯ୍ୟକୁ ଆଗାମୀ ବର୍ଷ ଦଶହରା ପୂର୍ବରୁ ସଂପୂର୍ଣ୍ଣ କରାଯାଇ ଏଠାରେ ଦଶହରା ବେଳେ ରାମାୟଣ ଅଭିନିତ କରାଯିବାର ଲକ୍ଷ୍ୟ ନେଇ କାର୍ଯ୍ୟକୁ ଆଗେଇ ନେବାକୁ ମୁଖ୍ୟମନ୍ତ୍ରୀ ପର୍ଯ୍ୟଟନ ବିଭାଗ ନିର୍ଦ୍ଦେଶକଙ୍କୁ ପରାମର୍ଶ ଦେଇଥିଲେ । ଏକା ସଙ୍ଗେ ୬୦ରୁ ୭୦ ଜଣ ଅଭିନେତା ଏହି ମଞ୍ଚରେ ଅଭିନୟ କରି ପାରିବେ । ସ୍ଥାନୀୟ ଜଳସେଚନ ସମସ୍ୟା ସଂପର୍କରେ ସୂଚନା ଦେଇ ଶ୍ରୀ ପଟ୍ଟନାୟକ କହିଲେ ଯେ ଆଗାମୀ ୩ ବର୍ଷ ମଧ୍ୟରେ ରାଜ୍ୟରେ ଲକ୍ଷ ଲକ୍ଷ ଏକର ଜମିକୁ ଜଳସେଚିତ କରାଯିବାର ଯେଉଁ ପରିକଳ୍ପନା ରହିଛି ସେଥିପାଇଁ ଆମ ଭିତରେ ସଂହତି ଓ ଏକତା ଦରକାର ।

ବିଭାଗୀୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଶରତ କୁମାର ରାଉତ ଉତ୍ସବରେ ସଭାପତିତ୍ୱ କରି କହିଲେ ଯେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଉଦ୍ୟମ ଯୋଗୁ ଓଡ଼ିଶାରେ ପର୍ଯ୍ୟଟନ ଶିଳ୍ପର ଦ୍ରୁତ ବିକାଶ ଘଟି ପାରିଛି । ସମଗ୍ର ଓଡ଼ିଶାକୁ ଏକ ପର୍ଯ୍ୟଟନ ସ୍ଥଳୀ ରୂପେ ଗଢ଼ିବା ପାଇଁ ବିସ୍ତୃତ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ତାଙ୍କରି ଉଦ୍ୟମ ଯୋଗୁଁ

କେନ୍ଦ୍ରୀୟ ପର୍ଯ୍ୟଟନ ମନ୍ତ୍ରଣାଳୟଠାରୁ ଅନୁଦାନ ଆକାରରେ ଅର୍ଥ ମିଳି ପାରିଛି । କୋଣାର୍କଠାରେ ନିର୍ମିତ ହେବାକୁ ଯାଉଥିବା ଯାତ୍ରୀ ନିବାସ ଓ ମୁକ୍ତାକାଶ ପ୍ରେକ୍ଷାଳୟ ପାଇଁ କେନ୍ଦ୍ରୀୟ ସାହାଯ୍ୟ ମିଳିଛି ବୋଲି ଶ୍ରୀ ରାଉତ ସୂଚନା ଦେଇଥିଲେ । ସେ କହିଲେ ଯେ ଜଣେ ପର୍ଯ୍ୟଟକ ୧୪ ଜଣ ବିଭିନ୍ନ ବୃତ୍ତିର ଲୋକଙ୍କୁ କାମ ଯୋଗାଇ ଦେଇ ଥାଆନ୍ତି । ତେଣୁ ଏହାକୁ ଏକ ଧୂମ୍ର ବିହୀନ ଶିଳ୍ପ ବୋଲି କୁହାଯାଇ ପାରେ । କୋଣାର୍କଠାରେ ପ୍ରତିବର୍ଷ ନୃତ୍ୟ ନାଟିକା ଉତ୍ସବ ଅନୁଷ୍ଠିତ କରିବା ସଂପର୍କରେ ସୂଚନା ଦେଇଥିଲେ ।

ଉତ୍ସବରେ ଜିଲ୍ଲାର ବହୁ ବିଧାୟକ ଓ ଗଞ୍ଜାମ ଜିଲ୍ଲାର ଭଞ୍ଜନଗର ବିଧାୟକ ଉଦ୍‌ବୋଧନ ଦେଇ ସରକାରଙ୍କ ଉଦ୍ୟମର ପ୍ରଶଂସା କରିଥିଲେ । ପର୍ଯ୍ୟଟନ ନିର୍ଦ୍ଦେଶକ ପ୍ରାରମ୍ଭିକ ସୂଚନା ଦେଇଥିଲେ ।

## ଗୋ-ଉନ୍ନୟନ ଯୋଜନା

କଟକ ସଘନ ଗୋ-ଉନ୍ନୟନ ଯୋଜନା ଅଞ୍ଚଳରେ ଗତ ଜୁଲାଇ ମାସରେ ୨,୯୩୫ ଟି ଗାଈଙ୍କୁ କୃତ୍ରିମ ପ୍ରଜନନ ଦ୍ୱାରା ଗର୍ଭାଧାନ କରାଯାଇଥିଲା । ପୂର୍ବରୁ ପ୍ରଜନନ କରାଯାଇଥିବା ଗାଈଙ୍କଠାରୁ ଉକ୍ତ ମାସରେ ୩୮୨ଟି ଅଣ୍ଡିରା ଓ ୪୦୫ଟି ମାଈ, ଏପରି ମୋଟ ୭୮୭ ଟି ଉନ୍ନତ ସଂକର ବାଛୁରୀ ଜନ୍ମିଥିଲେ । ଏହି ସମୟରେ ୧,୯୩୧ ଟି ଅଣ୍ଡିରା ବାଛୁରୀଙ୍କର ଧରାଣ କରାଯାଇଥିଲା ଏବଂ ୨୧,୯୭୬ ଟି ଗୋରୁଙ୍କର ସାଧାରଣ ରୋଗର ଚିକିତ୍ସା କରାଯାଇ ୪୧,୫୫୬ ଟି ଗୋରୁଙ୍କୁ ବିଭିନ୍ନ ସଂକ୍ରାମକ ରୋଗ ପ୍ରତିଷେଧକ ଟିକା ଦିଆଯାଇଥିଲା । ଉକ୍ତ ମାସରେ ମଧ୍ୟ ୮ କ୍ୱିଣ୍ଟାଲ ୨୫ କେ: ଜି: ଘାସମଞ୍ଜି ଯୋଗାଯାଇ ୩୦ ଏକର ୫ ଡେସିମାଲ ପରିମିତ ଆଗ୍ରହୀ ପଶୁପାଳକଙ୍କ ୧୨୨ଟି ବ୍ୟକ୍ତିଗତ ପ୍ଲଟ୍‌ରେ ଘାସଚାଷ କରାଯାଇଥିଲା ।

## ଲୋକ ଅଦାଲତ ଦ୍ୱାରା ମକଦ୍ଦମା ଫଇସଲା

ଓଡ଼ିଶା ଆଇନ ସହାୟତା ଓ ପରାମର୍ଶଦାତା ବୋର୍ଡ ପକ୍ଷରୁ ରାଜ୍ୟର ବିଭିନ୍ନ ସ୍ଥାନରେ ଲୋକ ଅଦାଲତମାନ ବସି ବିଭିନ୍ନ ବିଚାରାଧୀନ ମାମଲା ବିଶ୍ଳେଷ କରି ଫଇସଲା କରୁଛନ୍ତି । ବର୍ତ୍ତମାନ ପର୍ଯ୍ୟନ୍ତ ରାଜ୍ୟରେ ଏହିପରି ମୋଟ୍ ୧୩ ଟି ଲୋକ ଅଦାଲତ ବସି ମୋଟର ଦୁର୍ଘଟଣାରେ କ୍ଷତିପୂରଣ, ସିଭିଲ୍ ଓ ଫଉଜଦାରୀ ରାଜସ୍ୱ ସଂପର୍କୀୟ ମାମଲା ଫଇସଲା କରିଛନ୍ତି । କଟକ ଓ ଗଞ୍ଜାମ ଜିଲ୍ଲାରେ ଦୁଇଟି ଲେଖାଏଁ ସ୍ଥାନରେ, ପୁରୀ ଜିଲ୍ଲାରେ ୩ଟି ସ୍ଥାନରେ ଏବଂ ସୁନ୍ଦରଗଡ଼, କେନ୍ଦୁଝର, ମୟୂରଭଞ୍ଜ, ବାଲେଶ୍ୱର, କଳାହାଣ୍ଡି ଓ ଢେଙ୍କାନାଳ ଜିଲ୍ଲାମାନଙ୍କରେ ପ୍ରତ୍ୟେକ ଗୋଟିଏ ଲେଖାଏଁ ସ୍ଥାନରେ ଏହି ଅଦାଲତସବୁ ଅନୁଷ୍ଠିତ ହୋଇଛି ।

ଲୋକ ଅଦାଲତ ଦ୍ୱାରା ଚଳିତ ଆର୍ଥିକ ବର୍ଷର ଅଗଷ୍ଟ ମାସ ସୁଦ୍ଧା ବାଲେଶ୍ୱର ଜିଲ୍ଲାରେ ୯୬୨ ଟି, କଳାହାଣ୍ଡି ଜିଲ୍ଲାରେ ୧୩୬ ଟି, ଗଞ୍ଜାମ ଜିଲ୍ଲାରେ ୭୭୦ ଟି ଓ ଢେଙ୍କାନାଳ ଜିଲ୍ଲାରେ ୩୬୨ ଟି ମାମଲା ଫଇସଲା କରାଯାଇଛି ।

## ଏନ୍. ଆର୍. ଇ.ପି କାର୍ଯ୍ୟକ୍ରମ

ଗତ ମାସରେ ଜାତୀୟ ଗ୍ରାମାଞ୍ଚଳ ନିଯୁକ୍ତି କାର୍ଯ୍ୟକ୍ରମ ଅନୁଯାୟୀ ରାଜ୍ୟରେ ଶ୍ରମଜୀବୀମାନଙ୍କ ପାଇଁ ୨୨ ଲକ୍ଷ ୪୬ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇଛି । ତନ୍ମଧ୍ୟରୁ ୬ ଲକ୍ଷ ୭୪ ହଜାର ଶ୍ରମ ଦିବସରେ ତପସିଲଭୁକ୍ତ ଜାତି ଓ ୮ ଲକ୍ଷ ୪ ହଜାର ଶ୍ରମ ଦିବସରେ ତପସିଲଭୁକ୍ତ ସଂପ୍ରଦାୟର ଶ୍ରମିକଙ୍କ ପାଇଁ ନିଯୁକ୍ତି ସୁବିଧା ଯୋଗାଇ ଦିଆଯାଇଛି । ଏହା ଫଳରେ ୭ ଲକ୍ଷ ୫୮ ହଜାର ଶ୍ରମ ଦିବସରେ ଭୂମିହୀନ ଶ୍ରମିକ ଓ ୫ ଲକ୍ଷ ୩୯ ହଜାର ଶ୍ରମ ଦିବସରେ ମହିଳା ଶ୍ରମିକ ଉପକୃତ ହୋଇଛନ୍ତି ।

ଏହି ମାସରେ ଉକ୍ତ କାର୍ଯ୍ୟକ୍ରମ ଲାଗି ଖାଦ୍ୟଶସ୍ୟର ମୂଲ୍ୟ ସମେତ ମଜୁରୀ ଓ ଅଣ-ମଜୁରୀ ବାବଦରେ ମୋଟ୍ ୩ କୋଟି ୭୪ ଲକ୍ଷ ୨୭ ହଜାର ଟଙ୍କା ବିନିଯୋଗ ହୋଇଛି । ଶ୍ରମିକମାନଙ୍କୁ ୨୬୧୮.୫୮ ମେଟ୍ରିକ୍ ଟନ୍ ଚାଉଳ ଓ ୨୮୭୧.୭୩ ମେଟ୍ରିକ୍ ଟନ୍ ଗହମ ଯୋଗାଇ ଦିଆଯାଇଛି ।

ଚଳିତ ଆର୍ଥିକ ବର୍ଷରେ ଗତମାସ ସୁଦ୍ଧା ଏହି କାର୍ଯ୍ୟକ୍ରମ ଦ୍ୱାରା ଶ୍ରମଜୀବୀମାନଙ୍କ ଲାଗି ୪୮ ଲକ୍ଷ ୧୬ ହଜାର ଶ୍ରମ ଦିବସ ସୃଷ୍ଟିକରାଯାଇ ୨୬ ଲକ୍ଷ ୩୫ ହଜାର ଶ୍ରମ ଦିବସରେ ତପସିଲଭୁକ୍ତ ଜାତି ଓ ୨୮ ଲକ୍ଷ ୩୭ ହଜାର ଶ୍ରମ ଦିବସରେ ତପସିଲଭୁକ୍ତ ସଂପ୍ରଦାୟର ଶ୍ରମିକଙ୍କ ଲାଗି ନିଯୁକ୍ତି ସୁବିଧା ସୃଷ୍ଟି କରାଯାଇଛି । ଏହାଦ୍ୱାରା ୨୩ ଲକ୍ଷ ୪୪ ହଜାର ଶ୍ରମ ଦିବସରେ ଭୂମିହୀନ ଶ୍ରମିକ ଓ ୧୫ ଲକ୍ଷ ୧ ହଜାର ଶ୍ରମ ଦିବସରେ ମହିଳା ଶ୍ରମିକମାନେ ଉପକୃତ ହୋଇଛନ୍ତି । ଗତମାସ ସୁଦ୍ଧା ଶ୍ରମିକମାନଙ୍କ ଲାଗି ଖାଦ୍ୟଶସ୍ୟର ମୂଲ୍ୟ ସମେତ ମଜୁରୀ ଓ ଅଣ-ମଜୁରୀ ବାବଦରେ ୧୪ କୋଟି ୩୯ ଲକ୍ଷ ୭ ହଜାର ଟଙ୍କା ବ୍ୟୟ ହୋଇଛି । ଶ୍ରମିକମାନଙ୍କୁ ୧୦,୫୫୫.୧୪ ମେଟ୍ରିକ୍ ଟନ୍ ଚାଉଳ ଓ ୧୧,୫୫୭.୧୨ ମେଟ୍ରିକ୍ ଟନ୍ ଗହମ ଦିଆଯାଇଛି ।

## ଫୁଲବାଣୀ ଜିଲ୍ଲାରେ ଆତ୍ମ ନିଯୁକ୍ତି

ଫୁଲବାଣୀ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ମାଧ୍ୟମରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରୁ ଦାରିଦ୍ର୍ୟ ସୀମାରେଖା ତଳେ ରହିଯାଇଥିବା ୧୮ ବର୍ଷରୁ ୩୫ ବର୍ଷ ଯୁବ କାରିଗରମାନଙ୍କୁ ବଢ଼େଇ, କମାର, ଦରଜୀ, କୁମ୍ଭାର, ସାଇକେଲ ମରାମତି ଇତ୍ୟାଦି କାମ ନିମନ୍ତେ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଇ ଆତ୍ମ ନିଯୁକ୍ତିର ସୁବିଧା ସୃଷ୍ଟି କରାଯାଇଛି । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଜିଲ୍ଲାରେ ଷଷ୍ଠ ଯୋଜନା କାଳ ମଧ୍ୟରେ ମୋଟ୍ ୧୫ ଲକ୍ଷ ୮୩ ହଜାର ୧୯୨ ଟଙ୍କା ବିନିଯୋଗ କରାଯାଇ ୨,୯୨୫ ଜଣଙ୍କୁ ବୈଷୟିକ ତାଲିମ ଦିଆଯିବା ସଙ୍ଗେ ସଙ୍ଗେ ୨,୪୬୦ ଜଣଙ୍କୁ ଥଇଥାନ କରାଯାଇଛି । ସପ୍ତମ ଯୋଜନାର ୧୯୮୫-୮୬ ବର୍ଷ ମଧ୍ୟରେ ମୋଟ୍ ୫ ଲକ୍ଷ ୧୫ ହଜାର ୭୨୫ ଟଙ୍କା ବିନିଯୋଗରେ ୫୧୯ ଜଣଙ୍କୁ ତାଲିମ ଦିଆଯାଇ ସେଥି ମଧ୍ୟରୁ ୪୧୨ ଜଣଙ୍କୁ ଥଇଥାନ କରାଯାଇଥିବା ସ୍ଥଳେ ୧୯୮୬-୮୭ ବର୍ଷ ମଧ୍ୟରେ ତାହା ବୃଦ୍ଧିପାଇ ମୋଟ୍ ୫ ଲକ୍ଷ ୭୩ ହଜାର ୧୧୭ ଟଙ୍କା ବ୍ୟୟରେ ୧,୦୪୫ ଜଣଙ୍କୁ ତାଲିମ ଦିଆଯାଇ ସେଥିମଧ୍ୟରୁ ୧୬୯ ଜଣଙ୍କୁ ଥଇଥାନ କରାଯାଇଛି ।

ସେହିପରି କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ସାହାଯ୍ୟ କାର୍ଯ୍ୟକ୍ରମରେ ଷଷ୍ଠ ଯୋଜନାର ଶେଷ ଦୁଇବର୍ଷ ମଧ୍ୟରେ ୩୦ ଲକ୍ଷ ୪୬ ହଜାର ଟଙ୍କା ବ୍ୟୟରେ ୧୬,୨୩୨ ଜଣ ଚାଷୀଙ୍କୁ ସାହାଯ୍ୟ ଯୋଗାଇ ଦିଆଯାଇଥିଲା । ସପ୍ତମ ଯୋଜନାର ପ୍ରଥମ ବର୍ଷ

୧୮ ଲକ୍ଷ ୫୮ ହଜାର ଟଙ୍କା ବ୍ୟୟ କରାଯାଇ ୫,୨୦୨ ଜଣଙ୍କୁ ଦ୍ୱିତୀୟ ବର୍ଷରେ ୫୦ ଲକ୍ଷ ୩୦ ହଜାର ଟଙ୍କା ବ୍ୟୟ କରାଯାଇ ୨,୮୨ ଜଣଙ୍କୁ ଏବଂ ଚଳିତ ବର୍ଷର ଜୁଲାଇ ସୁଦ୍ଧା ମୋଟ ୪ ଲକ୍ଷ ୨୪ ହଜାର ଟଙ୍କା ବ୍ୟୟ କରାଯାଇ ୨୨୪ ଜଣଙ୍କୁ ସାହାଯ୍ୟ ଯୋଗାଇ ଦିଆଯାଇଛି । ଚଳିତ ବର୍ଷ ମଧ୍ୟରେ ମୋଟ ୧୦ ଲକ୍ଷ ୭୫ ହଜାର ଟଙ୍କା ବ୍ୟୟ କରାଯାଇ ୭,୯୫୦ ଜଣଙ୍କୁ ଏହିଭଳି ସାହାଯ୍ୟ କରାଯିବାର ଲକ୍ଷ୍ୟ ରଖାଯାଇଛି ।

ଚାଷୀମାନଙ୍କ ମଧ୍ୟରେ ମାଗଣା ମିନିକିଟ୍ ବଣ୍ଟାଯାଇ ଶୁଷ୍କ ଚାଷଜମିରେ ଶସ୍ୟ ଆଦାୟର ସୁବିଧା ସୃଷ୍ଟି କରାଯିବା ଫଳରେ ଚାଷୀମାନେ ଚିନାବାଦାମ, ମୁଗ ଓ ବିରି ଚାଷପ୍ରତି ଆଗ୍ରହ ପ୍ରକାଶ କରିଥିବା ଲକ୍ଷ୍ୟ କରାଯାଉଛି । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ୮ ଲକ୍ଷ ଟଙ୍କା ବ୍ୟୟରେ ୨୫ଟି ଉଠା ଜଳସେଚନ ପ୍ରକଳ୍ପ ମଞ୍ଜୁରୀ କରାଯାଇଥିବା ଜଣାଯାଏ । ଏହା ବ୍ୟତୀତ ୩୪ଟି ଜଳ ... ମଧ୍ୟ ପ୍ରକଳ୍ପ ନିମନ୍ତେ ଅର୍ଥର ବ୍ୟବସ୍ଥା କରାଯାଇ କାମ ... ଯାଉଛି ।

## ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ଉତ୍ସବ

ଆସନ୍ତା ନଭେମ୍ବର ୧୪ ତାରିଖ ଠାରୁ ୨୩ ତାରିଖ ପର୍ଯ୍ୟନ୍ତ ୧୦ ଦିନ ବ୍ୟାପି ଭୁବନେଶ୍ୱର ଓ କଟକରେ ପଞ୍ଚମ ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ଉତ୍ସବ ଅନୁଷ୍ଠିତ ହେଉଥିବାରୁ ଏହାର ସଫଳତା ପାଇଁ ବ୍ୟାପକ ଆୟୋଜନ କରାଯାଉଛି । ଭାରତୀୟ ଶିଶୁ ଚଳଚ୍ଚିତ୍ର ସମିତି, ଭାରତ ସରକାର ଓ ଓଡ଼ିଶା ସରକାରଙ୍କ ମିଳିତ ଉଦ୍ୟମରେ ପ୍ରଥମ ଥର ପାଇଁ ଓଡ଼ିଶାରେ ଏ ଧରଣର ଆନ୍ତର୍ଜାତିକ ଉତ୍ସବ ଅନୁଷ୍ଠିତ ହେଉଛି ।

ଏହି ପୂର୍ବରୁ ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ଉତ୍ସବ ଭାରତର ମୁଖ୍ୟ ସହର ଯଥା—ବମ୍ବେ, ମାଡ୍ରାଜ, କଲିକତା ଓ ବାଙ୍ଗାଲୋର ଠାରେ ଅନୁଷ୍ଠିତ ହୋଇଥିଲା । ଭାରତବର୍ଷରେ ଅନୁଷ୍ଠିତ ହେଉଥିବା ଶିଶୁ ଚଳଚ୍ଚିତ୍ର ଉତ୍ସବ ସମଗ୍ର ଏସିଆରେ ସର୍ବୋତ୍ତମ ଏବଂ ପ୍ୟାରିସ୍‌ଠାରେ ସ୍ଥାପିତ ଆନ୍ତର୍ଜାତିକ ଶିଶୁ ଓ ଯୁବ ଚଳଚ୍ଚିତ୍ର ପ୍ରତିଷ୍ଠାନ ଦ୍ୱାରା ବିଶେଷ ସ୍ଥାନ ଓ ସ୍ୱୀକୃତି ଲାଭ କରିପାରିଛି । ଏ ଧରଣର ଚଳଚ୍ଚିତ୍ର ଉତ୍ସବ ମୁଖ୍ୟତଃ ସୋଭିଏତ୍ ଋଷିଆ, ଯୁକ୍ତରାଷ୍ଟ୍ର ଆମେରିକା, ଫ୍ରାନ୍ସ ... ସ୍ପେନ୍‌ରେ ଅନୁଷ୍ଠିତ ହୋଇଥାଏ ।

ଓଡ଼ିଶା ସରକାର ପଞ୍ଚମ ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ଉତ୍ସବ ପାଇଁ ସବୁ ପ୍ରକାର ସାହାଯ୍ୟ ସହଯୋଗ ଯୋଗାଉଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ପରିଚାଳନା କମିଟିର ସଭାପତି ଅଛନ୍ତି । ଏହି ଉତ୍ସବର ସଫଳତା ପାଇଁ ସେ ବିଶେଷ ଆଗ୍ରହ ପ୍ରକାଶ କରିଛନ୍ତି । ଶିଳ୍ପ ମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ କାର୍ଯ୍ୟ ନିର୍ବାହୀ କମିଟିର ଅଧ୍ୟକ୍ଷ ଅଛନ୍ତି । ଚଳଚ୍ଚିତ୍ର ଜଗତର ବହୁ ବିଶିଷ୍ଟ ବ୍ୟକ୍ତି ଓ ଉଚ୍ଚ ସରକାରୀ କର୍ମଚାରୀମାନଙ୍କୁ ନେଇ ୧୯ ଗୋଟି ସବ୍‌କମିଟି ଗଠିତ ହୋଇଛି ।

ଶିଳ୍ପ ବିଭାଗର ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଏହି ଉତ୍ସବର ନିର୍ଦ୍ଦେଶକ ରହିଛନ୍ତି । ଓଡ଼ିଶା ଚଳଚ୍ଚିତ୍ର ଉନ୍ନୟନ କର୍ପୋରେସନ୍‌ର ମ୍ୟାନେଜିଂ ଡିରେକ୍ଟର ଶ୍ରୀ ପି. କେ. ମିଶ୍ର ଓ ଦକ୍ଷିଣ ... ଚଳଚ୍ଚିତ୍ର ଶ୍ରମ ଅଫ୍ କମର୍ସର ସଭାପତି ଶ୍ରୀ ଆର. ଲକ୍ଷ୍ମଣ ... ଉତ୍ସବର କାର୍ଯ୍ୟ ନିର୍ବାହୀ ନିର୍ଦ୍ଦେଶକ ଭାବରେ କାର୍ଯ୍ୟ ... ଛନ୍ତି ।

ଏହି ଶିଶୁ ଚଳଚ୍ଚିତ୍ର ଉତ୍ସବରେ ଭାରତ ଓ ଭାରତ ବାହାରୁ ବହୁ ବିଶିଷ୍ଟ ଚଳଚ୍ଚିତ୍ର ନିର୍ମାତା, କଳାକାର, ନିର୍ଦ୍ଦେଶକ ଓ ବୈଷୟିକ ବ୍ୟକ୍ତି ଯୋଗ ଦେବେ । ଭାରତର ପ୍ରତି ରାଜ୍ୟରୁ ୫ ଜଣ ଶିଶୁ ପ୍ରତିନିଧି, ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରୁ ୫ ଜଣ ଶିଶୁ ପ୍ରତିନିଧି ଓ କଟକ ଏବଂ ଭୁବନେଶ୍ୱରରୁ ୧୦୦ ଜଣ ଶିଶୁ ପ୍ରତିନିଧି ଏହି ଉତ୍ସବରେ ଯୋଗ ଦେବେ ।

ଭୁବନେଶ୍ୱରର ୪ ଗୋଟି ସିନେମା ହଲ୍‌ରେ ଏବଂ କଟକର ୮ ଗୋଟି ସିନେମା ହଲ୍‌ରେ ଏହି ଉତ୍ସବ ସମୟ ମଧ୍ୟରେ ଶିଶୁ ଚଳଚ୍ଚିତ୍ରମାନ ପ୍ରଦର୍ଶିତ ହେବ । ପ୍ରତି ଟିକେଟ୍‌ର ମୂଲ୍ୟ ବାଲକୋନି ପାଇଁ ଏକ ଟଙ୍କା ଓ ଅନ୍ୟ ଆସନ ପାଇଁ ୫୦ ପଇସା ଧାର୍ଯ୍ୟ କରାଯାଇଛି ।

ପୃଥିବୀର ବିଭିନ୍ନ ଦେଶର ଶିଶୁ ଚଳଚ୍ଚିତ୍ର ଏହି ଉତ୍ସବରେ ଅଂଶ ଗ୍ରହଣ କରିବେ ଏବଂ ଏ ପର୍ଯ୍ୟନ୍ତ ୧୦୨ ଗୋଟି ଶିଶୁ ଚଳଚ୍ଚିତ୍ର ଏଥିପାଇଁ ସମ୍ମତି ଦେଇ ସାରିଲେଣି ।

ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧି ଆସନ୍ତା ନଭେମ୍ବର ୧୪ ତାରିଖ ଦିନ କଟକର ଇନ୍‌ଡୋର ଷ୍ଟାଡ଼ିୟମ୍ ଠାରେ ଏହି ଉତ୍ସବକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିବେ ବୋଲି ଆଶା କରାଯାଉଛି ।

## କେନ୍ଦୁଝରରେ ଋଣ ମେଳା

କେନ୍ଦୁଝର ଜିଲ୍ଲା ସଦର ବ୍ଲକ୍‌ର କେନ୍ଦୁଝରଗଡ଼ ଏବଂ ପଦ୍ମପୁରଠାରେ ସଂପ୍ରତି ଋଣମେଳା ଅନୁଷ୍ଠିତ ହୋଇ ମୋଟ୍ ୫୦୫ ଜଣ ଦରିଦ୍ର ଲୋକଙ୍କୁ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ମାଧ୍ୟମରେ ଋଣ ବଣ୍ଟନ କରାଯାଇଛି । ତନ୍ମଧ୍ୟରୁ ଆଇ.ଆର.ଡି.ପି. ଯୋଜନାରେ ୨୪୫ ଜଣ, ଇ. ଆର. ଆର. ପି. ଯୋଜନାରେ ୧୧୫ ଜଣ, ଆଇ:ଟି:ଡି:ଏ:କାର୍ଯ୍ୟକ୍ରମରେ ୧୨୬ ଜଣ ଏବଂ ଏସ୍:ସି:ପି: ଯୋଜନାରେ ୧୧ ଜଣଙ୍କୁ ଋଣ ପ୍ରଦାନ କରାଯାଇଛି । ସେମାନଙ୍କ ମଧ୍ୟରେ ୩୬୨ ଜଣ ଆଦିବାସୀ, ୪୪ ଜଣ ହରିଜନ, ୧୩ ଜଣ ମହିଳା ଓ ୨୨ ଜଣ ଅନ୍ୟାନ୍ୟ ସଂପ୍ରଦାୟର ଜନସାଧାରଣ ଅନ୍ତର୍ଭୁକ୍ତ । ଏହି ଋଣମେଳାରେ ୧୩ ଲକ୍ଷ ୬୫ ହଜାର ଟଙ୍କା ବିନିଯୋଗରେ ଦୁଗ୍ଧ ପାନୀ ଗାଈ, ବଳଦ, ଡିଙ୍ଗେର ପଂପ୍, ଛେଳି, ମେଣ୍ଢା, ରିକ୍ସା, ମାଛଧରା ଉପକରଣ ଏବଂ କ୍ଷୁଦ୍ର ବ୍ୟବସାୟ ଇତ୍ୟାଦି ପାଇଁ ଗରିବ ଲୋକମାନଙ୍କୁ ଋଣ ଯୋଗାଇ ଦିଆଯାଇଛି ବୋଲି ଜଣାପଡ଼ିଛି ।

## ମରୁଡ଼ି ବିରୁଦ୍ଧରେ ସଂଗ୍ରାମ

ଢେଙ୍କାନାଳ ଜିଲ୍ଲାରେ ଦେଖାଦେଇଥିବା ସଂପ୍ରତିର ମରୁଡ଼ିର ପ୍ରତିକାର ପାଇଁ ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରାଯାଉଛି । ଚାଷୀମାନଙ୍କୁ ରବିଋତୁ ସମସ୍ତ ଚାଷ ଜମିରେ ଯେପରି ଫସଲ କରାଯାଏ, ସେଥିପାଇଁ କୃଷି ବିଭାଗ ପଦକ୍ଷେପ ଗ୍ରହଣ କରିବାକୁ ଚାହାଁଯାଉଛି । ଚାଷୀମାନଙ୍କୁ ସୁବିଧାରେ ବିହନ ଓ ସାର ଯୋଗାଇ ଦେବା ନିମନ୍ତେ କୃଷି ବିଭାଗ ଦ୍ୱାରା ଏହି ଜିଲ୍ଲାରେ ୭୬ଟି ବିକ୍ରୟ କେନ୍ଦ୍ର ଖୋଲାଯାଇ ବିରି, ମୁଗ, ରାଶି ଓ ସୋରିଷ ବିହନ ଯୋଗାଇ ଦିଆଯାଉଛି ବୋଲି ସଂପ୍ରତି ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଜିଲ୍ଲା ଉନ୍ନୟନ କମିଟି ବୈଠକରେ ପ୍ରକାଶ ପାଇଛି । ●●●

# ସ୍ୱାଧୀନତା ସଂଗ୍ରାମ ପାଇଁ ଜାତୀୟ ସଂହତିର ଅବଦାନ

ଡଃ ଚୂଳାମଣି ସାହୁ

ଆମର ଜନ୍ମଭୂମି ପବିତ୍ର ଭାରତବର୍ଷ ଏକ ବିଶାଳ ଦେଶ । ବହୁ ଉପନଦୀର ମିଳନରେ ବଡ ନଦୀର ଉଦ୍ଭବ ହେବା ପରି ବିଭିନ୍ନ ଜାତି, ଧର୍ମ, ଭାଷା, କଳା ଓ ସଂସ୍କୃତିର ସମନ୍ୱୟରେ ସୃଷ୍ଟି ହୋଇଛି ମହାନ୍ ଭାରତୀୟ ସଭ୍ୟତା । ଏ ସଭ୍ୟତାର ବିକାଶ ତଥା ସୁରକ୍ଷା ପାଇଁ ସମଗ୍ର ଭାରତବାସୀଙ୍କ ଭିତରେ ଜାତୀୟ ସଂହତି ରହିବା ଅପରିହାର୍ଯ୍ୟ । କେବଳ ଏକ ଶାସନାଧୀନ ହୋଇ ରହିଲେ ଯେ ଦେଶର ଜାତୀୟ ସଂହତି ସୁରକ୍ଷିତ ହୋଇ ରହିବ ଏହା କୁହାଯାଇ ନ ପାରେ । ଦେଶର ସାମୂହିକ ସ୍ୱାର୍ଥ ଓ କଲ୍ୟାଣ ପ୍ରତି ସଚେତନ ହୋଇ, ଦେଶକୁ ନିଜର ମାତୃଭୂମି ରୂପେ ବିବେଚନା କରି, ଜନସାଧାରଣ ଦେଶାତ୍ମବୋଧ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଭାତୃଭାବରେ ଏକତାବଦ୍ଧ ହେବା ଦ୍ୱାରା ଜାତୀୟ ସଂହତି ପ୍ରତିଷ୍ଠିତ ହୋଇଥାଏ । ଜାତୀୟ ଜୀବନ ଓ ଜାତୀୟ ଚରିତ୍ର ହିଁ ଜାତୀୟ ସଂହତିର ପ୍ରଧାନ ପରିପୋଷକ । ଜାତୀୟ ଜୀବନର ଅଭାବରେ ଦେଶର ଅଖଣ୍ଡତା ପ୍ରତି ଯେପରି ବିପଦ ଦେଖାଯାଏ, ସେହିପରି ଜାତୀୟ ଚରିତ୍ରର ଅବନତି ଘଟିଲେ ଦେଶରେ ଦୁର୍ନୀତି, ବ୍ୟଭିଚାର ଓ ଅନ୍ୟାୟ ବହୁପରିମାଣରେ ବଢିଯାଏ । ତେଣୁ ଜଣେ ଉପଯୁକ୍ତ ନାଗରିକ ହିସାବରେ ଏହି ଦୁଇ ବିଷୟରେ ସମନ୍ୱୟ ରକ୍ଷାକରି ନିଜର କର୍ତ୍ତବ୍ୟକୁ ନିରୂପଣ କରିବା ବାଞ୍ଛନୀୟ ।

ଭାରତର ଇତିହାସକୁ ଅନୁଧ୍ୟାନ କଲେ ଅନୁମିତ ହୁଏ ଯେ ଜାତୀୟ ସଂହତି ଚେତନା ଭାରତବାସୀଙ୍କ ଅନ୍ତରରେ ଅନାଦି କାଳରୁ ରହିଆସିଛି, ହିମାଳୟଠାରୁ କୁମାରୀକା ପର୍ଯ୍ୟନ୍ତ ସମଗ୍ର ଭୂଭାଗକୁ ନେଇ ପ୍ରାଚୀନ କାଳରୁ ଦୂରଦ୍ରଷ୍ଟା ମୁନିଋଷିମାନେ ଏ ଦେଶର ନାମ କରଣ କରିଛନ୍ତି 'ଭାରତବର୍ଷ' । ଏ ଦେଶରେ ଜନ୍ମ ଗ୍ରହଣ କରିଥିବା ବାଲ୍ମୀକି, ବ୍ୟାସ, ବୁଦ୍ଧ, ଜୀନ ଓ ଅଶୋକ ଆଦି ମହାପୁରୁଷଙ୍କ ଐତିହାସିକ କୀର୍ତ୍ତିରାଜି ଏ ଦେଶବାସୀଙ୍କୁ ମହାନ ଅତୀତର ପରିଚୟ ଦିଏ । ବାଲ୍ମୀକି ରାମାୟଣ ଓ ବ୍ୟାସକୃତ ମହାଭାରତ ଭାରତୀୟ ମାନଙ୍କୁ ଏବେ ମଧ୍ୟ ଧର୍ମ, ଦର୍ଶନ ଓ ନୈତିକ ଦିଗ୍‌ଦର୍ଶନ ଦେବାରେ ପ୍ରଧାନ ଆଲୋକସ୍ତମ୍ଭ ରୂପେ କାର୍ଯ୍ୟ କରି ଆସୁଛି । ଏ ଦେଶର ବୁଦ୍ଧ କେବଳ ଭାରତର ନୁହନ୍ତି, ସମଗ୍ର ଏସିଆର ଆଲୋକ । ସେ ଜାତିଭେଦ ପ୍ରଥା ସଂକୀର୍ଣ୍ଣତାକୁ ପରିହାର କରି ଜାତୀୟ ସଂହତି ପାଇଁ ପରସ୍ପର ସହାବସ୍ଥାନ ନୀତିକୁ ପ୍ରଚାର କରି ଯାଇଥିଲେ । ପୃଥିବୀର ନରପତିମାନଙ୍କ ଭିତରେ ଶ୍ରେଷ୍ଠ ସମ୍ରାଟ ଅଶୋକ ଜାତି ଧର୍ମକୁ ବିଚାର ନକରି ଦେଶରେ ସାମ୍ୟ, ମୈତ୍ରୀ ଓ ଭ୍ରାତୃତ୍ୱର ବାଣୀକୁ ପ୍ରଚାର କରି ଯାଇଥିଲେ । ସେଥିପାଇଁ ଆମର ଜାତୀୟ ପତାକାରେ ସମ୍ମାନର ଚିହ୍ନ ସ୍ୱରୂପ ଅଶୋକ ଚକ୍ରକୁ ଚିହ୍ନିତ କରି ରଖା ଯାଇଛି । ସମ୍ରାଟ ସମୁଦ୍ରଗୁପ୍ତ ବ୍ରାହ୍ମଣ୍ୟ ଧର୍ମର ଉପାସକ ହେଲେ ମଧ୍ୟ, ଉଦାର ଚିତ୍ତରେ ସିଂହଳର ରାଜା ମେଘବର୍ଣ୍ଣଙ୍କୁ ଭାରତରେ ବୌଦ୍ଧମଠ ନିର୍ମାଣ କରିବାକୁ ଅନୁମତି ଦେଇଥିଲେ । ମହାତ୍ମା କବୀର ସମସ୍ତଙ୍କୁ ଈଶ୍ୱରଙ୍କର ସନ୍ତାନ ରୂପେ ସମ୍ମାନ ଦେଉଥିଲେ । ଜାତିଭେଦ ପ୍ରଥାକୁ ପରିହାର କରିବା ପାଇଁ ସେ ହିନ୍ଦୁ ଓ ମୁସଲମାନଙ୍କୁ ନିଜର ଶିଷ୍ୟରୂପେ ଗ୍ରହଣ କରିଥିଲେ । ଶିଖ ଧର୍ମର ପ୍ରତିଷ୍ଠାତା ଗୁରୁ ନାନକ ଦେବ ସମଗ୍ର ମାନବ ସମାଜକୁ ଗୋଟିଏ ଜାତି ବୋଲି ଅଭିହିତ କରିଥିଲେ । ସେହିପରି ହରି ନାମ ପ୍ରେମ ପ୍ରଚାର କରିଥିବା ଭକ୍ତ ଚୈତନ୍ୟ ଯବନ ହରିଦାସଙ୍କୁ ନିଜର ଶିଷ୍ୟ ରୂପେ ଗ୍ରହଣ କରିବାକୁ କୁଣ୍ଠା ପ୍ରକାଶ କରି ନଥିଲେ । ଏଥିରୁ ଜଣାଯାଏ ଅତୀତରେ ଜାତୀୟ ସଂହତି ପ୍ରତିଷ୍ଠା କରିବା ପାଇଁ ଧର୍ମ ଏକ ପ୍ରଧାନ ପ୍ରାଚୀର ପରି ଦଣ୍ଡାୟମାନ ହୋଇ ନଥିଲା ।

ଭାଷା ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ ଭକ୍ତି ଧର୍ମର ଗୁରୁମାନଙ୍କ ଭିତରୁ ଶଙ୍କରାଚାର୍ଯ୍ୟ, ରାମାନୁଜ, ନିମ୍ବାର୍କ, ଚୈତନ୍ୟ, ରାମକୃଷ୍ଣ ପରମହଂସ, ତୁଳସୀ ଦାସ ଆଦି ମହାପୁରୁଷମାନେ ଆଞ୍ଚଳିକ ଭାଷାରେ ନିଜର ମତବାଦ ପ୍ରଚାର କରି ଯାଉଥିଲେ । ସେତେବେଳେ ହିନ୍ଦି ଓ ପଞ୍ଜାବୀ ଭାଷା ଉତ୍ତର ଭାରତରେ, ପଶ୍ଚିମ ଭାରତରେ ଗୁଜରାଟି, ପୂର୍ବଭାରତରେ ବଙ୍ଗଳା, ଓଡ଼ିଆ ଓ ଅସମୀୟା, ଉତ୍ତର ପଶ୍ଚିମରେ ମରହଟ୍ଟା, ମହିଶୂରରେ କନ୍ନଡ, ଆନ୍ଧ୍ରରେ ତେଲୁଗୁ ଓ ତାମିଲ, କେରଳରେ ମାଲାୟଲମ୍ ଭାଷାର ପ୍ରଚଳନ ଥିଲା । ହିନ୍ଦି ଓ ପାରସି ଭାଷାର ସମ୍ମିଶ୍ରଣରେ 'ଉର୍ଦ୍ଦୁ' ନାମରେ ଏକ ନୂତନ ଭାଷା ମଧ୍ୟ ସୃଷ୍ଟି ହୋଇଥିଲା । ସଂସ୍କୃତ ଭାଷା ଥିଲା ସବୁ ଭାଷା ଗୁଡ଼ିକର ଜନନୀ ସ୍ୱରୂପ । ତେଣୁ ଜାତୀୟ ସଂହତି ବିରୁଦ୍ଧରେ କୌଣସି ଭାଷା ପ୍ରତିବନ୍ଧକ ସୃଷ୍ଟି କରିନଥିଲା ।

ଶାସନଗତ ଦୃଷ୍ଟିରୁ ଭାରତକୁ ବିଭିନ୍ନ ସମୟରେ କୁଶାଣ, ଶକ, ହୂଣ, ମୁସଲମାନ, ମୋଗଲ ଓ ଇଂରେଜ ଆଦି ଜାତିମାନେ ଶାସନରେ ରଖି ପାରିଥିଲେ । ବିଭିନ୍ନ ଜାତିର ଲୋକ ଓ ସେମାନଙ୍କ ଭିତରେ ଥିବା ଭିନ୍ନ ସାଂସ୍କୃତିକ ଚେତନା ଆମ ଦେଶର ସଂସ୍କୃତିକୁ ଢେର ଅଧିକ ସମୃଦ୍ଧ କରି ମହୀୟାନ କରି ଗଢି ତୋଳିଲା । ବିଶେଷକରି ମୋଗଲ ସମ୍ରାଟ ଆକବର ଜାତୀୟ ସଂହତିକୁ ସୁଦୃଢ କରିବା ପାଇଁ ତାଙ୍କ ରାଜ ଦରବାରରେ ବୀରବଳ, ତୋଡରମଲ୍ଲ, ଭଗବାନ ଦାସ ଓ ମାନସିଂଙ୍କ ପରି ହିନ୍ଦୁମାନଙ୍କୁ ବହୁ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଅର୍ପଣ କରିଥିଲେ । ଫତେପୁରସିକ୍ରୀ ଠାରେ 'ଇବାଦତ ଖାନା' ନାମକ ଏକ ଉପାସନା ଗୃହ ନିର୍ମାଣ କରି ସେଠାରେ ହିନ୍ଦୁ, ମୁସଲମାନ, ପାର୍ସି ଓ ଜୈନ୍ୟ ଆଦି ଧର୍ମର ପଣ୍ଡିତମାନଙ୍କୁ ଧର୍ମୀ

ଭଣିବାକୁ ନିମନ୍ତ୍ରଣ କରିଥିଲେ । ତାଙ୍କ ପୁତ୍ର ଜାହାଙ୍ଗୀର ମଧ୍ୟ ରାଜପୁତ ପରିବାରର ଯୋଧବାଈ ଓ ମାନବାଈ ନାମକ ଦୁଇଜଣ କନ୍ୟାଙ୍କୁ ବିବାହକରି ମହାନତାର ପରିଚୟ ଦେଇଥିଲେ ।

ଇଂରେଜମାନେ ଏ ଦେଶକୁ ଅଧିକାର କରିବା ପରେ ହିନ୍ଦୁକୁଶଠାରୁ ବ୍ରହ୍ମଦେଶ ଓ ହିମାଳୟ ଠାରୁ କୁମାରୀକା ପର୍ଯ୍ୟନ୍ତ ଏକ ବିଶାଳ ଭୂଖଣ୍ଡ ଏକ ଶାସନାଧୀନରେ ରହିଲା । ଦେଶର ସବୁଆଡେ ଗୋଟିଏ ପ୍ରକାର ଆଇନ କାନୁନ ପ୍ରଚଳିତ ହେଲା । କୋର୍ଟ କଚେରୀ ସ୍ଥାପିତ ହେଲା । ଆଇନ ଆଗରେ ହିନ୍ଦୁ, ମୁସଲମାନ, ବ୍ରାହ୍ମଣ ଶୂଦ୍ର, ବଙ୍ଗାଳୀ ତେଲୁଗୁ ଆଦି କୌଣସି ପାର୍ଥକ୍ୟ ରହିଲା ନାହିଁ । ଏହି ସମୟରେ ଭାରତରେ ରେଳପଥ, ଛାପାଖାନା, ଡାକ ଓ ତାର ପ୍ରଥା ପ୍ରଚଳନ ହେଲା । ଯାହାଫଳରେ ଉଚ୍ଚନୀଚ, ଛୁଆଁ ଅଛୁଆଁ ଭୁଲି ଲୋକମାନେ ରେଳରେ ଯାତାୟାତ କଲେ । ଲୋକଙ୍କ ଭିତରେ ଭାବ ବିନିମୟ କରିବାର ପଥ ସୁଗମ ହେଲା । ଭାରତର ବିଭିନ୍ନ ଭାଷା ଓ ଧର୍ମର ଲୋକ ନିଜକୁ ଗୋଟିଏ ଜାତିର ଲୋକବୋଲି ମନେ କଲେ । ଯାହା ଫଳରେ ଦେଶବାସୀଙ୍କ ମଧ୍ୟରେ ଜାତୀୟ ଏକତା ଦୃଢୀଭୂତ ହୋଇ ପ୍ରତିଷ୍ଠିତ ହେଲା ।

କିନ୍ତୁ ଇଂରେଜମାନଙ୍କର ଅର୍ଥନୈତିକ ଶୋଷଣ ନୀତି ଓ ଅକଥନୀୟ ଅତ୍ୟାଚାର ଭାରତୀୟମାନଙ୍କୁ ସ୍ୱାଧୀନତା ସଂଗ୍ରାମ କରିବା ପାଇଁ ପ୍ରେରଣା ଯୋଗାଇଲା । ହିନ୍ଦୁ ଓ ମୁସଲମାନ ଧର୍ମ ବିଶ୍ୱାସ ମୂଳରେ କୁଠାରଘାତ ଓ ରାଜ୍ୟସ୍ୱତ୍ୱ ଲୋପ ନୀତି ଯୋଗୁ ୧୮୫୭ ମସିହାରେ ଇଂରେଜ ଜାତି ବିରୁଦ୍ଧରେ ଏକ ବିଦ୍ରୋହ ସଂଗଠିତ ହେଲା । ତାହାହିଁ ଥିଲା ଭାରତୀୟ ସ୍ୱାଧୀନତା ସଂଗ୍ରାମର ପ୍ରଥମ ସୋପାନ । ଏହା ଜାତି ଧର୍ମ ନିର୍ବିଶେଷରେ ଭାରତୀୟମାନଙ୍କ ମନରେ ଏକତା ଓ ଜାତୀୟତାବୋଧ ଜାଗ୍ରତ କରିଥିଲା । ଜାତିଗତ ପାର୍ଥକ୍ୟ ଓ ଆଞ୍ଚଳିକ ଭେଦଭାବକୁ ଭୁଲି ଝାନ୍ସୀର ରାଣୀ ଲକ୍ଷ୍ମୀବାଈ, ମୋଗଲ ସମ୍ରାଟ ବାହାଦୁର ଶାହ, ମରହଟ୍ଟା ନେତା ନାନା ସାହେବ ଓ ତାନ୍ତିଆ ତୋପୀ, ରାଜପୁତ ସର୍ଦ୍ଦାର କନୱାର ସିଂହ, ଓଡ଼ିଶାର ନେତା ବୀର ସୁରେନ୍ଦ୍ର ସାଏ, ଅଯୋଧ୍ୟାର ନବାବଙ୍କ ଅନୁଚର ଅହମ୍ମଦ ଉଲ୍ଲା ପ୍ରଭୃତି ବୀରବୃନ୍ଦ ସମ୍ମିଳିତ ଭାବରେ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଏହି ବିଦ୍ରୋହରୁ ଭାରତର ଜାତୀୟ ସଂହତି କେତେ ଦୃଢ ତାହା ଇଂରେଜମାନେ ଅନୁମାନ କରିନେଲେ । ତେଣୁ ଇଷ୍ଟଇଣ୍ଡିଆ କମ୍ପାନୀ ହାତରୁ ଶାସନ କ୍ଷମତା ମହାରାଣୀ ଭିକ୍ଟୋରିଆ ନିଜ ହାତକୁ ନେଇ ଭାରତର ଶାସନ କ୍ଷେତ୍ରରେ ଅନେକ ପରିବର୍ତ୍ତନ କରିଥିଲେ ।

ପରବର୍ତ୍ତୀ କାଳରେ ଭାରତୀୟ ମାନଙ୍କର ଏକତା ବୃଦ୍ଧି ପାଇବାରେ ଲାଗିଲା । ଜାତୀୟ ଜାଗରଣ ହେତୁ ସର୍ବଭାରତୀୟ ସ୍ତରରେ ଏକ ସଂଗଠନ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ ମଧ୍ୟ ଆରମ୍ଭ ହୋଇଗଲା । ଏହି କାର୍ଯ୍ୟରେ ଆଲାନ୍ ଅକ୍ଟୋଭିଆନ୍ ହ୍ୟୁମ୍ ନାମକ ଜଣେ ଅବସର ପ୍ରାପ୍ତ ଇଂରେଜ କର୍ମଚାରୀ ଭାରତର ନେତାଙ୍କୁ ଦିଗ୍‌ଦର୍ଶନ ଦେଲେ । ତାଙ୍କ ସାହାଯ୍ୟ ସହଯୋଗ ଫଳରେ ୧୮୮୫ ମସିହାରେ ଜନ୍ମନେଲା ଭାରତୀୟ ଜାତୀୟ କଂଗ୍ରେସ । ଏଥିରେ ଭାରତର ବିଭିନ୍ନ ପ୍ରାନ୍ତରୁ ସବୁ ଶ୍ରେଣୀର ଲୋକ ଯୋଗ ଦେଲେ । ଦେଶର ଉନ୍ନତି ପାଇଁ ସ୍ୱଦେଶ ପ୍ରେମୀ କର୍ମୀମାନେ ଜାତି, ଧର୍ମ, ଓ ପ୍ରଦେଶଗତ ପାର୍ଥକ୍ୟ ଭୁଲି ଜାତୀୟ ଭାବଧାରାରେ ଉଦ୍‌ବୁଦ୍ଧ ହେଲେ । ପରାଧୀନତାର ଅନ୍ଧକାରରୁ ଦେଶକୁ ମୁକ୍ତ କରି ସ୍ୱାଧୀନତାର ମଧୁ ଚାଖିବା ପାଇଁ ସେମାନେ ହେଲେ ବଦ୍ଧପରିକର ।

ସେତେବେଳେ ବିହାର, ଓଡ଼ିଶା ଓ ଆସାମ ବଙ୍ଗଶାସନାଧୀନରେ ରହିଥିଲା । ତତ୍କାଳୀନ ବଡଲାଟ ଲର୍ଡ କର୍ଜନ ପୂର୍ବବଙ୍ଗକୁ ଆସାମ ସହିତ ମିଶାଇ ଅନ୍ୟ ଏକ ପ୍ରଦେଶ ଗଠନ କଲେ । ଏହାଦ୍ୱାରା ଭାରତର ଜାତୀୟ ସଂହତି ନଷ୍ଟ ହେଉଛି ବୋଲି ଜାତୀୟ ନେତାମାନଙ୍କର ଧାରଣା ହେଲା । ବଙ୍ଗର ମହାନ୍ ନେତା ବିପିନଚନ୍ଦ୍ର ପାଲଙ୍କ ନେତୃତ୍ୱରେ ଆରମ୍ଭ ହୋଇଗଲା ବଙ୍ଗଭଙ୍ଗ ବିରୋଧୀ ଆନ୍ଦୋଳନ । ଭାରତର ବିଭିନ୍ନ ପ୍ରାନ୍ତରୁ ବଙ୍କିମଚନ୍ଦ୍ରଙ୍କ 'ବନ୍ଦେମାତରମ' ସଙ୍ଗୀତ ଗାଇ ଆନ୍ଦୋଳନକାରୀମାନେ କାରାବରଣ କଲେ । ମହାରାଷ୍ଟ୍ରର ବାଳଗଙ୍ଗାଧର ତିଳକ ଓ ପଞ୍ଜାବ କେଶରୀ ଲାଲା ଲଜପତ୍ ରାୟ ପ୍ରଭୃତି ନେତାମାନେ ଏହି ଆନ୍ଦୋଳନକୁ ଦୃଢ ସମର୍ଥନ ଜଣାଇଥିଲେ ।

ଭାରତରେ ସ୍ୱଦେଶୀ ଆନ୍ଦୋଳନ ଓ ସ୍ୱରାଜ ଦାବୀକରି କେତେକ ଚରମପନ୍ଥୀ ଯୁବକ ଉଗ୍ରଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇଥିଲେ । ମହାରାଷ୍ଟ୍ରର ବାସୁଦେବ ଫାଡକେ ସର୍ବ ପ୍ରଥମେ ସଶସ୍ତ୍ର ବିପ୍ଳବ ଆରମ୍ଭ କରି ମୃତ୍ୟୁ ବରଣ କଲେ । ତାଙ୍କ ପରେ ଭାରତର ବିଭିନ୍ନ ପ୍ରାନ୍ତରୁ ଚରମପନ୍ଥୀମାନେ ସଂଗଠିତ ଭାବରେ ଆନ୍ଦୋଳନକୁ ଅବ୍ୟାହତ ରଖିଲେ । ମହାରାଷ୍ଟ୍ରର ଚାପେକାର, ଦାମୋଦର ସଭରକର, ବଙ୍ଗର ବାରିନ୍ଦ୍ର କୁମାର, ଅରବିନ୍ଦ ଘୋଷ, ଉପେନ୍ଦ୍ର ନାଥ ଦତ୍ତ, କ୍ଷୁଦିରାମ ବୋଷ, ତାମିଲନାଡୁର ଭଆଞ୍ଚିକାର, ବିଣାଦାସ, ତଞ୍ଜୁ ଆୟାର ଓ ପଞ୍ଜାବର ଭଗତ ସିଂହଙ୍କ ପରି ଶତ ଶତ ସ୍ୱାଧୀନତା ସଂଗ୍ରାମୀ ପ୍ରାଦେଶିକ ସଂକୀର୍ଣ୍ଣତାକୁ ପରିହାର କରି ଇଂରେଜ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ ଓ ଭାରତର ସ୍ୱାଧୀନତା ସଂଗ୍ରାମକୁ ଆଗେଇ ନେବାରେ ଲାଗିଲେ ।

ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତରେ ଅସହଯୋଗ ଆନ୍ଦୋଳନ ଚାଲୁଥିଲା ବେଳେ ଇଂରେଜ ସରକାର ତୁରସ୍କର ସୁଲତାନଙ୍କୁ ଗାଦିଚ୍ୟୁତ କରି ତାଙ୍କର ଧର୍ମଗୁରୁ ବା ଖଲିଫା ପଦବୀ ଉଠାଇ ଦେଲେ । ତେଣୁ ଭାରତୀୟ ମୁସଲମାନମାନେ 'ଖିଲାଫତ୍ ଆନ୍ଦୋଳନ' ମାଧ୍ୟମରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଉତ୍‌କ୍ଷିପ୍ତ ହୋଇ ଉଠିଲେ । ମହାତ୍ମାଗାନ୍ଧୀ ଏହି ଆନ୍ଦୋଳନକୁ ଦୃଢ ଭାବରେ ସମର୍ଥନ କରିଥିଲେ । ଏଥିରେ ଉଭୟ ହିନ୍ଦୁ ମୁସଲମାନ ସମ୍ମିଳିତ ଭାବରେ ଆନ୍ଦୋଳନ ଚଳାଇ ଜାତୀୟ ସଂହତିର ସ୍ପଷ୍ଟ ପରିଚୟ ଦେଇଥିଲେ ।

୧୯୩୦ ମସିହାରେ ଇଂରେଜ ସରକାରଙ୍କ ଲବଣ ଆଇନ ଭଙ୍ଗ କରିବାକୁ ମହାତ୍ମାଗାନ୍ଧୀ ଐତିହାସିକ ଦାଣ୍ଡି ଯାତ୍ରା ଆରମ୍ଭ କଲେ । ପଥରେ ଅସଂଖ୍ୟ ନରନାରୀ ସକଳ ଭେଦଭାବ ଭୁଲି ତାଙ୍କ ସହ ଏହି ଯାତ୍ରାରେ ଯୋଗ ଦେଲେ । ଆଇନ ଅମାନ୍ୟ ଆନ୍ଦୋଳନ କରି ଶହ ଶହ ବ୍ୟକ୍ତି ପୋଲିସର ଗୁଳି ମୁହଁରେ ଜୀବନ ବିସର୍ଜ୍ଜନ କଲେ । ସ୍ୱାଧୀନତା ସଂଗ୍ରାମ ପାଇଁ ଜାତୀୟ ସଂହତିର ଅବଦାନ କିପରି ସୁଦୃଢ ଥିଲା ଏହା ତାର ଅନ୍ୟ ଏକ ଦୃଷ୍ଟାନ୍ତ ।

ଜାତିଗତ ବିଭେଦ ସୃଷ୍ଟିକରି ଇଂରେଜ ସରକାର ରାଜନୈତିକ ଫାଇଦା ଉଠାଇବା ପାଇଁ ମଧ୍ୟ ଚେଷ୍ଟା କରିଥିଲେ । ଭାରତର ଅନୁନ୍ନତ ସଂପ୍ରଦାୟକୁ ଉଚ୍ଚ ଜାତିର ହିନ୍ଦୁମାନଙ୍କ ପାଖରୁ ନିର୍ବାଚନ ଅଧିକାର ଦେଇ ପୃଥକ୍ କରି ଦେବାକୁ ଚାହିଁଥିଲେ । ଏହାଦ୍ୱାରା ଭାରତର ଜାତୀୟ ସଂହତି ଉପରେ ଆଞ୍ଚ ଆସିବ ଜାଣିପାରି ମହାତ୍ମାଗାନ୍ଧୀ ୧୯୩୨ ମସିହାରେ ଜେଲ୍ ଭିତରେ ଆମରଣ ଅନଶନ ଆରମ୍ଭ କରିଦେଲେ । ହିନ୍ଦୁ ସମାଜରୁ ଉନ୍ନତ ଅନୁନ୍ନତ ଭେଦଭାବ ଲୋପ ପାଇବ ବୋଲି ସେ ଦୃଢ ସ୍ୱରରେ ଘୋଷଣା କଲେ । ଫଳରେ ଇଂରେଜ ସରକାର ବାଧ୍ୟ ହୋଇ ତାଙ୍କର ଏହି ନୀତି ପ୍ରତ୍ୟାହାର କରିନେଲେ । କିନ୍ତୁ ଏହି ଭେଦ ନୀତି ଯୋଗୁ ମହମ୍ମଦ ଅଲ୍ଲି ଜିନ୍ନା ଇଂରେଜ ସରକାର ନିକଟରେ ସ୍ୱତନ୍ତ୍ର ମୁସଲମାନ ରାଜ୍ୟ ପାକିସ୍ତାନ ଗଠନ କରିବାକୁ ଦାବୀ କଲେ । ମହାତ୍ମାଗାନ୍ଧୀ ତାଙ୍କୁ ଏଥିରୁ ନିବୃତ ରହିବା ପାଇଁ ଅନୁରୋଧ କରିଥିଲେ । ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିଆନ୍ ସମସ୍ତେ ଏକ ଜନ୍ମଭୂମିର ସନ୍ତାନ ରୂପେ ଭାତୃଭାବ ପୋଷଣ କରିବା ଉଚିତ ବୋଲି ସେ ମତ ବ୍ୟକ୍ତ କଲେ । ଜାତୀୟତାବାଦୀ ମୁସଲମାନ ନେତାମାନଙ୍କ ଭିତରୁ ମୌଲାନା ଆବୁଲ କଲାମ ଆଜାଦ, ଖାଁ ଅବଦୁଲ ଗଫର ଖାଁ, ରଫି ଆହାମ୍ମଦ କିଦୱାଇ, ଆସଫଅଲି ପ୍ରଭୃତି ନେତାମାନେ ଜିନ୍ନାଙ୍କ ପ୍ରସ୍ତାବକୁ ଅବାନ୍ତର କହି ଏକ ଅଖଣ୍ଡ ଭାରତ ଗଠନ କରି ଜାତୀୟ ସଂହତି ରକ୍ଷା କରିବାକୁ ଉଦ୍ୟମ କରିଥିଲେ ।

ଭାରତବାସୀଙ୍କର ସମ୍ମିଳିତ ଉଦ୍ୟମ ଫଳରେ ଭାରତରୁ ଅମା ଅନ୍ଧକାର ବିଦୂରୀତ ହୋଇ ସ୍ୱାଧୀନତାର ରଙ୍ଗୀନ ଆଲୋକ ଛଟା ବିଚ୍ଛୁରିତ ହେଲା ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ । ତାପରେ ସ୍ୱାଧୀନ ଭାରତର ସଂବିଧାନ ସାମ୍ୟ, ମୈତ୍ରୀ ଓ ଭାତୃତ୍ୱ ପ୍ରଭୃତି ଦର୍ଶନକୁ ଭିତ୍ତିକରି ପ୍ରଣୟନ କରାଗଲା । ଜାତି, ଧର୍ମ, ବର୍ଣ୍ଣ, ଭାଷା ଓ ଆଞ୍ଚଳିକ ବିଭିନ୍ନତା ସତ୍ତ୍ୱେ ଆମେ ସମସ୍ତେ ଭାରତମାତାର ସନ୍ତାନ । ତେଣୁ ସକଳ ଭେଦଭାବ ଭୁଲି ଜାତୀୟ ଐକ୍ୟ ଓ ସଂହତି ରକ୍ଷା କରିବା ଆମର ଧର୍ମ ।

● ● ● ●

ଅଧ୍ୟାପକ,
ବିକ୍ରମଦେବ ମହାବିଦ୍ୟାଳୟ, ଜୟପୁର, କୋରାପୁଟ

"ତରୁଣ-ଭାରତକୁ ଆମ୍ଭେମାନେ ଆହ୍ୱାନ କରୁଛୁ, ତରୁଣ ମାନେହିଁ ଏହି ନୂତନ ଜଗତର ନିର୍ମାତା ହେବେ, କିନ୍ତୁ ସେମାନେ ନୁହନ୍ତି ଯେଉଁମାନେ ପାଶ୍ଚାତ୍ୟ ଜଗତରେ ପ୍ରତିଯୋଗିତା ମୂଳକ ବ୍ୟକ୍ତିତନ୍ତ୍ର, ପୁଞ୍ଜିବାଦ ବା ବସ୍ତୁତାନ୍ତ୍ରିକ ସାମ୍ୟବାଦକୁ ଭାରତର ଭବିଷ୍ୟତ ଆଦର୍ଶ ରୂପେ ଗ୍ରହଣ କରନ୍ତି ବା ଯେଉଁ-ମାନେ ହୋଇଛନ୍ତି ପୁରାତନ ଧର୍ମନୀତିର କ୍ରୀତଦାସ, ଅଥବା ଯେଉଁମାନେ ଆଧ୍ୟାତ୍ମିକତା ଦ୍ୱାରା ଜୀବନର ରୂପାନ୍ତରରେ ବିଶ୍ୱାସ କରନ୍ତି ନାହିଁ । ବରଂ ଯେଉଁମାନେ ଏକ ପୂର୍ଣ୍ଣତର ସତ୍ୟ ଗ୍ରହଣ କରିବାକୁ ସମର୍ଥ ଏବଂ ଏକ ମହତ୍ତର ଆଦର୍ଶ ନିମିତ୍ତ ଅଧ୍ୟବସାୟ କରିବାକୁ ଯେଉଁମାନଙ୍କର ମନ ଓ ହୃଦୟ ଉନ୍ମୁକ୍ତ ସେହିମାନେହିଁ ଏହି ଜଗତର ନିର୍ମାତା ହେବେ । ସେମାନେ ଏପରି ବ୍ୟକ୍ତି ହେବେ ଯେଉଁମାନେ ଅତୀତ ଓ ବର୍ତ୍ତମାନ ପାଇଁ ନିଜକୁ ଉତ୍ସର୍ଗ ନକରି ଭବିଷ୍ୟତ ପ୍ରତି ନିଜକୁ ଉତ୍ସର୍ଗ କରିବେ । ସେମାନେ ନିଜକୁ ପୂର୍ଣ୍ଣପ୍ରାଣରେ ଉତ୍ସର୍ଗ କରିବେ ନିଜର ନିମ୍ନ ପ୍ରକୃତିକୁ ଅତିକ୍ରମ କରିବା ନିମିତ୍ତ, ନିଜ ମଧ୍ୟରେ ତଥା ସକଳଙ୍କ ମଧ୍ୟରେ ଈଶ୍ୱରଙ୍କୁ ଅନୁଭବ କରିବା ନିମିତ୍ତ, ଦେଶ ଓ ମାନବ ସମାଜ ସକାଶେ ଅକ୍ଳାନ୍ତ ଅଧ୍ୟବସାୟ କରିବା ନିମିତ୍ତ । ଏ ପର୍ଯ୍ୟନ୍ତ ଏହି ଆଦର୍ଶ ରହିଛି ଏକ ସୂକ୍ଷ୍ମ ବୀଜରୂପେ ଏବଂ ଯେଉଁ ଜୀବନରେ ଏହା ଅଭିବ୍ୟକ୍ତ ତାହାହିଁ ହେଉଛି ଏକ ସୂକ୍ଷ୍ମ କେନ୍ଦ୍ର" ।–ଶ୍ରୀ ଅରବିନ୍ଦ

OGP—MP-VI (I. & P. R.) 49—4000—12-1-1988

